# ଭୂମିକା

'ଇଷ୍ଟ-ପ୍ରସଙ୍ଗେ' ୧ମ ଖଣ୍ଡ ପ୍ରକାଶର ପରଠାରୁ ହିଁ ବନ୍ଧୁ-ବାନ୍ଧବ ଓ ସୁଧୀ ପାଠକମାନଙ୍କର ପକ୍ଷରୁ ଅଗଣିତ ଚିଠିପତ୍ର ଆସିବା ଅବ୍ୟାହତ ରୁହେ—୨ୟ ଖଣ୍ଡ ପ୍ରକାଶର ଅନୁରୋଧ ଜଣାଇଁ। ସେମାନଙ୍କର ଏହି ଅନ୍ତରିକ ଅନୁରୋଧ ହିଁ ୨ୟ ଖଣ୍ଡର ପ୍ରକାଶକୁ ତ୍ୱରାନ୍ୱିତ କଲା।

ସଂଶ୍ଳିଷ୍ଟ ଗ୍ରନ୍ଥରେ ଉଲ୍ଲିଖିତ ଆଳାପନର ସମୟସୀମା ୧ ଜାନୁୟାରୀ ଠାରୁ ୨୫-ଡିସେମ୍ବର, ୧୯୭୫। ଏ ସମୟରେ ମଧ୍ୟ ମୁଁ ବର୍ଦ୍ଧମାନ ବିଶ୍ୱବିଦ୍ୟାଳୟରେ ଦର୍ଶନଶାସ୍ତ୍ରରେ ଗବେଷଣାରେ ରତ। ମଝିରେ-ମଝିରେ ଠାକୁର-ବାଡ଼ି ଚାଲିଆସେ ଶ୍ରୀଶ୍ରୀପିତୃଦେବଙ୍କୁ ଦର୍ଶନ କରିବାର ଅଭିଳାଷରେ। ତାଙ୍କ ନିକଟରେ ହିଁ ସର୍ବଦା ରହେ ଏବଂ ତାଙ୍କ ଶ୍ରୀମୁଖନିଃସୃତ କଥା-ନିର୍ଝର ଯେତେଦୂର ସମ୍ଭବ ଯଥାଯଥଭାବରେ ଖାତାରେ ଧରି ରଖିବାର ଚେଷ୍ଟା କରୁଥିଲି—ସହଜ ଅଭ୍ୟାସ ବଶତଃ। ଏହା ବ୍ୟତୀତ ଗବେଷଣା ବିଷୟରେ କୌଣସି ସମସ୍ୟାର ଜଟ ମୁଣ୍ଡରେ ଆସିଲେ ଛୁଟି ଆସୁଥିଲି ସୋଜା ଠାକୁରବାଡ଼ି। ଶ୍ରୀଶ୍ରୀପିତୃଦେବଙ୍କର ସହଜ-ସରଳ ଆଳାପ-ଆଲୋଚନା ମଧ୍ୟରେ ହିଁ ଖୋଜିପାଉଥିଲି ସମାଧାନୀ ସୂତ୍ର। —ଏପରି ଅନେକ ଥର ହିଁ ହୋଇଛି। ତେଣୁ ତାଙ୍କ ଆଳାପନା ମଧ୍ୟରେ ଯେପରି ପାଇଛି ଜୀବନ ପଥରେ ଚାଲିବାର ରସଦ ସେହିପରି ଲାଭ କରିଛି ଗବେଷଣା-ଗୁରୁଦାୟିତ୍ୱ ପରିପାଳନରେ ଅନୁପ୍ରେରଣା ଓ ସ୍ୱ-ନିର୍ଭରତା।

୧୩୮୨ ସାଲର ଭାଦ୍ରବ ମାସରେ (ଅଗଷ୍ଟ-୭୫) ମୋର କନିଷ୍ଠ ଭାଇ ଶ୍ରୀମାନ୍ କୃପାସିନ୍ଧୁ ଏମ୍.ଏ. ପରୀକ୍ଷା ଦେଇ ଆଶ୍ରମକୁ ଚାଲିଆସେ। ଏହାର ମାସ କେତୋଟି ପୂର୍ବରୁ 'ସ୍ୱସ୍ତିସେବକ' ପତ୍ରିକାର ମୁଦ୍ରଣ ସତ୍‌ସଙ୍ଗ ପ୍ରେସ୍‌ରୁ ହେଉଥାଏ। କୃପାସିନ୍ଧୁ ଦେଓଘରକୁ ଆସି ପ୍ରଥମତଃ ଯେପରି ପତ୍ରିକାଟିର ସୁଷ୍ଠୁ ସମ୍ପାଦନର କାର୍ଯ୍ୟରେ ହାତ ଦିଏ, ଦ୍ୱିତୀୟତଃ ସେହିପରି ଶ୍ରୀଶ୍ରୀପିତୃଦେବଙ୍କ ବାଗ୍‌ଧାରା ଖାତାରେ ଧରିରଖିବାର ଅଭୂତପୂର୍ବ ସୁଯୋଗ ଲାଭ କରେ। ପୁସ୍ତକରେ ସନ୍ନିବିଷ୍ଟ ଶେଷଦିଗରେ ଘଟଣାବଳୀର ଅଧିକାଂଶ ହିଁ ତା'ର ଖାତାରୁ ଗୃହୀତ।

ପ୍ରଥମ ଖଣ୍ଡପରି ଏ ଗ୍ରନ୍ଥରେ ମଧ୍ୟ ଦୈନନ୍ଦିନ ଅଗଣିତ ମଣିଷଙ୍କ ସଙ୍ଗରେ ଶ୍ରୀଶ୍ରୀପିତୃଦେବଙ୍କର ଆଳାପ-ଆଲୋଚନା, ପରମଦୟାଲ ଶ୍ରୀଶ୍ରୀଠାକୁରଙ୍କର 'ସତ୍ୟାନୁସରଣ' ଓ ସଦ୍‌ଗ୍ରନ୍ଥାଦି ପାଠ, ଜିଜ୍ଞାସୁମାନଙ୍କର ଜିଜ୍ଞାସା ଓ ତାର ସଦୁତ୍ତର, ଆର୍ତ୍ତ-ପୀଡ଼ିତମାନଙ୍କର ପୀଡ଼ା-ନିରାମୟର ବିଧାନ ସ୍ଥାନ ପାଇଛି। କଥା-ପ୍ରସଙ୍ଗରେ ବର୍ଣ୍ଣିତ ତାଙ୍କ ବ୍ୟକ୍ତିଗତ ଜୀବନର କିଛି-କିଛି ଘଟଣା ବି ଏହି ଗ୍ରନ୍ଥରେ ଉଲ୍ଲେଖ ରହିଛି। କିନ୍ତୁ ସେ ଯେପରିଭାବେ ଯାହା କହନ୍ତି ତା' କ'ଣ ସବୁ ଧରି ରଖିହୁଏ ? ତାଙ୍କର ଅନୁପମ ଅଙ୍ଗଭଙ୍ଗୀ, ସୁମଧୁର ହସ, ଛୋଟ-ଛୋଟ ପୁଅ-ଝିଅମାନଙ୍କ ସହିତ ସହଜ-ସରଳ ଶିଶୁଭାବ—ଏ ସମସ୍ତ

କେତେଟିକିଏ ବା ଫୁଟାଇ ତୋଳାଯାଏ କେବଳ ମାତ୍ର କାଳିର ଦାଗ କାଟି !

ସେ ଅମୃତ ସିନ୍ଧୁ। ସିନ୍ଧୁର ବିନ୍ଦୁ-ବିନ୍ଦୁ ଅମୃତ କଣାର କ୍ଷରଣ ଘଟାଇ ରଚିତ ହେଲା 'ଇଷ୍ଟ-ପ୍ରସଙ୍ଗେ'। ଇଷ୍ଟ-ପ୍ରସଙ୍ଗରେ ପ୍ରେମଧାରାରେ ଅବଗାହନ କରି ଇଷ୍ଟ-ଚଳନାରେ ଚାଲି ବିଶ୍ୱର ମନୁଷ୍ୟସମାଜ ପୂତ-ଚରିତ୍ରର ଅଧିକାରୀ ହୁଅନ୍ତୁ, ପରମ ଶାନ୍ତି ଲାଭ କରନ୍ତୁ—ପରମପିତାଙ୍କ ରାତୁଲ ଚରଣରେ ଏ ମୋର ଏକାନ୍ତ ପ୍ରାର୍ଥନା। 'ଜୟଗୁରୁ'।

ସତ୍‌ସଙ୍ଗ, ଦେଓଘର
୨୧-ଆଶ୍ୱିନ, ୧୩୮୪

**ଡଃ ଶ୍ୟାମସୁନ୍ଦର ରକ୍ଷିତ**

# ନିବେଦନ

ବିଗତ ଇଂ ୧୯୭୮ ମସିହା ଅକ୍ଟୋବରରେ ଓଡ଼ିଶାର ରାଜଧାନୀ ଭୁବନେଶ୍ୱରରେ ଅନୁଷ୍ଠିତ ଯୁଗପୁରୁଷୋତ୍ତମ ଶ୍ରୀଶ୍ରୀଠାକୁର ଅନୁକୂଳଚନ୍ଦ୍ରଙ୍କର ସ୍ମରଣୀୟ ପୁଣ୍ୟ ଜନ୍ମ-ମହୋତ୍ସବ ତଥା ଅଖିଳଭାରତ-ସତ୍‌ସଙ୍ଗ-ଋତ୍ୱିକ୍-ସମ୍ମେଳନର ଅବ୍ୟବହିତ ପୂର୍ବେ 'ଇଷ୍ଟ-ପ୍ରସଙ୍ଗେ' ପ୍ରଥମ ଖଣ୍ଡର ଓଡ଼ିଆ ଅନୁବାଦ ପ୍ରକାଶିତ ହୋଇଥିଲା ।

ପରେ ପରେ ସଂଖ୍ୟାହୀନ ନିଷ୍ଠାବାନ୍ ପାଠକ-ପାଠିକାଙ୍କ ମହଲରୁ ଦ୍ୱିତୀୟ ଖଣ୍ଡର ଦ୍ରୁତ ଅନୁବାଦ ଓ ପ୍ରକାଶନ ଲାଗି ପ୍ରଭୂତ ଅନୁରୋଧ ଆସିଛି । ମାତ୍ର କର୍ମବ୍ୟସ୍ତତା ହେତୁ ସେ ଅନୁରୋଧ ରକ୍ଷାକରିବାରେ ଅସମର୍ଥ ହୋଇ ମୁଁ ଅତିଶୟ ଦୁଃଖୀ ।

ଇତିମଧ୍ୟରେ ବହୁକାଳ ଅତିବାହିତ ହୋଇଯାଇଛି ଅନୁବାଦ କାର୍ଯ୍ୟ ସମ୍ପନ୍ନ କରିବାକୁ । ପ୍ରଥମ ଖଣ୍ଡର ଅନୁବାଦ ପ୍ରକାଶିତ ହେବା ପରେ ଗ୍ରନ୍ଥଟିରେ ଅନୁବାଦଗତ କିଛି କିଛି ତ୍ରୁଟି ଦର୍ଶାଇ ବିଦଗ୍ଧ ପାଠକବୃନ୍ଦ ସେମାନଙ୍କର ବହୁମୂଲ୍ୟ ଅନୁଜ୍ଞା ପ୍ରଦାନ କରି ମୋତେ ଋଣୀ କରି ରଖିଛନ୍ତି । ଦ୍ୱିତୀୟ ଖଣ୍ଡର ଏଇ ଅନୁବାଦରେ ସେ ସମସ୍ତ ଅନୁଜ୍ଞାର ସଦୁପଯୋଗ କରିବାକୁ ସର୍ବତୋଭାବରେ ଚେଷ୍ଟା କରିଛି । ଆଜି, ଦୀର୍ଘ ୭ ବର୍ଷ ପରେ ପାଣ୍ଡୁଲିପିଟି ଗ୍ରନ୍ଥାକାରରେ ଆତ୍ମପ୍ରକାଶ କରିବାକୁ ଯାଉଛି । ବିଶ୍ୱାସ, ଏହା ଅସୀମ ଧୈର୍ଯ୍ୟ ନେଇ ପ୍ରତୀକ୍ଷାରତ ସନ୍ତ-କଥାମୃତ-ପିଆସୀ ସୁଧୀ-ସାଧକ ତଥା ଭକ୍ତ-ଶିଷ୍ୟମାନଙ୍କର ଚିତ୍ତ-ମନର ସାଧ ମେଣ୍ଟାଇବ ।

ଗ୍ରନ୍ଥଟିର ମୁଦ୍ରଣ, ପ୍ରୁଫ୍‌ରିଡିଂ ଓ ସୂଚୀ-ପ୍ରସ୍ତୁତିକରଣରେ ଯତ୍‌ପରୋନାସ୍ତି ପ୍ରୟାସ କରିବା ସଙ୍ଗେ ସଙ୍ଗେ ଅନୁବାଦ କାର୍ଯ୍ୟରେ ମୋତେ ବିଶେଷ ସହାୟତା କରି ସତୀର୍ଥ କର୍ମୀ ଶ୍ରଦ୍ଧେୟ କୈଳାଶ ଚନ୍ଦ୍ର ତ୍ରିପାଠୀ ସମସ୍ତ କୃତଜ୍ଞତା କାଢ଼ି ନେଇଛନ୍ତି ।

ବିନୀତ

**ଅନୁବାଦକ**

ସତ୍‌ସଙ୍ଗ, ଦେଓଘର
ଦୋଳପୂର୍ଣ୍ଣିମା, ୧୩୯୨ ସାଲ (ବଂ)
ଇଂ ୨୬/୩/୧୯୮୬

# ଅନୁବାଦକର ଭୂମିକା

ଗତିର୍ଭର୍ତ୍ତା ପ୍ରଭୁଃ ପ୍ରେଷ୍ଠ ଈଶ୍ୱରଃ ପୁରୁଷୋତ୍ତମଃ ।
ଆବ୍ରହ୍ମସ୍ତମ୍ଭତ୍ରାତା ସଦ୍‌ଗୁରୁସ୍ତଂ ନମୋଽସ୍ତୁତେ ॥

ଯାହାଙ୍କ ଶ୍ରୀମୁଖନିଃସୃତ ଅମୂଲ୍ୟ ବାକ୍‌ସୁଧା କଥୋପକଥନ ଆକାରରେ ସଂକଳିତ ଓ ସନ୍ନିବେଶିତ ହୋଇଛି ତାଙ୍କ ସମ୍ବନ୍ଧରେ ପରମପୁରୁଷ ଯୁଗତ୍ରାତା ଶ୍ରୀଶ୍ରୀଠାକୁରଙ୍କର ଗୋଟିଏ ଉକ୍ତି,—''ବଡ଼ଖୋକା ଇଚ୍ଛାକଲେ ପରମହଂସ ତୈରି କରିପାରେ ।'' ମୋ ଭଳି ଅର୍ବାଚୀନ ଏତନ୍ମୁହୂର୍ତ୍ତରେ ତାଙ୍କ ସମ୍ବନ୍ଧରେ ଆଉ ଅଧିକ କ'ଣ କୀର୍ତ୍ତନ କରିବ ? ସେହି ପରମ ସନ୍ତ-ସଦ୍‌ଗୁରୁଙ୍କ ଶ୍ରୀଚରଣ କମଳରେ ଏ ଦୀନ ସେବକର ବିନମ୍ର ଶତକୋଟି ପ୍ରଣାମ ।

''ଗୁରୁମୁଖ ହିଁ ଜୀବର ପ୍ରକୃତ ଉଦ୍ଧାରକର୍ତ୍ତା'' । ଜୀବ-କଲ୍ୟାଣକଳ୍ପେ ତ୍ରିତାପସମସ୍ୟା ଜର୍ଜରିତ ମଣିଷ ଜୀବନରେ ସମାଧାନ-ସାମଞ୍ଜସ୍ୟ ଶାନ୍ତିସୁଧା ବିତରଣାର୍ଥେ ତାଙ୍କର ଏଇ ମରତନୁରେ ଅବସ୍ଥାନ । ବନ୍ଧୁ, ସୋଦରପ୍ରତିମ ଶ୍ରୀ ଶ୍ୟାମସୁନ୍ଦର ରକ୍ଷିତ ବିଭିନ୍ନ ସମୟରେ କ୍ଷରିତ ତାଙ୍କର ଦୁର୍ଲ୍ଲଭ ଉପଦେଶାମୃତରୂପକ ବିକ୍ଷିପ୍ତ ରତ୍ନରାଜିକୁ ନିଜର ପୂତ ପ୍ରୟାସ ଦ୍ୱାରା ସୁଚାରୁଭାବରେ ଗ୍ରଥିତ କରି ଏହି ଗ୍ରନ୍ଥରୂପକ ମଣିହାରଟି ଈଶ୍ୱରପିପାସୁ, ଭଜନାନୁରାଗୀ ଓ ଭକ୍ତ-ଶିଷ୍ୟ-ସମାଜକୁ ଉପହାର ଦେଇ ଏକ ମହତ କର୍ମ୍ମ ସାଧନ କରିଛନ୍ତି । ଏ କର୍ମ୍ମର ମୂଲ୍ୟାଙ୍କନ ମହାକାଳବକ୍ଷରେ ଇତିହାସ ହିଁ କରିବ । ମୁଁ କେବଳ ତାଙ୍କୁ ଜଣାଏ ମୋର ଅନ୍ତରର ଗଭୀରତମ କୃତଜ୍ଞତା ।

''ନଳିନୀଦଳଗତ ଜଳବତ୍‌ତରଳମ୍,     ତଦମପି ଜୀବନମତିଶୟ ଚପଳମ୍ ।
କ୍ଷଣମିହ ସଜ୍ଜନ ସଙ୍ଗତିରେକା,     ଭବତି ଭବାର୍ଣ୍ଣବ-ତରଣେ ନୌକା ॥''

ଅତୀତ ଦୁର୍ଲ୍ଲଭ କ୍ଷଣିକ ମାନବ ଜୀବନରେ ଦୁସ୍ତର ଭବବାରିଧି ଅତିକ୍ରମ କରି ଚିର ଇପ୍‌ସିତ ସେଇ ପରମ-ପୁରୁଷାର୍ଥ ଲାଭ କରିବାର ସହଜ ଉପାୟ—ଅକପଟ ସଦ୍‌ଗୁରୁ ସଙ୍ଗ । ଯେଉଁମାନେ ସଂସାର ପାକଚକ୍ରରେ ପଡ଼ି ସେହି ଅପାର୍ଥିବ ସଙ୍ଗସୁଖଲାଭରୁ ବଞ୍ଚିତ, ଏହି ଗ୍ରନ୍ଥଟିର ସମ୍ୟକ୍ ପଠନ ଓ ଅନୁଶୀଳନ, ପରୋକ୍ଷଭାବେ ସେମାନଙ୍କର ସେହି କ୍ଷୁଧା ଓ ଅଭାବ ପୂର୍ଣ୍ଣ କରିବ ବୋଲି ବିଶ୍ୱାସ ।

ମୋହାନ୍ଧକାରରେ ବୃତ୍ତି ଚରିତାର୍ଥରେ ବିନଷ୍ଟ ହେଉଥିବା ଅଜସ୍ର ସମୟରୁ କିଞ୍ଚିତ ବ୍ୟୟିତ କରି ଓଡ଼ିଆ ଭାଷାରେ ଗ୍ରନ୍ଥଟି ଅନୁବାଦ କରି ମୁଁ ନିଜକୁ କୃତାର୍ଥ ଓ ଧନ୍ୟ ମନେକରୁଛି । ଶ୍ରଦ୍ଧାସ୍ପଦ ପ୍ରକାଶକ ଓ ଗ୍ରନ୍ଥକାର ମୋତେ ଏ ଅଧିକାର ଓ ସୁଯୋଗ ଦେଇଥିବାରୁ ସେମାନଙ୍କ ନିକଟରେ ମୁଁ ଚିର ଋଣୀ । ଯାହାଙ୍କ ନୀରବ ଓ ବାସ୍ତବ ଐଶୀ କରୁଣାରେ ଗ୍ରନ୍ଥଟିର ଅନୁବାଦ ସୁସମ୍ପନ୍ନ କରିବାରେ ସକ୍ଷମ ହୋଇଛି, ଅନୁବାଦଗତ ସମସ୍ତ ସଫଳତା ଓ ସୌନ୍ଦର୍ଯ୍ୟ କେବଳ ତାଙ୍କର ;—ଆଉ ମୋ ଭଳି ଅଭାଜନର ଅପରିପକ୍ୱ, ସ୍ୱଳ୍ପ ଭାଷାଜ୍ଞାନ ତଥା ଭକ୍ତି-ସାଧନର ଅଭାବଜନିତ ଯାହାକିଛି ତ୍ରୁଟି ସେ ସମସ୍ତ ମୋର ନିଜସ୍ୱ ।

ବିନୀତ
**ଅନୁବାଦକ**

# ସୂଚୀପତ୍ର

ବିଷୟ ଓ ପୃଷ୍ଠା

---

# ଇଷ୍ଟ-ପ୍ରସଙ୍ଗେ

## ବୁଧବାର, ପୌଷ ୧୭, ୧୩୮୧ (ଇଂ ୧/୧/୭୫)

ପୌଷର ଅପରାହ୍ନ। ସତ୍‌ସଙ୍ଗ ୧୪୭ତମ ସର୍ବଭାରତୀୟ ଋତ୍ୱିକ୍ ଅଧିବେଶନରେ ସମ୍ମିଳିତ ଶତ-ଶତ କର୍ମୀ 'ଠାକୁର-ବଂଗଳାସ୍ଥ' ବଡ଼ ନାଟମଣ୍ଡପ ଓ ତା'ର ଚତୁର୍ଦ୍ଦିଗ ବେଷ୍ଟନ କରି ପ୍ରତୀକ୍ଷାରତ,—ଶ୍ରୀଶ୍ରୀପିତୃଦେବ ଆସିଲେ ହିଁ କର୍ମୀ-ବୈଠକ ଆରମ୍ଭ ହେବ।

ଠାକୁର-ବଙ୍ଗଳାର ସଦର ଗେଟ୍‌ରେ ଢଂ-ଢଂ କରି ଚାରିଟାର ଘଣ୍ଟା ପଡ଼ିଲା; ଶ୍ରୀଶ୍ରୀପିତୃଦେବ ଶୁଭାଗମନ କରିଲେ। ଦେଓଘରର ଶୀତ, ତାର ପ୍ରକୋପ ପ୍ରଚଣ୍ଡ। ପ୍ରାୟ ସମସ୍ତେ ଉପଯୁକ୍ତ ଶୀତବସ୍ତ୍ର ପରିଧାନ କରି ଆସିଛନ୍ତି। କିନ୍ତୁ ତାଙ୍କର ଦିବ୍ୟକାନ୍ତି ଦେହ କେବଳ ମାତ୍ର ଖଣ୍ଡିଏ ଗେଞ୍ଜି ଓ ଖଦଡ଼ ଚାଦରରେ ଆବୃତ। ଶୀତ ଯେଭଳି ହାର ମାନିଯାଇଛି ସେଠାରେ।

ଶ୍ରୀଶ୍ରୀପିତୃଦେବ ଧୀର ପଦକ୍ଷେପରେ ଶ୍ରୀଶ୍ରୀବଡ଼ମାଙ୍କ ଘରେ ପ୍ରବେଶ କରିଲେ ଏବଂ ଜଗଜ୍ଜନନୀଙ୍କ ଶ୍ରୀଚରଣଯୁଗଳରେ ଆଭୂମି ପ୍ରଣତି ଜଣାଇଲେ। ଏହାପରେ ଶ୍ରୀଶ୍ରୀଠାକୁରଙ୍କ ଘରେ ପ୍ରବେଶ କରି ପରମାରାଧ୍ୟ ପରମପିତାଙ୍କ ଶ୍ରୀପାଦପଦ୍ମରେ ଯଥାରୀତି ପ୍ରଣାମ ନିବେଦନ କରି ବଡ଼ ନାଟମଣ୍ଡପରେ ତାଙ୍କର ସୁନିର୍ଦ୍ଦିଷ୍ଟ ଆସନରେ ଉପବେଶନ କଲେ। ଉପସ୍ଥିତ ଭକ୍ତମଣ୍ଡଳୀ ତାଙ୍କ ସହିତ ଶ୍ରୀଶ୍ରୀବଡ଼ମା ଓ ଶ୍ରୀଶ୍ରୀଠାକୁରଙ୍କୁ ପ୍ରଣାମ ନିବେଦନାନ୍ତେ ବଡ଼ ନାଟମଣ୍ଡପ ଆଡ଼କୁ ଆଗେଇ ଆସିଲେ। ଶ୍ରୀଶ୍ରୀପିତୃଦେବଙ୍କୁ ପ୍ରଣାମ ନିବେଦନ କରି ପୁନରାୟ ଆସନ ଗ୍ରହଣ କରିଲେ। ଚାରିଦିଗ ସ୍ତବ୍‌ଧ। କଲ୍ଲୋଳହୀନ ଜଳଧି ସଦୃଶ ଆଜିର ଏ ଜନସମୁଦ୍ର ସହସା ଶାନ୍ତ। ସଭିଏଁ ତାଙ୍କର ସୁମଧୁର ସଙ୍ଗ-ମାଧୁରୀ ଉପଭୋଗରେ ନିବିଷ୍ଟ।

ନୀରବତା ଭଙ୍ଗକରି ଶ୍ରୀଶ୍ରୀପିତୃଦେବ ପ୍ରଶ୍ନ କଲେ—କଣ, ବର୍ତ୍ତମାନ କର୍ମୀବୈଠକ ନା କଣ?

—ଆଜ୍ଞା। ମୁଣ୍ଡ ହଲାଇ ଜଣାଇଲେ ଆଗରେ ବସିଥିବା କତିପୟ କର୍ମୀ।

ଶ୍ରୀଶ୍ରୀପିତୃଦେବ କହିଲେ—ମୋର ଗୋଟିଏ ଇଚ୍ଛା ଅଛି। ମାନେ ବାସନା ଅଛି ଯେ, ଆମ୍ଭମାନଙ୍କର କର୍ମୀ—ଯେଉଁମାନେ ଠାକୁରଙ୍କର ବାଣୀ ବହନ କରି ଘରେ-ଘରେ ପହୁଞ୍ଚାଇ ଦେଉଛନ୍ତି, ତାଙ୍କର କାମ କରୁଛନ୍ତି—ସେମାନଙ୍କର ଗୋଟିଏ ଲେଖାଁ ଛବି ଏଠାରେ ଠାକୁରଙ୍କର 'ସ୍ମୃତି-ସଂଗ୍ରହାଳୟ' (Memoria) ରେ ଏକତ୍ର ବାନ୍ଧି ରଖିବାକୁ।

ପ୍ରଶାନ୍ତ ଦୃଷ୍ଟିରେ ସମସ୍ତଙ୍କୁ ଥରେ ଦେଖିନେଇ ପୁଣି କହିବାକୁ ଆରମ୍ଭ କଲେ—ପିଲାବେଳୁ ଠାକୁରଙ୍କ ସାନ୍ନିଧ୍ୟରେ ପ୍ରତିନିୟତ ଶହ ଶହ ମିରାକ୍‌ଲ୍ ଘଟିବାର ଦେଖିଆସିଛି, ଏବେ ବି-ଘଟେ; ସେସବୁ ଯଦି ଲେଖା ହୁଅନ୍ତା! ତାଙ୍କର ଏଇ ଅଲୌକିକ ତତ୍ତ୍ୱ ବା ମିରାକ୍‌ଲ୍ ବୁଝିବା ଲାଗି, ଅନୁଧାବନ କରିବା ଲାଗି,—ଶିକ୍ଷା ଥିବା ଦରକାର, ଅନୁସନ୍ଧିତ୍ସା ଥିବା ଦରକାର, ଆଖି-କାନ ସଜାଗ ଥିବା ଦରକାର। ଗୋଟିଏ କଥାରେ ସାଧନା ଥିବା ଦରକାର। ଆମେ

ଅଧମ—ସେଥିଲାଗି ବୁଝିପାରୁନା। ସେସବୁ ଯଦି ଲେଖା ଥାଆନ୍ତା, ତାହେଲେ କେତେ ଯେ ଭଲ ନ ହୋଇଥାଆନ୍ତା ! କି ଅମୂଲ୍ୟ ମହାସମ୍ପଦ ଆମେ ନ ହରାଇଛୁ !

ପ୍ରିୟପରମଙ୍କର ବିରହ-ବେଦନାରେ ଛଳଛଳ ହୋଇଉଠିଲା ତାଙ୍କର ନୟନଯୁଗଳ। ଟିକିଏ ରହି ପୁଣି କହିଲେ—ତେଣୁ ମୋର ଇଚ୍ଛା, ଯଦି କର୍ମୀ-ମାନଙ୍କର ଛବି ରହେ ଏବଂ କେବେ ଦୀକ୍ଷା ନେଇଛି, ଏବଂ କେବେ ଦୀକ୍ଷାଦାନର ଅଧିକାରୀ ହୋଇଛି ସେସବୁ ତାରିଖ, ଠିକଣା—ଅର୍ଥାତ୍ ଛୋଟ ନୋଟ୍ ଗୋଟିଏ ଯଦି ତଳେ ରହେ, ତେବେ ଖୁବ୍ ଭଲ ହୁଏ। ଏପରିକି ବିଗତ କର୍ମୀ ଯେଉଁମାନେ ସେମାନଙ୍କର ଫଟୋ ମଧ୍ୟ ଯେତେଦୂର ସମ୍ଭବ ସଂଗ୍ରହ କରିବାର ଚେଷ୍ଟା କରିବାକୁ ହେବ।

(କର୍ମୀମାନଙ୍କ ଉଦ୍ଦେଶ୍ୟରେ) ସମସ୍ତଙ୍କର ଏ ବିଷୟରେ ମତ ଅଛି ତ ?

ସମବେତ-କର୍ମୀବୃନ୍ଦ ସାନନ୍ଦେ ସମ୍ମିଳିତ କଣ୍ଠରେ କହିଲେ—ଆଜ୍ଞା ହଁ।

ଶ୍ରୀଶ୍ରୀପିତୃଦେବ ଏହି ପ୍ରସଙ୍ଗରେ ଆହୁରି ବି କହିଲେ—ଏହା ଯୁଗ-ଯୁଗ ଧରି ରହିବ। ଅନ୍ୟାନ୍ୟ ମହାପୁରୁଷମାନଙ୍କ ସମୟରେ—ଏଇ ମହାପ୍ରଭୁଙ୍କ କଥା ଧରନା କାହିଁକି, ମହାପ୍ରଭୁଙ୍କ ସମୟରେ ଯେଉଁ ଭକ୍ତସବୁ ଥିଲେ, ଯେଉଁମାନେ ନାମ ପ୍ରଚାର କରିଥିଲେ, ତାଙ୍କର ସେବା କରୁଥିଲେ, ସେମାନଙ୍କ ଭିତରୁ ଅନେକଙ୍କର କଥା ଆମେ ଯାହା ପଢୁ ବା ଶୁଣୁ ତାର ପ୍ରାୟ ବେଶି ଭାଗ ପରେ ଅନୁମାନ କରି ହିଁ ଲେଖା। ଆମର କିନ୍ତୁ ଅନୁମାନ ବା କଳ୍ପନା ନୁହେଁ, ସବୁ ବାସ୍ତବ। ଆମର ସବୁକିଛି ହିଁ ଖାତା-କଲମରେ ରହିଛି। ଏହା ଗୋଟାଏ ଇତିହାସ ହୋଇ ରହିବ। ଦୂର ଦୂରାନ୍ତରରୁ କେତେ ଲୋକ ଆସିବେ, ଶ୍ରୀଶ୍ରୀଠାକୁରଙ୍କର ପବିତ୍ର ଲୀଳାତୀର୍ଥ ଦର୍ଶନ କରିବେ, ତାଙ୍କର ମିଉଜିୟମ୍ ବି ଦେଖିବେ, ତାଙ୍କର କର୍ମୀମାନଙ୍କୁ ବି ଦେଖିବେ। ଲୋକେ ବୁଝିବେ ଠାକୁରଙ୍କର କି ମହିମା।

ଇଷ୍ଟସ୍ୱାର୍ଥପ୍ରତିଷ୍ଠାଭାସ୍ୱର ଶ୍ରୀଶ୍ରୀପିତୃଦେବଙ୍କର ଶ୍ରୀମୁଖମଣ୍ଡଳ ଏକ ଅପୂର୍ବ ଦିବ୍ୟ ପ୍ରଭାରେ ଉଦ୍ଭାସିତ। ଟିକିଏ ରହି ସେ ପୁଣି କହିଲେ—ଠାକୁର ଆମକୁ ଦଶ କୋଟି ଦୀକ୍ଷାର କଥା କହିଛନ୍ତି। ଆମର ଆହୁରି କର୍ମୀ ଦରକାର। କିଭଳି କର୍ମୀ ? (ନିଜେ ହିଁ ଉତ୍ତରରେ କହିଲେ)—ଯେଉଁମାନେ ଠାକୁରଙ୍କୁ ହିଁ ଜୀବନରେ ମୁଖ୍ୟ କରି ଚାଲିଛନ୍ତି—ତାଙ୍କର ଅନୁଶାସନବାଦ ମାନି ଚାଲିଛନ୍ତି, ତାଙ୍କର ସମସ୍ତ likings (ପସନ୍ଦ ଯାହା) ଗୁଡ଼ିକୁ ନିଜର ଚରିତ୍ରରେ ମୂର୍ତ୍ତ କରି ତୋଳିବାରେ ତତ୍ପର। ଯେପରି ଧର, ଠାକୁର କହିଛନ୍ତି—

"ମାଛ ମାଂସ ଖାସନେ ଆର
ପିଆଁଜ ରସୁନ ମାଦକ ଛାଡ଼।"

ତାହା ଭଲରୂପେ ପାଳନ କରିବା।

ଆଉ, ସମସ୍ତଙ୍କର ଲକ୍ଷ୍ୟ ରଖିବା ଦରକାର—ମୋ ଯୋଗୁଁ କାହାରି ଯେଭଳି କୌଣସି ଅସୁବିଧା ନ ହୁଏ, ଅଶାନ୍ତି ନ ହୁଏ, ଅସ୍ୱସ୍ତି ନ ହୁଏ। ସବୁସମୟରେ ଅପରର ସୁଖ-ଶାନ୍ତି ଦେଖିବା ଦରକାର। ସଦାସର୍ବଦା ଏସବୁ ପ୍ରତି ବିଶେଷ ନଜର ରଖିବା ଉଚିତ।

ଉପସ୍ଥିତ ସକଳେ ମନ୍ତ୍ରମୁଗ୍ଧ ଭଳି ତାଙ୍କର ଅମିୟ-ନିର୍ଝର ଅମୃତବାଣୀ ଆକଣ୍ଠ ପାନ

କରୁଛନ୍ତି। ଆଉ ସ୍ୱ ସ୍ୱ ମନର ମଣିକୋଠିରେ ସେଗୁଡ଼ିକୁ ଗୁଛି ନେଉଛନ୍ତି।

ଟିକିଏ ରହି ସେ ପୁଣି ଆରମ୍ଭ କଲେ—ଆଉ, 'sitting' କହିବା ଭଲ ନୁହେଁ। ଆମେ ପାବନାରେ 'ସତ୍‌ସଙ୍ଗ' ହିଁ କହୁଥିଲୁ। ଏବେ ଏଠାରେ ଦେଖୁଛି ଅନେକେ 'sitting' କହୁଛନ୍ତି। Sitting ନ କହି 'ସତ୍‌ସଙ୍ଗ' କହିବା ଭଲ। 'ସତ୍‌ସଙ୍ଗ'ରେ ବସି କୌଣସି ପ୍ରକାରର ନିଶା କରିବା, ବିଡ଼ି-ସିଗାରେଟ୍ ଖାଇବା, ନାସ ଟାଣିବା—ଏସବୁ କରିବା ଆଦୌ ଉଚିତ୍ ନୁହେଁ। ବାଜେ ଜିନିଷ ବାଜେ ଭାବ ବହନ କରେ, ବାଜେ କାମରେ ହିଁ ମଣିଷକୁ ପ୍ରଣୋଦିତ କରେ। ଠାକୁରଙ୍କ କର୍ମୀମାନେ—above average ଆମ୍ଭମାନଙ୍କ ଭଳି ଲୋକ ଦେଇ ହିଁ ସେ କେତେ କ'ଣ କରାଉଛନ୍ତି। ଏଇ ମୋରି କଥା ଧର—ମୋ ଭଳି ଅପଦାର୍ଥ ତ ଆଉ କେହି ନାହିଁ, ମୋତେ ଦେଇ ହିଁ ସେ କେତେ ଦୀକ୍ଷା ଦିଆଇଛନ୍ତି, କେତେ କାମ କରାଇଛନ୍ତି, ଏବେ ବି କରାଉଛନ୍ତି। ତେଣୁ, ମୋର ଏ ପରାମର୍ଶ, ମୋର ଏ ଅନୁରୋଧ ଯଦି ସମସ୍ତେ ନିଅନ୍ତି, ତାହେଲେ ଖୁବ୍ ଭଲ ହେବ।

ଆମେ ଯେତିକି ଜାଣୁ, ଯେତିକି ଅନୁଭବ କରିଛୁ, ସେତିକି କହିବା ଭଲ। ଯା' ଜାଣୁନା, ତା କହିବା ଭଲ ନୁହେଁ। ଯାହା ଜାଣୁନା, ଯେଉଁମାନେ ତାହା ଜାଣନ୍ତି, ପରେ ସେମାନଙ୍କ ନିକଟରୁ ଜାଣିନେଇ କହିବାକୁ ହୁଏ। କେବେହେଲେ ମନରେ ଏଭଳି ଅହଙ୍କାର ରଖିବା ଠିକ୍ ନୁହେଁ—'ତୁମଠାରୁ କ'ଣ ମୁଁ କମ୍ ଜାଣେ'। 'ମୁଁ ଋତ୍ୱିକ୍'—ଏ ଭାବ ଆଦୌ ଭଲ ନୁହେଁ। 'ମୁଁ ବେଶି ଜାଣେ', ଏପରି ଭାବ ଥିଲେ ସେଠାରେ ସଂଘର୍ଷ ଲାଗିଯାଏ। 'ମୁଁ ଋତ୍ୱିକ୍—ତାର ମାନେ, ମୁଁ ତାଙ୍କର ଦୀନତମ ସେବକ—ଏଇ ଭାବ ରଖିବା ଭଲ। ନିଷ୍ଠା, ଆନୁଗତ୍ୟ, କୃତିସମ୍ବେଗ ଥିବା ଦରକାର। ଠାକୁର କ୍ଳେଶ-ସୁଖପ୍ରିୟତାର କଥା ବି କହିଛନ୍ତି। ତାଙ୍କ ପାଇଁ କଷ୍ଟସ୍ୱୀକାର କରି ଆନନ୍ଦ ଅଛି। କ୍ଳେଶ-ସୁଖପ୍ରିୟତା ମାନେ କିନ୍ତୁ କୃଚ୍ଛସାଧନ ନୁହେଁ। ଯାହାକୁ ଯେତେ ଭଲପାଏ, ତା ଲାଗି ସେତେ କଷ୍ଟସ୍ୱୀକାର କରେ—ଏଇଟା ସାଧାରଣ କଥା।

ଇଷ୍ଟଭାବୋଦ୍ଦୀପ୍ତ କର୍ମୀଗଣଙ୍କ ମୁହଁକୁ ଚାହିଁ ଶ୍ରୀଶ୍ରୀପିତୃଦେବ କହି ଚାଲିଛନ୍ତି, ଇଷ୍ଟସ୍ୱାର୍ଥପ୍ରତିଷ୍ଠା ପାଇଁ ନିଜକୁ କିଭଳିଭାବରେ ତିଆରି କରିବା ଦରକାର। ''ତୁମେ ପ୍ରଭୁ, ମୁଁ ଦାସ''—ଏଇ ଭାବ ନେଇ ସେ ନିଜେ ନିତ୍ୟ ଚାଲିଛନ୍ତି, ଆଉ ସକଳଙ୍କୁ ବି ସେଇ ଭାବରେ ଚାଲିବାକୁ କହୁଛନ୍ତି।

କର୍ମୀମାନଙ୍କର ଛବି-ପ୍ରସଙ୍ଗରେ, ଦୀକ୍ଷା-ଦାନର ଅଧିକାରୀ ଯେଉଁମାନେ, ସେମାନଙ୍କର ଛବି ପଠାଇବାକୁ, ସେ କହିଲେ।

ନନୀଦା (ସତ୍‌ସଙ୍ଗର ସାଧାରଣ ସମ୍ପାଦକ ଶ୍ରୀଯୁକ୍ତ ନନୀଗୋପାଳ ଚକ୍ରବର୍ତ୍ତୀ)—ଆଜି କର୍ମୀ-ବୈଠକରେ ଏ କଥା କହିଛି। ତେବେ ଯେଉଁମାନେ active କର୍ମୀ ସେମାନଙ୍କର ଛବି ପଠାଇବାକୁ କହିଥିଲେ।

ଶ୍ରୀଶ୍ରୀପିତୃଦେବ—Active କି inactive ସେ ପରେ ଦେଖାଯିବ। ଆଉ, ଛବି ସ୍ପଷ୍ଟ ହେବା ଦରକାର। ପାବନାରେ ଥିବାବେଳେ ମୁଁ କହିଥିଲି, ଯେଉଁମାନେ ସେଠାରେ ଦୀକ୍ଷା ନେଇଥିଲେ, ରହୁଥିଲେ ଓ ଦୀକ୍ଷା ଦେଉଥିଲେ—ସେମାନଙ୍କର ଗୋଟାଏ report ଲେଖି

ଦେବାକୁ ଯେ, କିପରିଭାବେ ଶ୍ରୀଶ୍ରୀଠାକୁରଙ୍କ ଶ୍ରୀଚରଣକୁ ଆସିଲେ, କେବେ ଦୀକ୍ଷା ନେଲେ; ଠାକୁର ସବୁ ଶୁଣି ମୋତେ କହିଥିଲେ—'ଖୁବ୍ ଭଲ୍ ହେବ'। ଠାକୁର ମୋତେ ପଚାରିଥିଲେ—'ଏସବୁ କରୁଛୁ କାହିଁକି ?' ମୁଁ କହିଲି, ଏସବୁ ଦେଇ ଯଦି ଗୋଟାଏ ବହି କରେ, ତାହେଲେ ସେଟା ଗୋଟାଏ ଇତିହାସ ହୋଇ ରହିବ। କ'ଣ ଥିଲି, କିଭଳି ଦୀକ୍ଷା ନେଲି, ଦୀକ୍ଷା ନେବା ପରେ ମୁଁ କ'ଣ ହେଲି—ଏସବୁ ନେଇ ଯଦି ଗୋଟାଏ ବହି କରାଯାଏ, ତାହେଲେ ଠାକୁରଙ୍କର ଅନ୍ୟ ରକମର ଗୋଟାଏ ଜୀବନୀ ହୋଇଯିବ। କିନ୍ତୁ ସେ ଆଉ ହେଲା କେଉଁଠି ?

ଟିକିଏ ରହି ସେ ପୁଣି କହିଲେ—ପାନ, ଧୂମପାନ ପ୍ରଭୃତି ନିଶା କରିବା—ଏସବୁ ଏକଦମ୍ ବାଦ୍ ଦେଇଦେବାକୁ ହୁଏ, ଆଉ, ମାତ୍ରାତିରିକ୍ତ ଖାଦ୍ୟ ନ ଖାଇବା, ନିୟମିତ ଭୋରରୁ ଉଠିବା, ନାମଧ୍ୟାନ କରିବା—ଏଗୁଡ଼ିକ ଅଭ୍ୟାସଗତ କରିନେବା ଦରକାର। କମ୍ ଖାଇଲେ ଶରୀର ସୁସ୍ଥ ରହେ ଏବଂ ସାଧନ-ଭଜନ ପକ୍ଷରେ ବି ଅତ୍ୟନ୍ତ ସହାୟକ ହୁଏ। ଆମକୁ ସବୁବେଳେ ମନେ ରଖିବାକୁ ହେବ ଯେ, ସ୍ୱାସ୍ଥ୍ୟରକ୍ଷା ପାଇଁ ହିଁ ଖାଇବା—ସ୍ୱାସ୍ଥ୍ୟକୁ ବିକୃତ କରିବା ପାଇଁ ନୁହେଁ। ଆଉ ଏଇ ଯେ ଖାଦ୍ୟ, ଯାହା ଖାଇ ଲକ୍ଷ ଲକ୍ଷ ବୟସ୍କ ବ୍ୟକ୍ତିଙ୍କର ସ୍ୱାସ୍ଥ୍ୟହାନି ଘଟିଥାଏ, ତାହା ପ୍ରକୃତପକ୍ଷେ ଯେଉଁମାନେ needy, ସେମାନଙ୍କର ପ୍ରୟୋଜନରେ ଲାଗି, ଦେଶର ଖାଦ୍ୟ-ସମସ୍ୟା ସମାଧାନରେ ଅନେକଟା ସହାୟତା କରିଥାଏ। କମ୍ ଖାଇଲେ ରୋଗ ହୁଏନା। ଯେଉଁମାନେ ଥରକେ ଚାରିଛଟାଙ୍କି ଚାଉଳର ଭାତ ଖାଆନ୍ତି, ଚାଳିଶି ବର୍ଷ ବୟସ ହେଲେ ସେମାନେ ତିନିଛଟାଙ୍କି, ପଚାଶ ବର୍ଷ ବୟସରେ ଦୁଇଛଟାଙ୍କି କରି ଏବଂ ଷାଠିଏ-ସତୁରୀ ବର୍ଷ ବା ତାଠାରୁ ବେଶି ବୟସରେ ଛଟାକିଏ କରି ଖାଇବେ,—ଅଧଛଟାଙ୍କି କରି ଖାଇଲେ ଆହୁରି ବି ଭଲ ହୁଏ। ଏହିଭାବେ solid food ଖାଇବା ଏକେବାରେ କମାଇ ଦେବାକୁ ହୁଏ। ଅବଶ୍ୟ liquid food– ଦୁଧ, ଦହି, Complan, ହରଲିକ୍ସ ଜାତୀୟ ଖାଦ୍ୟ ପ୍ରୟୋଜନାନୁପାତିକ ଗ୍ରହଣ କରିବା ଭଲ। ଖାଇବା କମାଇବାର ଏହି ନୀତି ସବୁ ସ୍ଥାନ-କାଳ-ପାତ୍ର ଓ ପରିସ୍ଥିତି ଉପରେ ନିର୍ଭରଶୀଳ।

ଆମ୍ଭମାନଙ୍କର ଯେତେ ରୋଗ ସବୁ ହିଁ ଖାଇବା ଯୋଗୁଁ। ଖାଇବା କମାଇବା ଫଳରେ ବାତ, ବ୍ଲଡପ୍ରେସର, ଡାୟବେଟିସ୍, ସୋରିଆସିସ୍ ପ୍ରଭୃତି ରୋଗ ହାତରୁ ଅନେକାଂଶରେ ନିଷ୍କୃତି ପାଇହୁଏ। ଏସବୁ ରୋଗର କ୍ଷେତ୍ରରେ ଲୁଣ ଓ ମିଠା ଏକଦମ୍ ବାଦ୍ ଦେଇଦେବାକୁ ହୁଏ। କିଛିଦିନ ବାଦ୍‌ଦେଲେ ରୋଗସମୂହର ଉପଶମ ହୁଏ। ବୟସ ବୃଦ୍ଧି ସଙ୍ଗେ ସଙ୍ଗେ ଲୁଣ ଓ ମିଠା ଖାଇବା କମାଇଦେଲେ ଏସବୁ ରୋଗ ହୁଏନା। ଛୋଟ ବେଳାଠାରୁ ହିଁ ଶିଶୁମାନଙ୍କୁ ସେମାନଙ୍କର ଇଚ୍ଛା ବିରୁଦ୍ଧରେ ବା ପ୍ରୟୋଜନର ଅତିରିକ୍ତ ଅଯଥା ଖୁଆଇବା, ଆଦୌ ଠିକ୍ ନୁହେଁ। ଯେଉଁମାନେ ଚର୍ମରୋଗରେ ଆକ୍ରାନ୍ତ—ସେ, ଯେ ବୟସରେ ହେଉନା କାହିଁକି, କିଛିଦିନଲାଗି ଲୁଣ-ମିଠା ଖାଇବା ଏକଦମ୍ ବାଦ୍ ଦେଇ ଯଦି ଅଳ୍ପ solid food ଏବଂ ବେଶି ଭାଗ liquid food ଗ୍ରହଣ କରାଯାଏ, ତେବେ ବିନା ଔଷଧପତ୍ରରେ ବି ଏସବୁ ରୋଗହାତରୁ ସହଜରେ ହିଁ ନିସ୍ତାରଲାଭ କରିବା ସମ୍ଭବପର। ମୁଁ ଯାହା ବୁଝେ ତା'ହିଁ କହିଲି।

ସାଗ୍ରହେ ଶୁଣୁଛନ୍ତି କର୍ମୀଗଣ ତାଙ୍କର ଶ୍ରୀମୁଖନିଃସୃତ ଶରୀର-ଚିକିତ୍ସା ବିଜ୍ଞାନର ଅଭୂତପୂର୍ବ ନିର୍ଦ୍ଦେଶାବଳୀ। ସବୁରି ମୁହଁରେ ପରମତୃପ୍ତିର ଆଭାସ।

ଶ୍ରୀଶ୍ରୀପିତୃଦେବ ପୁଣି କହିଲେ—ସାଧାରଣ କେତେକ ନିୟମ ମାନିବାକୁ ହୁଏ। ହାଇମାରିବା ସମୟରେ କିମ୍ବା ଛିଙ୍କିବା ସମୟରେ ମୁହଁରେ ହାତଦେଇ ଢାଙ୍କିଦେବା ଉଚିତ। ଛିଙ୍କ ସମ୍ପର୍କରେ କୋଉ ବହିରେ ଯେମିତି ପଢ଼ିଥିଲି—ଛିଙ୍କର ଗତିବେଗ ଘଣ୍ଟାରେ ୧୦୦ କିଲୋମିଟର।

ନିଶା କରିବା ଅନୁଚିତ। ନିଶା-ଫିଶା, ଖାଇବାପିଇବା—ସବୁକିଛି ଏକେବାରେ ଇଷ୍ଟାନୁଗ କରିନେବାକୁ ହୁଏ। ଇଷ୍ଟ-ବ୍ୟାପାରରେ ବି ଅନେକଙ୍କର ପୁଣି adjustment and manipulation ର tendency ଅଛି। ଏହାର ମାନେ କ'ଣ ? ଠାକୁରଙ୍କର ବାଣୀ ଅଛି—

"ପିତାମାତା ଗୁରୁଜନେ
ଶ୍ରଦ୍ଧାଭକ୍ତି ଯାହା ରଖ ନା,
ଇଷ୍ଟାନୁଗ ନ ହେଲେ ସେ
ଆସିବ ନାହିଁ ସମ୍ବର୍ଦ୍ଧନା।"

ଏ କଥାଟା ସମସ୍ତଙ୍କ ଭିତରେ ହିଁ ପ୍ରବଳ ଥିବା ଭଲ। ଯଦି ଶ୍ରଦ୍ଧା-ଭକ୍ତି ଇଷ୍ଟାନୁଗ ନ ହୁଏ ତା ସଙ୍ଗରେ କୌଣସି ସମ୍ପର୍କ ବି ରଖିବା ଅନୁଚିତ। କାରଣ, ଯେଭଳି ଦୁଧ ଓ ଗୋ-ଚନା, ଏକ ମହଣ ଦୁଧ ଭିତରେ ଗୋଟିଏ ପୁଣ୍ଟା ଗୋ-ଚନା ଦେଇଦେଲେ ସବୁ ନଷ୍ଟ ହୋଇଯାଏ। ସେଥିଲାଗି ସବୁବେଳେ ଇଷ୍ଟସ୍ୱାର୍ଥ ପ୍ରତିଷ୍ଠାମୂଳକ ଗଳ୍ପ, ଆଲୋଚନା ଓ କଥାବାର୍ତ୍ତା କରିବା ଉଚିତ। ଆଉ ସେହିମାନଙ୍କର ସଙ୍ଗ କରିବା ଉଚିତ, ଯେଉଁମାନେ ଇଷ୍ଟାନୁଗ ଚଳଣରେ ଚାଲନ୍ତି। ଏଥିରେ ହିଁ ମଙ୍ଗଳ। ସେସବୁ ବ୍ୟାପାରରେ ଯୁକ୍ତି ନାହିଁ ଭକ୍ତି ହିଁ ଶ୍ରେୟ।

ଉକ୍ତ ପ୍ରସଙ୍ଗରେ ସେ କହିଲେ, କିଏ ମୋତେ ଗୋଟାଏ ଗଳ୍ପ କହିଥିଲେ, (ନନୀଦାଙ୍କ ଆଡ଼କୁ ଚାହିଁ)—ବୋଧହୁଏ ଆପଣ କହିଥିଲେ। ଜଣେ ଲୋକର ସ୍ତ୍ରୀ ରାମାୟଣ ପଢୁଛି। ରାମଚନ୍ଦ୍ର ଓ ହନୁମାନର ପ୍ରସଙ୍ଗ, ପାଖରେ ତାର ସ୍ୱାମୀ ବସିଥିଲା। ହଠାତ୍ ସେ ହସି ପକାଇଲା। ସ୍ତ୍ରୀ ପଚାରିଲା, 'ତୁମେ ହସିଲ କାହିଁକି' ? ସ୍ୱାମୀ କହିଲା, 'ମୁଁ ଏସବୁ ବିଶ୍ୱାସ କରେ ନା'। ସଙ୍ଗେ ସଙ୍ଗେ ସ୍ତ୍ରୀ କାନ୍ଦିବାକୁ ଲାଗିଲା, ଆଉ କହିଲା—'ତୁମେ ହସିଲ, ତୁମେ ବିଶ୍ୱାସ କରିଲ ନାହିଁ....!' ସ୍ତ୍ରୀର ଏଭଳିଭାବ ଦେଖି ସ୍ୱାମୀ କହିଲା—ନା, ନା, ମୁଁ ବିଶ୍ୱାସ କରେ।—ଏଇୟା ନା ?

ନନୀଦା (ଚକ୍ରବର୍ତ୍ତୀ)—ଆଜ୍ଞା, ହଁ, ଏହିଭଳି।

ଶ୍ରୀଶ୍ରୀପିତୃଦେବ—ଆପଣ କେତେ ସୁନ୍ଦରଭାବେ କହିଥିଲେ। ମୁଁ ଠିକ୍‌ଭାବେ କହି ପାରିଲିନି। ସେଇଥିପାଇଁ, ଯୁକ୍ତି ନୁହେଁ, ଭକ୍ତି ହିଁ ଭଲ। ଠାକୁରଙ୍କ ବିଷୟରେ ବି ଆମର ଏଭଳି ହେବା ଦରକାର। ଯୁକ୍ତି କେବେହେଲେ ଠାକୁରଙ୍କ ପାଖରେ ପହଞ୍ଚାଇ ଦେଇ ପାରେନା। ଏକମାତ୍ର ଭକ୍ତି-ବିଶ୍ୱାସ ହିଁ ପାରେ। ଆମ ଭିତରେ ଅନେକ ଗୁରୁଭାଇ ଅଛନ୍ତି, କର୍ମୀ ଅଛନ୍ତି, ଯେଉଁମାନେ ଯୁକ୍ତି ଖୋଜନ୍ତି। ସେଥିଲାଗି ଏ ବିଷୟରେ ଆମ୍ଭମାନଙ୍କୁ ସଜାଗ ହେବାକୁ ହେବ।

ଯେଉଁମାନେ ଅକପଟଭାବରେ ଅନୁରାଗର ସହିତ ନାମ-ଧ୍ୟାନ, ସାଧନ-ଭଜନ କରନ୍ତି—ସେମାନେ ସହଜରେ ହିଁ ବୁଝିପାରିବେ ଯେ ଏପରି କେତେକ ସ୍ଥାନ ଅଛି, ଯେଉଁଠି ଯୁକ୍ତି ପହୁଞ୍ଚାଇଦେଇ ପାରେ ନା। କେବଳମାତ୍ର ଭକ୍ତି-ବିଶ୍ୱାସ ହିଁ ତାହା ପାରେ। ସେଠାରେ ହିଁ ମୀମାଂସା ହୁଏ—ସେଠାରେ ସର୍ବଜନୀନ ମଙ୍ଗଳ ମୂର୍ତ୍ତ ହୋଇଉଠେ। ସେ କିନ୍ତୁ ସହଜ ବ୍ୟାପାର ନୁହେଁ। ମୁଁ general talk ହିସାବରେ କହୁନି। ଏ'ଟା କର୍ମୀ-ବୈଠକ ତ, ତେଣୁ ସାଧନ-ଭଜନ point ରୁ ଏସବୁ କହୁଛି।

ଏହାପରେ ଶ୍ରୀଶ୍ରୀପିତୃଦେବଙ୍କ କଥିତ point ଗୁଡ଼ିକ ନନୀଦା କର୍ମୀମାନଙ୍କ ଉଦ୍ଦେଶ୍ୟରେ ପୁନରାୟ ଉଲ୍ଲେଖ କଲେ।

ପ୍ରଥମତଃ, କର୍ମୀମାନେ ପ୍ରତ୍ୟେକେ ସେମାନଙ୍କର ନିଜନିଜର ପାସପୋର୍ଟ ସାଇଜର ସ୍ପଷ୍ଟ ଫଟୋ ଏବଂ ତା ସହିତ କେବେ ଦୀକ୍ଷା ନେଇଛନ୍ତି ଏବଂ କେବେ ପାଞ୍ଜା ପାଇଛନ୍ତି—ଏ ସମ୍ପର୍କରେ ଗୋଟାଏ ଛୋଟ ନୋଟ ପଠାଇବେ।

ଦ୍ୱିତୀୟତଃ, ସାଧନ-ଭଜନ ନିୟମିତ କରିବା ଦରକାର। ରୋଜ ଭୋରରୁ ଉଠିବା, ନାମ-ଧ୍ୟାନ କରିବା, ଠାକୁରଙ୍କ ବାଣୀ ପାଠ କରିବା ; ଯା' ଶୁଣେ ବା ପାଠକରେ ତା' ଚରିତ୍ରଗତ କରିବା। ଏହା ସାଧନ-ଭଜନର ହିଁ ଗୋଟାଏ ଅଙ୍ଗ।

ତୃତୀୟତଃ, ଆମେ କର୍ମୀମାନେ କର୍ମକ୍ଷେତ୍ରରେ ଯେଉଁଠାକୁ ଯାଉନା କାହିଁକି, ସେଠାକାର ଲୋକେ ଯେପରି ବୁଝିବାକୁ ପାଆନ୍ତି ଯେ, ସେମାନଙ୍କ ଯେତେ ଅଶାନ୍ତି, ଯେତେ ଅବସାଦ, ଯେତେ ଦୁଃଖ, ଯେତେ ମଳିନତା—ସବୁ ଦୂର ହୋଇଗଲା। ଏମିତି ତ ମଣିଷର ସଂସାରରେ ଅଶାନ୍ତି ରହିଥାଏ। ଆଉ ମୁଁ ଯେମିତି ଯାଇ ଆହୁରି ଅଶାନ୍ତି ନ ବଢ଼ାଏ—ସେଦିଗରେ ବିଶେଷ ନଜର ଦେବାକୁ ହେବ। ଆମେ ଯେପରି ଯାଇ ସେମାନଙ୍କର ଆଉ ଗୋଟାଏ ନୂତନ ଅଶାନ୍ତିର ସୃଷ୍ଟି ନ କରୁ।

ଚତୁର୍ଥତଃ, ନିଶାପିଶା ଏକେବାରେ ବାଦ୍ ଦେବା ଉଚିତ। 'ସତ୍‌ସଙ୍ଗ' ରେ ବସି କେହି ହୁଏତ ଚା' ଖାଉଛି, ନାସ ଟାଣୁଛି ବା ପାନ ଖାଉଛି—ଏସବୁ କରିବା ମୋଟେ ହିଁ ଉଚିତ ନୁହେଁ। ଏକ କପ୍ ଚା' ଖାଉ ଖାଉ ହୁଏତ ଯାଜନ କରୁଛ, ଏଥିରେ ଭାବ ନଷ୍ଟ ହୋଇଯାଏ। ଏସବୁ ଏକଦମ୍ ବାଦ୍ ଦେଇଦେବାକୁ ହୁଏ।

ମନ ଭିତରେ ପାପକୁ ଆସିବାକୁ ହିଁ ଦେବା ଠିକ୍ ନୁହେଁ। ଖୁବ୍ ସାଜସଜ୍ଜା ନେଇ ରହିଲି ଅଥଚ ମନେମନେ ପାପଚିନ୍ତା କରିଲି, ପାପ କାହାକୁ କହନ୍ତି ?—ଇଷ୍ଟସ୍ୱାର୍ଥପ୍ରତିଷ୍ଠା ହିଁ ଆମର ଜୀବନବୃଦ୍ଧିର ମୂଳ ସୂତ୍ର। ଇଷ୍ଟସ୍ୱାର୍ଥପ୍ରତିଷ୍ଠାର ଅନ୍ତରାୟ ଯା'—ଯା' expansion (ପ୍ରସାରଣ) ରେ ବାଧା ସୃଷ୍ଟିକରେ, ତା' ହିଁ ପାପ। ସେଥିଲାଗି ମନ ଭିତରେ ପାପ ରଖିବା ଠିକ୍ ନୁହେଁ, ମନକୁ ସାଫ୍ ରଖିବା ଦରକାର।

ଯେଉଁମାନେ ପାପ କରନ୍ତି ଅଥଚ, ଲୁଚାଇ ରଖନ୍ତି, ପୋଷଣ କରନ୍ତି—ତା' ଅପେକ୍ଷା ଯେଉଁମାନେ ପାପ କରି ଗୋପନ ନ କରନ୍ତି ସେମାନେ ଢେର ଭଲ। କେହି ଯେଭଳି ଜାଣି ନ ପାରେ, ଏଭାବରେ ଯେଉଁମାନେ ପାପକୁ ଲୁଚାଇ ରଖନ୍ତି, ସେମାନେ କେବେହେଲେ

ପରମପିତାଙ୍କର ଆଶୀର୍ବାଦ ପାଆନ୍ତି ନାହିଁ। ଏଇ ଜନ୍ମରେ ସେମାନେ ପୁଣି ପ୍ରାରବ୍ଧର ସୃଷ୍ଟି କରି ଚାଲନ୍ତି। ପରଜନ୍ମରେ ହିଁ ସେମାନଙ୍କୁ ପୁଣି ଲଙ୍ଗଳ ଟାଣିବାକୁ ହୁଏ, ଏବଂ ପାଞ୍ଚଜଣଙ୍କର ବାଡ଼ି ଖାଇବାକୁ ପଡ଼େ। ପରମପିତା ସମସ୍ତଙ୍କ ପାଇଁ ହିଁ ପଥ ରଖିଯାଇଛନ୍ତି। ତାଙ୍କର ଅନୁଶାସନବାଦ୍ ଠିକ୍ ଠିକ୍ ମାନି ଚାଲିବାକୁ ହୁଏ।

ପ୍ରଫୁଲ୍ଲଦା (ଦାସ)—ଠାକୁର କହୁଥିଲେ, ବଳଦ ପୋଷି ରଖିଲେ ବଳଦ ହେବାକୁ ହିଁ ପଡ଼ିବ।

ଶ୍ରୀଶ୍ରୀପିତୃଦେବ—ମୁଁ ଯାହା କହିଲି, ତା' ସଙ୍ଗରେ ମିଳେ ତ ?

ପ୍ରଫୁଲ୍ଲଦା—ଆଜ୍ଞା, ଠିକ୍ ଏକାକଥା।

ଏହାପରେ ନନୀଦା ଜଣାଇଲେ ଯେ, ଦେଶର ସର୍ବତ୍ର ହିଁ ଆମର କାର୍ଯ୍ୟ-କର୍ମ ଖୁବ୍ ଭଲଭାବରେ ହେଉଛି, ତେବେ ସୁଦ୍ଧା ଆହୁରି ବି କର୍ମୀଙ୍କର ପ୍ରୟୋଜନ।

ଶରତ୍‌ଦା (ସତ୍‌ସଙ୍ଗର ପ୍ରେସିଡେଣ୍ଟ)—ଆମର ଅଧ୍ୱର୍ଯ୍ୟୁଙ୍କ ସଂଖ୍ୟା ଖୁବ୍ ହିଁ କମ୍।

ଶ୍ରୀଶ୍ରୀପିତୃଦେବ—ଆହୁରି କର୍ମୀ ପ୍ରୟୋଜନ। ଦୀକ୍ଷାଦାତା କର୍ମୀଙ୍କ ସଂଖ୍ୟା ବି ବଢ଼ାଇବାକୁ ହେବ। ଠାକୁର କେତୋଟି point କହି ଦେଇଛନ୍ତି, କର୍ମୀ ନିର୍ବାଚନ ସମ୍ବନ୍ଧରେ। ସେ ଧରଣର କର୍ମୀ ଦରକାର। ପାଞ୍ଜାପାଇଁ ଲୋଭ ନାହିଁ, କେତେକ ବର୍ଷଧ ସ୍ୱସ୍ତ୍ୟୟନୀ ଅଛି, ଅନ୍ୟର ସୁଖ-ଶାନ୍ତି ଦିଗରେ ନଜର ଅଛି, ଇଷ୍ଟପ୍ରାଣ କି ନୁହେଁ, ଏସବୁ ଭଲକରି ଦେଖିବାକୁ ହୁଏ। ଏ ରକମର କର୍ମୀ ଆମ୍ଭମାନଙ୍କ ଭିତରେ ଅନେକ ଅଛନ୍ତି—ସେମାନେ ତ ଆଉ ହାମ୍-ହାମ୍ କରି ବୁଲନ୍ତିନି, ସେମାନଙ୍କୁ ଖୋଜି ବାହାର କରିବାକୁ ପଡ଼େ।

ପ୍ରଫୁଲ୍ଲଦା—ଠାକୁରଙ୍କର ଗୋଟାଏ ଛଡ଼ା ଅଛି—

"କଥା-କର୍ମେ ପ୍ରେଷ୍ଟସ୍ୱାର୍ଥୀ
ଉଦ୍ଦେଶ୍ୟେ ଅମୋଘ ଗତି,
ସାଶ୍ରୟୀ, ନିପୁଣ ଅର୍ଜନେ ପଟୁ
ସ୍ୱାର୍ଥେ ଶିଥିଳ ରତି,
ଏଗୁଡ଼ିକ ସବୁ ଦେବ-ଲକ୍ଷଣ,
ଦେଖିବ ଚରିତ୍ରେ ଯା'ର,
ସେଇ ତ ଜାଣିବ ସ୍ୱଭାବ-ମଣିଷ
ବୀରର ହୃଦୟ ତାର।"

ଦୁଲାଲଦା (ମଜୁମଦାର) ଜଣାଇଲେ—ଆଜି ସକାଳେ କର୍ମୀ-ସମ୍ମେଳନରେ ବର୍ଦ୍ଧମାନର ଉତ୍ସବ ଏବଂ ଦେଓଘର ଉତ୍ସବରେ ଯୋଗଦାନେଚ୍ଛୁ ଭକ୍ତ-ଜନସାଧାରଣଙ୍କର ଯାତାୟାତ ଉଦ୍ଦେଶ୍ୟରେ ବସ୍ କିଣିବା କଥା ବି ହୋଇଛି। ବସ୍ ପାଇଁ ତିନି ଲକ୍ଷ ଟଙ୍କା ଦରକାର। ଦୁଇଟି ବସ୍‌ର ଚେସିସ୍ କିଣା ହୋଇସାରିଛି ଏବଂ ଗୋଟିକର body ବି ତିଆରି କରିବାକୁ ଦିଆହୋଇଛି।

ଶ୍ରୀଶ୍ରୀପିତୃଦେବ—ଖୁବ୍ ଭଲ। ଏସବୁ ଯଥାଶୀଘ୍ର କରିପକାଇବା ଦରକାର। ଏଗୁଡ଼ିକ

secondary, ଆଗେ ଠାକୁର ଯେଉଳି ଚାହାନ୍ତି, ଆମକୁ ସେଉଳି ହେବାକୁ ହେବ। ଆମକୁ ସବୁସମୟରେ ପରିଷ୍କାର ପରିଚ୍ଛନ୍ନ ରହିବାକୁ ହେବ। ହୁଏତ କାହା ମୁହଁରୁ ପାନର କଷ ପଡୁଛି, ହୁଏତ ଚୂଳ କାଟେନା, ଆଖିରେ ଲେଞ୍ଜରା, ଦାନ୍ତ ମାଜେନା, ଦାଢ଼ି କାଟେନା—ଏସବୁ କିନ୍ତୁ ଭଲ ନୁହେଁ। ନିଜର ଶରୀରଟାକୁ ସଦାସର୍ବଦା ପରିଷ୍କାର ପରିଚ୍ଛନ୍ନ ରଖିବାକୁ ହୁଏ। ସେ ଏହି ମନ୍ଦିରରେ ଅଛନ୍ତି, ଏଇ ବୋଧରେ।

ପ୍ରଫୁଲ୍ଲଦା (ଦାସ)—Will to ugliness, pauperism (ଦାରିଦ୍ର୍ୟବ୍ୟାଧି) ର ଗୋଟାଏ ଲକ୍ଷଣ।

ଶ୍ରୀଶ୍ରୀପିତୃଦେବ—ଠାକୁରଙ୍କ ପ୍ରତି ଯଦି ଆମ୍ଭମାନଙ୍କର ଆକର୍ଷଣ ଥାଏ, ତେବେ ତାଙ୍କଲାଗି ନିଜକୁ ଅବଶ୍ୟ ପରିଷ୍କାର-ପରିଚ୍ଛନ୍ନ ରଖିବୁ। ସବୁବେଳେ ସୈନିକ ଭଳି ନିଜକୁ ପ୍ରସ୍ତୁତ ରଖିବୁ। ଅନ୍ୟ ଗୋଟିଏ ବିଷୟ ପ୍ରତି ଲକ୍ଷ୍ୟ ରଖିବା ଦରକାର—ମୁଁ ନିଜେ ଯାହା କରେ, ତା ହିଁ କହୁଛି—ଠାକୁରଙ୍କୁ ନିବେଦନ ନ କରି କିଛି ଖାଇଲେ, ସେ ବିଷ୍ଠା ଖାଇବା ସଙ୍ଗେ ସମାନ। ଯା' ବି ଖାଏନା କାହିଁକି, ସବୁସମୟରେ ତାଙ୍କୁ ନିବେଦନ କରି ଖାଇବାକୁ ହୁଏ। ମନ୍ତ୍ର-ତନ୍ତ୍ର ଜଣା ନ ଥିଲେ ବି, ତାଙ୍କ ଉଦ୍ଦେଶ୍ୟରେ ନିବେଦନ କରି ଅନ୍ତତଃ ମନେ ମନେ କହିବା ଉଚିତ—'ହେ ଦୟାଲ, ମୁଁ ତୁମର ପ୍ରସାଦ ଗ୍ରହଣ କରୁଛି।' ମୁଁ ମୋର ପୁଅ-ଝିଅ ନାତି-ନାତୁଣୀମାନଙ୍କୁ ମଧ୍ୟ ସେଇଆ ଶିଖାଏ। ସେତେବେଳେ ଠିକ୍ ତାଙ୍କର ପସନ୍ଦମୁତାବକ ଖାଦ୍ୟପାନୀୟ ଗ୍ରହଣ କରିବାକୁ ମନ ଚାହେଁ। ଏହା ହିଁ ଆମର ଭାରତୀୟ ବୈଶିଷ୍ଟ୍ୟ—ନିବେଦନ କରି ଠାକୁରଙ୍କ ପ୍ରସାଦ ଗ୍ରହଣ କରିବା। ତା' ହେଲେ ଯେଉଁମାନେ ମାଛ-ଫାଛ ଖାଆନ୍ତି, ସେମାନଙ୍କର ଉପାୟ ?

ପ୍ରଫୁଲ୍ଲଦା—ଉପାୟ ହେଉଛି ମାଛ-ଫାଛ ନ ଖାଇବା।

ଶ୍ରୀଶ୍ରୀପିତୃଦେବ ଟିକିଏ ସ୍ମିତ ହସି କହିଲେ—ଏଇଟା ଲୋକଦେଖାଣିଆ ବ୍ୟାପାର ନୁହେଁ। ନାମ-ଧ୍ୟାନର ବ୍ୟାପାର ମଧ୍ୟ ସେପରି। ପରମହଂସଦେବ କହୁଥିଲେ,—'ନାମ କରିବାକୁ ହୁଏ, ମନେ-ବନେ-କୋଣେ।' ଠାକୁର ବି କହିଛନ୍ତି—'ଉଷା ନିଶାରେ ମନ୍ତ୍ରସାଧନ......।' ଠାକୁର ଦିନେ କୌଣସି ଏକ ଘଟଣା-ପ୍ରସଙ୍ଗରେ ମୋତେ କହିଥିଲେ—

"ଢାକ-ଢୋଲରେ କରିଲେ ପୂଜା
ଅହଙ୍କାର ହୁଏ ମନେ ମନେ,
ଅନ୍ତରାଳେ କରିବୁ ପୂଜା
ଜାଣିବେ ନାହିଁ ଜଗତ୍ ଜନେ।"

ଦେଖୁ ଦେଖୁ କେତେବେଳେ ୪.ଟା ୫୭ ମିନିଟ୍ ହୋଇଯାଇଛି—ସେଆଡ଼େ କାହାରି ହେଲେ ଖିଆଲ ନାହିଁ। ପ୍ରାର୍ଥନା ସମୟ ହୋଇ ଆସିବାରୁ ଶ୍ରୀଶ୍ରୀପିତୃଦେବଙ୍କ ସହ ଆମେ ସମସ୍ତେ ଉଠିପଡ଼ିଲୁ।

ସମବେତ ପ୍ରାର୍ଥନାନ୍ତେ ଶ୍ରୀଶ୍ରୀପିତୃଦେବ ସମସ୍ତଙ୍କୁ ଉଦ୍ଦେଶ୍ୟ କରି କହିଲେ—ସର୍ବପ୍ରଥମେ ଗୋଟାଏ କଥା ଆସେ ଯେ, ଆମେ କାହାର ପ୍ରାର୍ଥନା କରୁ ? ଠାକୁରଙ୍କରୀ ସୁତରାଂ ଠାକୁର

ଆମକୁ ଯେତେବେଳେ ଯେପରିଭାବେ ପ୍ରାର୍ଥନା କରିବାକୁ କହିଛନ୍ତି, ଆମେ ବି ଠିକ୍ ସେହିଭାବରେ କରି ଆସୁଛୁ । ଅନେକେ କହନ୍ତି—ଠାକୁର ସେତେବେଳେ ଅସୁସ୍ଥ ଥିଲେ । କିନ୍ତୁ ଯେଉଁମାନେ ପ୍ରତ୍ୟହ ପ୍ରାର୍ଥନାକୁ ଆସନ୍ତି ସେମାନେ ସମସ୍ତେ ହିଁ ଜାଣନ୍ତି ଯେ, ଠାକୁର ସେତେବେଳେ ସମ୍ପୂର୍ଣ୍ଣ ସୁସ୍ଥ ଥିଲେ । ଦିନେ ମୁଁ ସମବେତ ପ୍ରାର୍ଥନାର ଆସନରେ ବସିଛି, ଠାକୁର ମୋତେ—'ଏଇ ଶୁଣ୍' ବୋଲି ଡାକିନେଇ କହିଲେ—'ପ୍ରାର୍ଥନା ଅଯଥା ଦୀର୍ଘକରିବା ଠିକ୍ ନୁହେଁ ।' ତାପରେ ପ୍ରାର୍ଥନା କିଭଳି କରିବାକୁ ହେବ, ତାହା ଠାକୁର ନିଜେ ସୁର, ଛନ୍ଦ ଓ ଲୟ ସହକାରେ ମୋତେ ଦେଖାଇଦେଲେ ଏବଂ ସେହିଭାବରେ ହିଁ କରିବାକୁ କହିଲେ । ଠାକୁରଙ୍କର ସେହି ଇଚ୍ଛାନୁଯାୟୀ ସେଦିନ କେବଳମାତ୍ର ବିନତି ଦୁଇଟି ହିଁ ପ୍ରାର୍ଥନା କରାହେଲା । ପରଦିନ ସକାଳେ ବିନତି ପରେ ଠାକୁର ମୋତେ ଲକ୍ଷ୍ୟକରି କହିଲେ—'ଗୁରୁବନ୍ଦନାଟା ବି କର ।' ତାପରଠାରୁ ଠାକୁରଙ୍କର ଶ୍ରୀମୁଖ-ନିର୍ଦ୍ଦେଶ ଅନୁଯାୟୀ, ସେହିଭାବରେ ପ୍ରାର୍ଥନା ହୋଇ ଆସୁଛି ।

ପ୍ରତ୍ୟେକ ସତ୍‌ସଙ୍ଗୀ ମାତ୍ରେ ଠାକୁରଙ୍କର ଏହି ଆଦେଶ ମାନି ପ୍ରାର୍ଥନା କରିବା ଉଚିତ । ପ୍ରାର୍ଥନା ଆମେ ତାଙ୍କରି ହିଁ କରିଥାଉଁ । ଏହା ଭିତରେ କୌଣସି ବ୍ୟକ୍ତିଗତ ମତାମତ ଜାହିର କରିବା ମାନେ ତାଙ୍କର ନିର୍ଦ୍ଦେଶକୁ ହିଁ ଅମାନ୍ୟ କରିବା ବୋଲି ମୁଁ ମନେକରେ ।

## ଶୁକ୍ରବାର, ୩-ମାଘ, ୧୩୮୧ (ଇଂ ୧୭/୧/୭୫)

ଆଜିକୁ ତିନିଦିନ ହେଲା ଶ୍ରୀଶ୍ରୀପିତୃଦେବ ବର୍ଦ୍ଧମାନ ଠାକୁରବାଡ଼ିରେ ଅବସ୍ଥାନ କରୁଛନ୍ତି ।

ଗତ ଜାନୁୟାରୀ ୧୪, ଅପରାହ୍ଣରେ ସେ ଦେଓଘରରୁ ବର୍ଦ୍ଧମାନ ଆସିଛନ୍ତି—ପରମଦୟାଲ ଶ୍ରୀଶ୍ରୀଠାକୁର ଅନୁକୂଳଚନ୍ଦ୍ରଙ୍କର ବର୍ଦ୍ଧମାନ ଶ୍ରୀମନ୍ଦିର ଉଦ୍‌ବୋଧନ ଉପଲକ୍ଷେ । ତାଙ୍କ ସଙ୍ଗରେ ଆସିଛନ୍ତି ପୂଜନୀୟା ମା', ପୂଜନୀୟା ରାଙ୍ଗାମା, ପୂଜନୀୟା ବଡ଼ଦି, ପୂଜନୀୟ ପିଣ୍ଟୁଦା, ପୂଜନୀୟା ସୁଟୁକଦି, ଟିଂଟି-ମା (ପୂଜନୀୟା ବଡ଼ଦିଙ୍କ କନ୍ୟା), ଅନୁଦ୍ୟୁତିବାବୁ (ପୂଜନୀୟା ବଡ଼ଦିଙ୍କ ପୁତ୍ର); ଏମାନଙ୍କ ଛଡ଼ା ରହିଛନ୍ତି—ସତ୍‌ସଙ୍ଗର ସମ୍ପାଦକ ଶ୍ରୀ ନନୀଗୋପାଳ ଚକ୍ରବର୍ତ୍ତୀ, କାର୍ତ୍ତିକ ଚନ୍ଦ୍ର ସରକାର, ଡଃ ରେବତୀ ମୋହନ ବିଶ୍ୱାସ, ନନ୍ଦଦୁଲାଲ ଭଟ୍ଟାଚାର୍ଯ୍ୟ ଡାଃ ପ୍ରଶାନ୍ତ ବରା, ସୁନୀଲ କରଣ, ଅଜିତାଭ ଗୁପ୍ତଚୌଧୁରୀ, ବିମଳ ଚୌଧୁରୀ ପ୍ରଭୃତି । ପରଦିନ ସକାଳ ୮ଟାରେ ମନ୍ଦିର-ଉଦ୍‌ବୋଧନ କରାହୁଏ । ତତ୍ପର ଦିନ ୧୬-ଜାନୁୟାରୀ ସକାଳ ୭ଟା ୩୦ ମିଃରେ ବର୍ଦ୍ଧମାନ ସହରର ରାଜପଥରେ ଗୋଟିଏ ବିଶାଳ ବର୍ଣ୍ଣାଢ୍ୟ ଧର୍ମୀୟ ଶୋଭାଯାତ୍ରାର ଅଗ୍ରଭାଗରେ ଥିଲେ ସ୍ୱୟଂ ଶ୍ରୀଶ୍ରୀପିତୃଦେବ । ବର୍ଦ୍ଧମାନ ସହରର ବକ୍ଷରେ ଏତେବଡ଼ ଧର୍ମୀୟ ଶୋଭାଯାତ୍ରା ଇତିପୂର୍ବେ କେବେ ବି ଦେଖାଯାଇନି । ପ୍ରାୟ ଦେଢ଼ମାଇଲ ଦୀର୍ଘ ଶୋଭାଯାତ୍ରାରେ ୫ଟି ହାତୀ, ଅନେକଗୁଡ଼ିଏ ବ୍ୟାଣ୍ଡ ପାର୍ଟି ଏବଂ ବିଭିନ୍ନ ଗ୍ରୁପ୍‌ରେ ବିଭକ୍ତ ଭିନ୍ନ ଭିନ୍ନ ବୟସର ନର-ନାରୀଙ୍କର ସମାବେଶ, ବର୍ଦ୍ଧମାନ ନଗରବାସୀଙ୍କ ନିକଟରେ ଥିଲା ଅଭିନବ ।

କଥା ଥିଲା ଶ୍ରୀଶ୍ରୀପିତୃଦେବ ଆଜି ଅପରାହ୍ଣ ୩ଟା ସୁଦ୍ଧା ବର୍ଦ୍ଧମାନ ସହରଠାରୁ

କିଛିଦୂରରେ ବର୍ଦ୍ଧମାନ-ହାଓଡ଼ା ମେନ୍ ରେଳପଥରେ ପାଲ୍‌ସିଟି ରେଳଷ୍ଟେସନ୍‌ର ଦେଢ଼ମାଇଲ ଉତ୍ତରରେ ଅବସ୍ଥିତ ଖାଁଡଗାର ସ୍ୱସ୍ତିଶିବିର ପରିଦର୍ଶନ କରିବେ। କିନ୍ତୁ ପ୍ରାତଃକାଳୀନ ବିନତି-ପ୍ରାର୍ଥନା ପରେ, ସେ ଇଚ୍ଛାପ୍ରକାଶ କଲେ–ସକାଳେ ହିଁ ଯିବେ ଶିବିର ପରିଦର୍ଶନ କରିବାକୁ ; ତାଙ୍କର ଇଚ୍ଛାନୁଯାୟୀ ଅନୁଷ୍ଠାନ-ସୂଚୀ ପରିବର୍ତ୍ତନ କରାହେଲା। ସକାଳ ୯ଟାର କିଛି ପୂର୍ବେ ସେ ଠାକୁରବାଡ଼ିରୁ ବାହାରିଲେ। ସଙ୍ଗରେ ପୂଜନୀୟା ବଡ଼ଦି ଓ ତାଙ୍କର ପୁତ୍ର-କନ୍ୟାଦ୍ୱୟ ଏବଂ ପୂଜନୀୟା ପିଣ୍ଟୁଦା। ତାଙ୍କ ଗାଡ଼ି ପଛରେ ଆହୁରି ବି ଦୁଇଟି ଗାଡ଼ି, ତା ପଛରେ ସ୍ୱସ୍ତିବାହିନୀର ଗୋଟିଏ ଜିପ୍ ଓ ଟେମ୍ପୋ ସମ୍ମୁଖସ୍ଥ ଜି. ଟି. ରୋଡ ଧରି ଛୁଟି ଚା'ଲିଲା। ଜି. ଟି. ରୋଡ୍ ଛାଡ଼ି ଗାଡ଼ିଗୁଡ଼ିକ ପାଲ୍‌ସିଟି ରେଳ ଷ୍ଟେସନ୍‌କୁ ଦକ୍ଷିଣରେ ରଖି ସିଧା ଉତ୍ତରଦିଗସ୍ଥ ପାଲ୍‌ସିଟି ଗ୍ରାମରେ ଆସି ଅଟକିଲା। ଶ୍ରୀଶ୍ରୀପିତୃଦେବ ଏଠାରୁ ପାଦରେ ଚାଲିବାକୁ ଆରମ୍ଭ କଲେ। ପ୍ରାୟ ୧୫ ମିନିଟ୍ ଚାଲି ସେ ଶିବିରରେ ପହଞ୍ଚିଲେ। ସେତେବେଳକୁ ସମୟ ୯ଟା ବାଜି ୩୮ ମିନିଟ। ସମସ୍ତେ ତାଙ୍କ ପଛେ ପଛେ (ଅନ୍ୟାନ୍ୟ ଗାଡ଼ିରେ ଯେଉଁମାନେ ଆସିଥିଲେ) ଶିବିର-ପ୍ରାଙ୍ଗଣରେ ପ୍ରବେଶ କଲେ।

ସେ ଉପସ୍ଥିତ ହେବା ସଙ୍ଗେ ସଙ୍ଗେ ଶ୍ରୀଶ୍ରୀଠାକୁରଙ୍କ ଉଦ୍ଦେଶ୍ୟରେ ଜୟଧ୍ୱନି ମୁହୁର୍ମୁହୁଃ ଧ୍ୱନିତ ହେବାକୁ ଲାଗିଲା। ସେ ନବନିର୍ମିତ ଶିବିର-ଘର (ଏକତାଲା କୋଠାଘର) ବାରଣ୍ଡାରେ ଗୋଟିଏ ଖଟ ଉପରେ ଶୁଭ୍ର ଶଯ୍ୟାରେ ପୂର୍ବମୁଖୀ ହୋଇ ଉପବେଶନ କଲେ। ଉକ୍ତ ଖଟରେ ବି ପୁତ୍ରକନ୍ୟାଦି ସହ ବସିଲେ ପୂଜନୀୟା ବଡ଼ଦି। ପାଖ ଖଟରେ ବସିଲେ ପୂଜନୀୟ ପିଣ୍ଟୁଦା। ଏହାପରେ ପ୍ରଣାମ ନିବେଦନ-ପର୍ବ ଶେଷ ହେଲାରୁ ଶ୍ରୀଶ୍ରୀପିତୃଦେବ ନିର୍ଦ୍ଦେଶ ଦେଲେ ଆବୃତ୍ତି କରି ଶୁଣାଇବାକୁ। ଟିଟି-ମା ଓ ଅନୁଦ୍ୟୁତିବାବୁ ଆବୃତ୍ତି କରିଲେ। ପରେ ସମବେତ କଣ୍ଠେ 'ତୋମାର ରଙ୍ଗେ ହୃଦୟ ଆମାର ରାଙ୍ଗା'–ଗୀତ ହେଲା। ସେତେବେଳକୁ ଗ୍ରାମର ଆବାଳ-ବୃଦ୍ଧ-ବନିତା ସମସ୍ତେ ଆସି ଉପସ୍ଥିତ ଶିବିର ପ୍ରାଙ୍ଗଣରେ। ଶ୍ରୀଶ୍ରୀପିତୃଦେବ ତାଙ୍କ ପରିବାରର ସମସ୍ତଙ୍କୁ ଉପସ୍ଥିତ କେତେକ ବିଶେଷ ଲୋକଙ୍କ ସହ ପରିଚୟ କରାଇଦେଲେ।

ଏହାପରେ ଗ୍ରାମର ଜନୈକ ମଧ୍ୟବୟସ୍କ ଭଦ୍ରଲୋକ ଅଜିତ୍ ସେନ୍ ଶ୍ରୀଶ୍ରୀପିତୃଦେବଙ୍କୁ ଅନୁରୋଧ କଲେ–ଆଜ୍ଞା, ଯଦି ଦୟାକରି ଥରେ ଆମ ଗ୍ରାମ ଭିତରକୁ ଯା'ନ୍ତେ... ଆମର ଲାଇବ୍ରେରୀ ଅଛି–ସେଠାରେ ଯଦି ପଦାର୍ପଣ କରନ୍ତେ...। ଆମେ ପ୍ରଶ୍ନ କଲୁ–ତାଙ୍କୁ ନେଇଯିବାକୁ ଚାହାନ୍ତି କାହିଁକି ? ଉତ୍ତରରେ ସେ କହିଲେ–ସିଦ୍ଧପୁରୁଷ ଯେତେବେଳେ ଗ୍ରାମକୁ ଆସିଛନ୍ତି, ସେତେବେଳେ ତାଙ୍କର ପଦଧୂଳି ଗ୍ରାମ ଭିତରେ ପଡ଼ିବ ନି, ତା' କଣ ହୁଏ ? ମହାପୁରୁଷଙ୍କର ଚରଣଧୂଳି ଆମେ ପାଇବୁ... ଏ ତ ଆମ୍ଭମାନଙ୍କର ପରମ ସୌଭାଗ୍ୟ। ଶ୍ରୀଶ୍ରୀପିତୃଦେବ ଭଦ୍ରଲୋକଟିର ଏକାନ୍ତ ଅନୁରୋଧ ଏଡ଼ାଇ ନ'ପାରି କହିଲେ–ଅଚ୍ଛା, ଚାଲ ଯିବା।

ବର୍ଦ୍ଧମାନ ସ୍ୱସ୍ତି-ଶିବିରର ପୃଷ୍ଠପୋଷକ ଆନନ୍ଦ ଭାଇ (ଘୋଷ) ଜଣାଇଲେ–ଆଜ୍ଞା, ମୁଁ ସ୍ୱପ୍ନ ଦେଖିଛି ଆପଣ ଆମ ଘରେ ବସି ପ୍ରାର୍ଥନା କରୁଛନ୍ତି।

ଶ୍ରୀଶ୍ରୀପିତୃଦେବ–ଏଇ ତ ତୋର ଘରେ ବସିଅଛି। (ଟିକିଏ ରହି) ମୋତେ କିଛି

ସୋରିଷଫୁଲ ଯୋଗାଡ଼ କରି ଦେଇପାରୁ—ଠାକୁର-ଭୋଗ ଦେବି ; ଠାକୁର ଖୁବ୍ ପସନ୍ଦ କରୁଥିଲେ। ଆଜି, ଖାଇବା ଆଗରୁ ଦେ। କାହା କ୍ଷେତରୁ ନ କହି ଛିଣ୍ଡାଇବୁନି। ଯଦି ନେବାକୁ ହୁଏ, ତେବେ କ୍ଷେତର ମାଲିକକୁ କହି ନେ। ହାତଦେଇ ଦେଖାଇ କହିଲେ, ଏଇ ଏତେଖଣ୍ଡେ ହେଲେ ହିଁ ଚଳିବ।

ଆନନ୍ଦଭାଇ—ଏହିକ୍ଷଣି ଯାଉଛି।

—ହଁ ଯା।

ଶିବିରରୁ ବାହାରି (୧୦ଟା ୪ ମିନିଟ) ଗ୍ରାମ ଭିତରେ ଅବସ୍ଥିତ 'କାମିନୀ ପାଠାଗାର' ସେ ପରିଦର୍ଶନ କରନ୍ତି।

ଏହାପରେ ଅଜିତ୍ ସେନ୍ ଭାଇଙ୍କ ଘରକୁ ଗଲେ। ଅଜିତ୍ ସେନ୍ କୌଣସି ପ୍ରକାର ପୂର୍ବ ପରିକଳ୍ପନା କରି ତାଙ୍କୁ ନେଇଯାଇ ନାହାଁନ୍ତି। ତେଣୁ ବସିବାର କୌଣସି ବ୍ୟବସ୍ଥା କରିପାରି ନାହାଁନ୍ତି। ଶ୍ରୀଶ୍ରୀପିତୃଦେବ ଅଗଣାରେ ଠିଆହୋଇ କିଛି କଥା କହି ଫେରିଲେ। ପରେ ପରେ ଜଣ ଜଣ କରି ଗ୍ରାମର ଅରୁଣ ସେନ୍, ରାମଶଙ୍କର ଚୌଧୁରୀ, ହେମକେଶ ଚୌଧୁରୀ, ୰ବିଶ୍ୱନାଥ ଚୌଧୁରୀ, ପଞ୍ଚାନନ ଚୌଧୁରୀ (ସ୍ୱସ୍ତିବାହିନୀର କର୍ମୀ ଜ୍ୟୋତିର୍ମୟ ଚୌଧୁରୀଙ୍କ ପିତା) ଓ କାଳୀପଦ ପ୍ରାମାଣିକଙ୍କ ଘର ସବୁ ବୁଲିଲେ। ପଞ୍ଚାନନ ଚୌଧୁରୀଙ୍କ ଘରେ ଆସି ଦେଖନ୍ତି ବଡ଼-ବଡ଼ ଚୁଲୀରେ ରୋଷେଇ ବସିଛି (ଆନନ୍ଦବଜାର ଉଦ୍ଦେଶ୍ୟରେ)। ଘରର ଅଗଣାଟି ବେଶ୍ ପରିଷ୍କାର୍ ଚିତା ଦେଇ ଅଙ୍କିତ। ଜ୍ୟୋତି ଭାଇଙ୍କ ବାପା ଦୁଇଟି ମୋଡ଼ିଆ ଆଗେଇ (କମ୍ବଳ ଆସନ ପକାଇ) ଦେଲେ। ଶ୍ରୀଶ୍ରୀପିତୃଦେବ ଗୋଟିଏ ମୋଡ଼ିଆରେ ବସିଲେ। ଏହା ପୂର୍ବେ ଅନ୍ୟ ସମସ୍ତଙ୍କ ଘରେ ସେ ଠିଆ ହୋଇ ରହିଥିଲେ। ବୃଦ୍ଧ ପଞ୍ଚାନନ ଚୌଧୁରୀ ଭୂଲୁଣ୍ଠିତ ହୋଇ ତାଙ୍କ ଶ୍ରୀଚରଣରେ ପ୍ରଣାମ ନିବେଦନ କଲେ—ଆନନ୍ଦାଶ୍ରୁ ବହିବାକୁ ଲାଗିଲା। ଭକ୍ତିମତୀ ମା ଓ ସ୍ତ୍ରୀ ମଧ୍ୟ ପ୍ରଣାମ କରି ନିକଟରେ ଠିଆ ହୋଇଛନ୍ତି—ସମସ୍ତଙ୍କ ମୁହଁରେ ଏକ ଦିବ୍ୟଭାବ ଜଳଜଳ କରୁଛି। ଶ୍ରୀଶ୍ରୀପିତୃଦେବ ଘରୁ ବାହାରି ଆସି ପଚାରିଲେ—ଏଇଟା କାହାର ଘର ?

ଭବାନୀ ଭାଇ—ଆଜ୍ଞା, ଏ ତ ଜ୍ୟୋତିଭାଇଙ୍କ ଘର—ଆପଣ ବାହାରି ଆସିଲେ।

ଶ୍ରୀଶ୍ରୀପିତୃଦେବ—ସତେ ? ଆଗରୁ କହିନୁ ତ ? ଏହା କହି ସେ ଦରଜା ପାର ହୋଇ ପୁଣି ଘରର ଅଗଣାକୁ ଆସିଲେ। ଏଥର ପଞ୍ଚାନନ ଚୌଧୁରୀଙ୍କୁ ଜଡ଼ାଇ ଧରି ସେ ପୁନଃ ପୁନଃ ଚୁମ୍ବନ କରିବାକୁ ଲାଗିଲେ। ଏଇ ସ୍ୱପ୍ନାତୀତ କରୁଣାରେ ଅଭିଭୂତ ହୋଇ ପଞ୍ଚାନନ ଚୌଧୁରୀଙ୍କର ସମସ୍ତ ଅଶ୍ରୁ ବନ୍ଧଭାଙ୍ଗି ସ୍ରୋତସ୍ୱିନୀ ଧାରାରେ ବହିବାକୁ ଲାଗିଲା। ଶ୍ରୀଶ୍ରୀପିତୃଦେବଙ୍କ ଶ୍ରୀଚରଣ ଦୁଇଟି ସେ ବକ୍ଷରେ ଜଡ଼ାଇ ଧରିଲେ। ସେ ଏକ ଅପାର୍ଥିବ ଦୃଶ୍ୟ ! ସମସ୍ତଙ୍କ ଅଗଣା ଭର୍ତ୍ତି ଭିଡ଼। ତାଙ୍କ ପ୍ରଣାମୀର ସବୁଟଙ୍କା ସେ ଜ୍ୟୋତି ଭାଇଙ୍କ ସ୍ତ୍ରୀଙ୍କ ହାତରେ ଗୁଞ୍ଜିଦେଇ କହିଲେ—ଏସବୁ ରଖ ; ଠାକୁରଙ୍କ କାମରେ ଲଗାଇବ। ଏହାପରେ ଜ୍ୟୋତି ଭାଇଙ୍କ ବାପାକୁ ପଚାରିଲେ—ଜ୍ୟୋତି କେଉଁ ଘରେ ରହୁଥିଲା ?

ପଞ୍ଚାନନ ଚୌଧୁରୀ—ଆଜ୍ଞା, ଏଇ ଉପର (କୋଠା) ଘରେ ରହୁଥିଲା। ଘରବାଡ଼ିର

ଚାରିଦିଗରେ ସେ ଆଖି ବୁଲାଇନେଲେ । ଏଠାରୁ ବାହାରି ସେ ଶିବିର ଅଭିମୁଖରେ ଚାଲିବାକୁ ଲାଗିଲେ । ରାସ୍ତାରେ ଜଣକର ଘର ଲକ୍ଷ୍ୟ କରି ପଚାରିଲେ—ଏଇଟା କା'ର ଘର ?

ଜନୈକ ଭାଇ—କାଳୀପଦ ପ୍ରାମାଣିକଙ୍କ ଘର ।

ଶ୍ରୀଶ୍ରୀପିତୃଦେବ—(ଟିକିଏ ରହି)—ଚାଲ, ଦେଖି ଆସିବା ।

କାଳୀପଦ ପ୍ରାମାଣିକ ଉକ୍ତ ଗ୍ରାମର ଜଣେ ଅତି ସାଧାରଣ ଲୋକ । ଗୋଟିଏ ନଡ଼ାଛପର କୁଡ଼ିଆ ଘରେ ତା'ର ବାସ । ଶ୍ରୀଶ୍ରୀପିତୃଦେବ ଦରଜା ପାଖହୋଇ ଘରର ଅଗଣାରୁ ଘରଟି ଦେଖି ଫେରି ଆସିଲେ । ସମବେତ ଜନତାର ପଦଧୂଳି ଗ୍ରାମର ମାଟିରାସ୍ତାରେ ଉଡ଼ି ସମସ୍ତଙ୍କ ନାକ ଆଖିରେ ପ୍ରବେଶ କରୁଛି । ତାଙ୍କର କିନ୍ତୁ ସେ ଦିଗରେ ଏତେଟିକିଏ ବି ବିକାର ନାହିଁ । ସେହି ଏକଭାବରେ ଆଗେଇ ଚାଲିଛନ୍ତି ।

ଶିବିରକୁ ଫେରିଲେ ୯ଟା ୪୪ ମି: ରେ । ସେତେବେଳକୁ ଶିବିର ଗୃହ ଓ ପ୍ରାଙ୍ଗଣ ସବୁକିଛି ସାଜସଜ୍ଜା ଯଥାଯଥ ଶେଷ ହୋଇ ଯାଇଥାଏ । ଶିବିର ଅଙ୍ଗନରେ ଚାନ୍ଦୁଆ ଟଙ୍ଗାଇ ଶ୍ରୀଶ୍ରୀଠାକୁର, ଶ୍ରୀଶ୍ରୀବଡ଼ମା ଓ ଶ୍ରୀଶ୍ରୀପିତୃଦେବଙ୍କ ପ୍ରତିକୃତି ସୁନ୍ଦର-ଭାବେ ସଜା ହୋଇଛି । ସେ ସେ ଦିଗରେ ନ ଯାଇ ପୁରୁଣା ଶିବିରଘର ଆଡ଼େ ଦେଖାଇ ପଚାରିଲେ—ଏଇଟା କୋଉ ଘର ?

ଜ୍ୟୋତି ଭାଇ (ଚୌଧୁରୀ)—ଆଜ୍ଞା, ଏଇଟା ହିଁ ପୁରୁଣା ଘର ।

ଶ୍ରୀଶ୍ରୀପିତୃଦେବ— ଏଥରକ ପୁରୁଣାଘର ଭିତରେ ଯାଇ ଶ୍ରୀଶ୍ରୀଠାକୁର ପ୍ରଣାମ କରିଲେ । ତାପରେ ବାହାରେ ଆସି ଟିକିଏ ଶିବିରର ଚାରିଦିଗ ଦେଖିନେଲେ । ୧୦/୪୪ ମି: ରେ ଶିବିରରୁ ପ୍ରତ୍ୟାବର୍ତ୍ତନ କଲେ । ପାଲସିଟ ଗ୍ରାମ ପର୍ଯ୍ୟନ୍ତ ଚାଲି ଚାଲି ଆସି, ସେଠାରୁ ଗାଡ଼ିରେ ଉଠିଲେ । ବର୍ଦ୍ଧମାନ ଠାକୁର-ବାଡ଼ିରେ ଯେତେବେଳେ ପହଞ୍ଚିଲେ ସେତେବେଳକୁ ୧୧ଟା ପାର ହୋଇଯାଇଛି ।

ସେଦିନ ସନ୍ଧ୍ୟା ପରେ ବର୍ଦ୍ଧମାନ ଠାକୁର-ବାଡ଼ିରେ ଶ୍ରୀଶ୍ରୀପିତୃଦେବଙ୍କ ସାନ୍ନିଧ୍ୟରେ ଉପସ୍ଥିତ ହରିପଦ ଭାଇ (କର), ନୀଲୁ ଭାଇ (ଜୋୟାରଦାର) ଓ ଭବାନୀ ଭାଇ (ରାୟ) । ହରିପଦ ଭାଇଙ୍କର କଲିକତାରେ ବ୍ୟବସାୟ । ଶ୍ରୀଶ୍ରୀପିତୃଦେବଙ୍କୁ ତାଙ୍କର ବ୍ୟବସାୟ ସଂକ୍ରାନ୍ତ ନାନା ଝାମେଲା ବିଷୟରେ ନିବେଦନ କଲେ । ଶ୍ରୀଶ୍ରୀପିତୃଦେବ ଉତ୍ତରରେ କହିଲେ—ସବୁଦିଗରେ ସତର୍କ ରହି କାମ କରିବାକୁ ହୁଏ । ତା' ନ ହେଲେ କେଉଁ ଫାଙ୍କରେ ଯେ କ'ଣ ହୋଇଯିବ ବୁଝା ବି ଯିବନି ।

ହରିପଦ ଭାଇ ଶ୍ରୀଶ୍ରୀଠାକୁରଙ୍କର ଗୋଟିଏ ବାଣୀ ଆବୃତ୍ତି କରି କହିଲେ—ଆଜ୍ଞା ଏଇଥିପାଇଁ ହିଁ ଶ୍ରୀଶ୍ରୀଠାକୁର ଦୈବବଳ କଥା କହିଛନ୍ତି ।

ଶ୍ରୀଶ୍ରୀପିତୃଦେବ—ଏ ବାଣୀର ଅର୍ଥ ବୁଝିପାରିଛୁ ?

ହରିପଦ ଭାଇ ନିଜର ବୋଧ ଅନୁଯାୟୀ ବାଣୀଟିର ଅର୍ଥ କହିଲେ ।

ଶ୍ରୀଶ୍ରୀପିତୃଦେବ—ଦୈବ ଓ ପୁରୁଷକାର (ବାଣୀଟିର ମଧ୍ୟରେ ଏ ଦୁଇଟି ଶବ୍ଦ ଥିଲା) କାହାକୁ କହନ୍ତି ଜାଣିଛୁ ?

ହରିପଦ ଭାଇଙ୍କର ଉତ୍ତର ଠିକ୍ ହେଲାନି ଦେଖି ଶ୍ରୀଶ୍ରୀପିତୃଦେବ କହିଲେ—ଆମେ ତ ଭାରତୀୟ। ଆମେ ଜନ୍ମାନ୍ତରବାଦରେ ବିଶ୍ୱାସ କରୁ। ଆମେ ଯାହା ଯାହା କର୍ମ କରୁ ତାର ଫଳ ଆମକୁ ହିଁ ଭୋଗ କରିବାକୁ ହୁଏ। କର୍ମ ଭଲ ହେଲେ ତାର ଫଳଭୋଗ ମୁଁ କରେ, ଖରାପ ହେଲେ ବି ତା'ର ଫଳଭୋଗ ମୁଁ କରେ। ଏସବୁ ଭୋଗ ପୁଣି ଗୋଟିଏ ଜନ୍ମ ଭିତରେ ଶେଷ ହୋଇ ଯାଏନା। ସଦସତ୍ ଅନେକ କର୍ମର ଫଳ ପରଜନ୍ମରେ ବି ଭୋଗକରୁ। ଏଭଳି କର୍ମଫଳର ଯେ ଭୋଗ ତାକୁ କହନ୍ତି ପ୍ରାରବ୍ଧ। ଏଇଟା ହିଁ ଦୈବ। ଦୈବ ମାନେ ପୃଥକ୍ ଆଉ କିଛି ନୁହେଁ। ହୁଏତ ହଠାତ୍ କୌଣସି ଗୋଟାଏ ଭଲ ସୁଯୋଗ ଆସିଗଲା ; ମୁଁ ବୁଝି ପାରିଲିନି କିଭଳି ହେଲା, ଅଥଚ ହୋଇଗଲା—ଏଇଟା ହିଁ ଦୈବ। ଏଇ ଦୈବଫଳର ପଛରେ ଥିବା କର୍ମ ମୋର କରାଅଛି। ତେଣୁ ଏଭଳି ଘଟେ।

ଆଉ ପୁରୁଷକାର ହେଲା ଯା' ମୁଁ ଶତ ବାଧା-ବିପତ୍ତି ଭିତର ଦେଇ ପ୍ରତ୍ୟକ୍ଷ କରିଚାଲେ। ଏଭଳି କରିବା ହିଁ ପୁରୁଷକାର। ଭଲ ବି କରିପାରେ, ଖରାପ ବି କରିପାରେ। ଭଲ କଲେ ତାର ଫଳ ଭୋଗ କରିବି, ଆଉ ଖରାପ କଲେ ତାର ଫଳ ବି ଭୋଗ କରିବି। କଣ ବୁଝିପାରିଛୁ ?

ହରିପଦ ଭାଇ ମୁଣ୍ଡ ହଲାଇ ସମ୍ମତି ଜଣାଇଲାରୁ ସେ କହିଲେ—ଏଇ ଯେ ସତ୍‌ଦୀକ୍ଷା ଆମେ ପାଇଛୁ, ଏଇଟା ଦୈବ—ଆମର ପ୍ରାରବ୍ଧ। ପୁଣି, ତାଙ୍କ (ଇଷ୍ଟଙ୍କ) ପଥରେ ବାଧା-ବିପତ୍ତି ଭିତରେ ଆଗେଇ ଚାଲିବା ହେଲା ପୁରୁଷକାର। ଅନେକ ସାଧନା ଥିଲେ ତେବେଯାଇ ମଣିଷଜନ୍ମ ଲାଭହୁଏ। ତତୋଽଧିକ ସାଧନା ଥିଲେ ତେବେଯାଇ ସଦ୍‌ଗୁରୁ ଲାଭ ହୁଏ, ପୁରୁଷୋତ୍ତମଙ୍କର ଦୀକ୍ଷା ମିଳେ। ଯେଉଁମାନଙ୍କର ସାଧନା ତାଠାରୁ ବି ବେଶି ସେଇମାନେ ହିଁ କେବଳ ସଦ୍‌ଗୁରୁଙ୍କ ପଥରେ, ପୁରୁଷୋତ୍ତମଙ୍କ ପଥରେ ଚାଲି ପାରନ୍ତି।

(ଟିକିଏ ରହି) ପୁରୁଷକାର ଦ୍ୱାରା ସବୁ କରିବା ସମ୍ଭବ ହୋଇଥାଏ ଏକମାତ୍ର ଈଶ୍ୱର-ଲାଭ ଛଡ଼ା। ଈଶ୍ୱରଲାଭ ହୁଏ କେବଳ ତାଙ୍କରି ଦୟାରେ। ଏଥିଲାଗି ସବୁବେଳେ ତାଙ୍କ ପ୍ରତୀକ୍ଷାରେ ରହିବାକୁ ହୁଏ, ହୃଦୟର ଦରଜା ଖୋଲି ରଖିବାକୁ ହୁଏ। ଆମେ ଯେ ସାଧନ-ଭଜନ, ନାମ-ଧ୍ୟାନ କରୁ ତା' କେବଳ ଏଇ ହୃଦୟ-ଦରଜା ଖୋଲା ରଖିବାପାଇଁ।

## ଶନିବାର, ଫାଲଗୁନ—୨, ୧୩୮୧ ସାଲ (ଇଂ ୧୫/୨/୭୫)

ଗୌହାଟୀ ସତ୍‌ସଙ୍ଗ-ବିହାର। ବିସ୍ତୃତ ଆଶ୍ରମ ପ୍ରାଙ୍ଗଣ ଅଗଣିତ ଜନସମାବେଶରେ ପରିପୂର୍ଣ୍ଣ। ଶ୍ରୀଶ୍ରୀପିତୃଦେବଙ୍କର ଦର୍ଶନ ମାନସରେ ଅଧୀର ଆଗ୍ରହରେ ଅପେକ୍ଷା କରୁଛନ୍ତି ଭକ୍ତଜନ-ମଣ୍ଡଳୀ। ଅଳ୍ପ ସମୟ ପରେ ହିଁ କର୍ମୀ-ବୈଠକ ଆରମ୍ଭ ହେବ।

ଅପରାହ୍ନ ୩ଟା ୩୦ ମିନିଟ୍। ଶ୍ରୀଶ୍ରୀପିତୃଦେବ ମନ୍ଦିର-ପ୍ରାଙ୍ଗଣର ଉତ୍ତର-ପୂର୍ବ କୋଣରେ ନବନିର୍ମିତ ଚାଳଘରେ ଆସି ବସିଲେ। ଶତାଧିକ କର୍ମୀ—ଋତ୍ୱିକ୍, ଅଧ୍ୱର୍ଯ୍ୟୁ, ଯାଜକ ଓ ଅନ୍ୟମାନେ ତାଙ୍କୁ ଘେରି ଚାରିପଟରେ ବସିଲେ। ଘରଟିର ସାମ୍ନାରେ ସାମୟିକଭାବେ ନିର୍ମିତ ନାତିଦୀର୍ଘ ପ୍ୟାଣ୍ଡେଲ ଓ ତାର ଚତୁର୍ଦ୍ଦିଗସ୍ଥ ଖୋଲା ସ୍ଥାନ ଭରି ଅଗଣିତ ଭକ୍ତ ଦର୍ଶନ

କରୁଛନ୍ତି ଶ୍ରୀଶ୍ରୀପିତୃଦେବଙ୍କୁ।

ସାମ୍ନା ଧାଡ଼ିରେ ବସିଥିବା ଜଣେକ ଭାଇଙ୍କୁ ଶ୍ରୀଶ୍ରୀପିତୃଦେବ ପଚାରିଲେ– ତୁମର ସେଆଡ଼େ କାମ କିଭଳି ହେଉଛି ?

ଉକ୍ତ ଭାଇ–ଆଜ୍ଞା, ଭଲ ହିଁ ହେଉଛି।

ଶ୍ରୀଶ୍ରୀପିତୃଦେବ–ଅନେକ ସ୍ଥାନରେ କାମ ଭଲ ହେଉଛି। ନଦୀୟା, ମୁର୍ଶିଦାବାଦ, ମାଲଦହରେ କାମ କମ୍ ହେଉଥିଲା। ବର୍ତ୍ତମାନ ବେଶ୍ ବଢ଼ିଛି। ନିଜେ ଠିକ୍ ମୁତାବକ କାମ ନ କଲେ ଅନ୍ୟକୁ ଉଦ୍‌ବୁଦ୍ଧ କରି ହୁଏ ନା। କର୍ମୀମାନେ ଯଦି ନିଷ୍ଠା ସହକାରେ ଯଜନ, ଯାଜନ-ଇଷ୍ଟଭୃତିପରାୟଣ ହୋଇ ଚାଲନ୍ତି, ତା'ହେଲେ କାମ ଭଲ ହୁଏ।

ଦେଶର ସର୍ବତ୍ର ଅଧିବେଶନ-କେନ୍ଦ୍ର ନିର୍ମାଣ ସମ୍ପର୍କରେ କହିଲେ–କୌଣସି ଜିଲ୍ଲାରେ ଯେଉଁସବୁ ସ୍ଥାନରେ ସତ୍‌ସଙ୍ଗୀ ସଂଖ୍ୟା ବେଶି, ଅନୁରାଗୀଙ୍କ ସଂଖ୍ୟା ବେଶି ଅଛି, communication (ଯାତାୟାତ) ର ସୁବିଧା ଅଛି, ସେସବୁ ସ୍ଥାନରେ ମନ୍ଦିର ହେବା ଭଲ। ଆଉ ମନ୍ଦିରକୁ କେନ୍ଦ୍ରକରି ତା'ର ପାଖାପାଖି ସୈନ୍ୟାବାସ ଭଳି ଅନେକ ଗୁଡ଼ିଏ ଅଧିବେଶନ-କେନ୍ଦ୍ର ରହିପାରେ। ମନ୍ଦିର କର, ଆଉ ଅଧିବେଶନ କେନ୍ଦ୍ର କର, ପ୍ରକୃତପକ୍ଷେ ପ୍ରତ୍ୟେକଙ୍କୁ ଇଷ୍ଟପ୍ରାଣ କରି ତୋଳିବାକୁ ହେବ। ସେଥିପାଇଁ ନିଜକୁ ତତୋଽଧିକ ଇଷ୍ଟପ୍ରାଣ ହୋଇ ଉଠିବାକୁ ପଡ଼ିବ।

ଆଉ ଗୋଟିଏ କଥା–ଏଇ ଯେ, ମନ୍ଦିର ହେଲା, ଏଠାରେ ଶ୍ରୀବିଗ୍ରହ ପ୍ରତିଷ୍ଠିତ ହେଲେ। ବର୍ତ୍ତମାନ ଚାରିବେଳା ଠାକୁର-ପୂଜା ଓ ଭୋଗର ବ୍ୟବସ୍ଥା ଲାଗି ଯେଉଁମାନେ ପୁରୋହିତ ରହିବେ ବା ଯେଉଁମାନେ ମନ୍ଦିରର ତଦାରଖ କରିବେ, ସେମାନଙ୍କର maintenance (ଭରଣ-ପୋଷଣ) ପାଇଁ ପ୍ରତ୍ୟେକେ ଯଦି ଇଷ୍ଟଭୃତି ସଙ୍ଗରେ କିଛି ନା କିଛି ଅର୍ଘ୍ୟ କେନ୍ଦ୍ର ସତ୍‌ସଙ୍ଗକୁ ପଠାନ୍ତି, ତା'ହେଲେ କେନ୍ଦ୍ର ସତ୍‌ସଙ୍ଗ (ଦେଓଘରସ୍ଥ) ପୁଣି ତା ଏଠାକୁ ପଠାଇ ଦେଇପାରେ। ଯେଉଁଠି ମନ୍ଦିର ହେଉନା କାହିଁକି, ତାର maintenance ର ବ୍ୟବସ୍ଥା ମୂଳ centre (କେନ୍ଦ୍ର ସତ୍‌ସଙ୍ଗ, ଦେଓଘର)ରୁ ହିଁ ହେବା ପ୍ରୟୋଜନ। ତା ନ ହେଲେ–

ଶ୍ରଦ୍ଧେୟ ପ୍ରଫୁଲ୍ଲଦା (ଦାସ)–ପାରସ୍ପରିକ cohesion (ସୁସଙ୍ଗତି) ରହିବନି।

ଶ୍ରୀଶ୍ରୀପିତୃଦେବ–ସବୁକିଛି ସହିତ ସଙ୍ଗତି ରହେ ନା। ତା' ଛଡ଼ା, ମନ୍ଦିର ପ୍ରତି ଆକର୍ଷଣ ବି ଜାଗେ ନା। (ଟିକିଏ ରହି) ଏ ତ ଗଲା ଗୋଟିଏ ଦିଗର କଥା। ଆଉ ଗୋଟିଏ କଥା ହେଲା, daily paper (ଦୈନିକ ସମ୍ବାଦପତ୍ର)ର କଥା। ଠାକୁର ଅନେକଦିନ ଆଗେ ଦୈନିକ ପତ୍ରିକାର କଥା କହିଥିଲେ। ଏ ବ୍ୟାପାରରେ କେହି-କେହି ଟଙ୍କା-ପଇସା ମଧ୍ୟ ସଂଗ୍ରହ କରିଥିଲେ ବୋଲି ଶୁଣିବାକୁ ପାଏ ; ଯଦିଓ ଫିଲାନଥ୍ରପି ଅଫିସ (ଦେଓଘର) ରେ ଗୋଟିଏ ବି ପଇସା ଜମା ପଡ଼ିନି। ସେ ଯାହାହେଉ, ଆମେ ବର୍ତ୍ତମାନ ଛୋଟମୋଟ ଆକାରରେ start (ଆରମ୍ଭ) କରି ଅଗ୍ରସର ହେବୁ। ପରେ ଆହୁରି ବଢ଼ିବ। ଆମେ ଜାଣୁ, ଠାକୁରଙ୍କର ଦୟା ରହିଛି। ଆରମ୍ଭ କରିଲେ ହିଁ ହେଲା।

ପ୍ରଫୁଲ୍ଲଦା–ଆମେ କିଭଳି ତାଙ୍କର ଇଚ୍ଛା ପରିପୂରଣରେ ଆହୁରି ଅଧିକ ଦ୍ରୁତ ହୋଇପାରିବୁ ?

ଶ୍ରୀଶ୍ରୀପିତୃଦେବ—ସବୁଠାରୁ ବଡ଼ କଥା ହେଉଛି, ଆମ ନିଜକୁ ତିଆରି କରିବା । ଠାକୁର କହିଛନ୍ତି—

''ଉଷା-ନିଶାରେ ମନ୍ତ୍ରସାଧନ
ଚଲାବୁଲାରେ ଜପ,
ଯଥାସମୟେ ଇଷ୍ଟ-ନିଦେଶ
ମୂର୍ତ୍ତ କରା ହିଁ ତପ ।''

ଏହି ତପସ୍ୟା ଆମ ଜୀବନରେ ଦିନକ ପାଇଁ ବି ବାଦ୍ ଦେଲେ ଚଳିବ ନାହିଁ । ଆମକୁ ଠାକୁରଙ୍କର ଏଇ ବାଣୀକୁ ଚରିତ୍ରଗତ କରିନେବାକୁ ହେବ । ଏହା କରିବାକୁ ହେବ ତାଙ୍କପ୍ରତି ସ୍ୱାଭାବିକ ଭଲପାଇବାର ଆକର୍ଷଣରେ । ଧମକ ଦେଇ ବା ଆଇନ କରି କାହାକୁଦେଇ ଏସବୁ କରାଯିବନି ।

ଆଜି ଦେଶର ଯେଉଁ ପରିସ୍ଥିତି ହୋଇଛି,—ଶିକ୍ଷାର ଦୁରବସ୍ଥା, କେତେ ଲୋକ କ୍ଷୁଧାରେ ଅନ୍ନ ପାଉ ନାହାଁନ୍ତି, ପରିଧାନର ବସ୍ତ୍ର ପାଉ ନାହାଁନ୍ତି । ଏଇ ତ ପ୍ରକୃଷ୍ଟ ସମୟ— ତାଙ୍କର ଦୟାର କଥା, ତାଙ୍କର ମହିମାର କଥା ପ୍ରତିଟି ଜନପଦରେ ପ୍ରତି ଘରେ-ଘରେ ପହୁଞ୍ଚାଇ ଦେବାର । ଆତ୍ମସ୍ୱାର୍ଥର କଥା ଭୁଲିଯାଇ ତାଙ୍କର କଥା ପ୍ରସାରିତ କରିଦେବାକୁ ହେବ । ମୁଁ ଯା' କହୁଛି କର୍ମୀମାନେ ତା ଅବଶ୍ୟ ଜାଣନ୍ତି । ତେବେ ଯାହା ବି କରନା କାହିଁକି—ସାଧନ-ଭଜନ କରିବାକୁ ହିଁ ପଡ଼ିବ ।

ଶ୍ରୀଶ୍ରୀପିତୃଦେବ ଏଥରକ କୁମୁଦ ଭାଇ (ଦେବ, ଶିଲଚର)ଙ୍କୁ ପଚାରିଲେ—କୁମୁଦର ଜିଲ୍ଲାରେ (କାଛାଡ଼) କାମ କିପରି ହେଉଛି ?

କୁମୁଦ ଭାଇ—ଆଜ୍ଞା, ଖୁବ୍ ଭଲ ହେଉଛି ।

ଦୀନଦା (ଶର୍ମ୍ମା, କେନ୍ଦ୍ର-ସତ୍‌ସଙ୍ଗ, ଦେଓଘର)—ଗତ କାଲି ଏଠାରେ ଅନେକ ଦୀକ୍ଷା ହୋଇଛି ।

ଶ୍ରୀଶ୍ରୀପିତୃଦେବ—ହଁ ! ସାରାଦିନ ଧରି ଦୀକ୍ଷା ହୋଇଛି । ଆଜି ବି ତ ଅନେକ ଦୀକ୍ଷା ହୋଇଛି ।

ପାଟଗାଁର ଉମାକାନ୍ତ ନାର୍ଜାରୀ ଭାଇଙ୍କୁ ପଚାରିଲେ—ତୁମର ସେଆଡ଼େ କେମିତି କାମ ହେଉଛି ?

ଉମା ଭାଇ—ଆଜ୍ଞା, ମନ୍ଦ ହେଉନି ।

ଶ୍ରୀଶ୍ରୀପିତୃଦେବ—ଖୁବ୍ ଭଲ । ଆହୁରି ଜୋରରେ ଲଗାଇଦିଅ । ଦୀକ୍ଷା କାମ ଯେତେ ବଢ଼ିବ, ଲୋକଙ୍କର କଲ୍ୟାଣ ସେତେ ବେଶି ହେବ । ଦେଖୁ ଦେଖୁ ଦେଶର ଚେହେରା ପାଲଟିଯିବ ।

ଯେଉଁଠି ଯେଉଁଠି ଜମି ଅଛି, ସେଠାରେ ହିଁ ଅଧିବେଶନ କେନ୍ଦ୍ର କରି ପକାଇବା ଭଲ । ସଭିଏଁ ଯେପରି ସମବେତ ହୋଇ ପ୍ରାର୍ଥନା କରିପାରନ୍ତି, ଇଷ୍ଟ-ବିଷୟକ ଆଲୋଚନା କରିପାରନ୍ତି ; କେନ୍ଦ୍ର ହିଁ ହେଉଛି ତା'ର ଉପଯୁକ୍ତ ସ୍ଥାନ ।

ପ୍ରଫୁଲ୍ଲଦା—ଖ୍ରୀଷ୍ଟିୟାନ ମିଶନାରୀମାନେ ଚର୍ଚ୍ଚକୁ କହନ୍ତି, 'House of God.'

ଶ୍ରୀଶ୍ରୀପିତୃଦେବ—ଠିକ୍ ତ। 'House of God' ତ। ଆମର ଅଧିବେଶନ-କେନ୍ଦ୍ର ବି ସେଇଆ।

ପ୍ରଫୁଲ୍ଲଦା—ଆମେ ବରାବର ଶୁଣିଆସିଛୁ ଯେ, ଆସାମର କର୍ମୀମାନଙ୍କ ମଧ୍ୟରେ ଖୁବ୍ ପାରସ୍ପରିକ ସମ୍ପ୍ରୀତି ଅଛି ସଂହତି ଅଛି ; ସମସ୍ତେ ଏମାନଙ୍କର ସୁଖ୍ୟାତି କରନ୍ତି।

ଶ୍ରୀଶ୍ରୀପିତୃଦେବ (ମୃଦୁହସି)—ଏମାନଙ୍କ କାମ ଭିତର ଦେଇ ତାହା ହିଁ ପ୍ରକାଶ ପାଏ।

ଅଚ୍ୟୁତ ଭାଇ (ଦତ୍ତ, ଟଙ୍ଗଲା, ଆସାମ)—ଆମେ ଯେଉଁଠି ଜମି ରଖିଥିଲୁ, ସେଥିରେ କୌଣସି କାମ ଆରମ୍ଭ ହେଉନି, ବନ୍ୟାରେ ପାଣି ଉଠେ। ତେଣୁ ଜମିଟା ପଡ଼ିରହିଛି।

ଶ୍ରୀଶ୍ରୀପିତୃଦେବ—ଯେଉଁଠି କଲେ ଭଲହେବ, ସେଠି କରିବୁ। ପାଣି ଉଠିଲେ ତ ପଡ଼ିରହିବା କଥା। ଯେଉଁମାନେ district worker (ଜିଲ୍ଲା-କର୍ମୀ) ସେମାନଙ୍କର ଖିଆଲ ରଖିବାକୁ ହୁଏ—କେଉଁଠି କିଣା ଜମି ପଡ଼ିରହିଛି, କେଉଁଠି କାମ ଆରମ୍ଭ ହୋଇ ଅଗ୍ରସର ହୋଇ ପାରିନି—ଅସମାପ୍ତ ହୋଇ ପଡ଼ିରହିଛି। ପୁଣି ଏ ବି ଦେଖିବାକୁ ହୁଏ—ଯେଭଳି କାମଟା ସୁଷ୍ଠୁଭାବେ ସମାପ୍ତ ହୁଏ। ଚାଳଘର କରି ବି ଯଦି ସମାପ୍ତ ହୁଏ, ସେ ମଧ୍ୟ ଭଲ। ଚାଳଘର ଦେଖିବାକୁ ବେଶ୍ ସୁନ୍ଦର ହୁଏ, ସେଥିରେ ବି ପ୍ରାର୍ଥନା ହୋଇପାରେ। ତେଣୁ କହେ, ପ୍ରତ୍ୟେକ ଜିଲ୍ଲାରେ କର୍ମୀମାନଙ୍କୁ ନେଇ କର୍ମୀ-ବୈଠକ କରିବା ଦରକାର ପ୍ରତିମାସରେ ଥରେ କରି ; ନିତାନ୍ତ ନ ପାରିଲେ ବର୍ଷକୁ ଅନ୍ତତଃ ତିନିଥର କରିବା ପ୍ରୟୋଜନ। ତେବେ ମାସକୁ ଥରେ କର୍ମୀ-ବୈଠକ କଲେ ସବୁଠାରୁ ଭଲ ହୁଏ। କେଉଁଠି କେଉଁ ଜମି କି ଅବସ୍ଥାରେ ପଡ଼ିରହିଛି, ସେଠାରେ କ'ଣ କରାଯାଇପାରେ, ଅଧିବେଶନ-କେନ୍ଦ୍ର କରିବାକୁ ଗଲେ ସେଠାରେ ଆଉ କଣ ପ୍ରୟୋଜନ, ସେସବୁ କର୍ମୀ-ବୈଠକରେ ଠିକ୍ କରିନେବାକୁ ହୁଏ। ଆଉ ତଦନୁସାରେ କାମରେ ଅଗ୍ରସର ହେବାକୁ ପଡ଼େ।

ରେବତୀ ଭାଇ (ବିଶ୍ୱାସ, କେନ୍ଦ୍ର-ସତ୍‌ସଙ୍ଗ)—ମନ୍ଦିରର ଖର୍ଚ୍ଚ ବାବଦକୁ ଇଷ୍ଟଭୃତି ସଙ୍ଗରେ ସାଧ୍ୟମୁତାବିକ ଯେ ଅର୍ଘ୍ୟ ପଠାଇବା କଥା କହିଲେ, ତା' କଣ ପ୍ରତ୍ୟେକ ସତ୍‌ସଙ୍ଗୀ ପଠାଇବେ, ନା ଯେ-ଯେ ଇଲାକାରେ ମନ୍ଦିର ହୋଇଛି ସେଠାକାର ସତ୍‌ସଙ୍ଗୀମାନେ ପଠାଇବେ ?

ଶ୍ରୀଶ୍ରୀପିତୃଦେବ—ଏଇ ବୋଧଟା ପ୍ରତ୍ୟେକ ଗୁରୁଭାଇଙ୍କ ମୁଣ୍ଡରେ ଭୁକାଇ ଦେବାକୁ ହୁଏ। ଏଟା କର୍ମୀ-ବୈଠକ ବୋଲି ତୁମ୍ଭମାନଙ୍କ ପାଖରେ କହୁଛି। ଯା'ର ଇଚ୍ଛା ସେ ହିଁ ପଠାଇ ପାରିବ।

(ଟିକିଏ ରହି) ଗୋଟାଏ ବ୍ୟାପାର କଣ ଜାଣ ? ପରମପିତାଙ୍କ ସୃଷ୍ଟିଟା ହିଁ ଏପରି ଯେ, ସୃଷ୍ଟିର କ୍ଷୁଦ୍ରତମ ଅଂଶ ମଧ୍ୟରେ ଯେ ଶକ୍ତି ଅଛି ତାକୁ ଯଦି utilize (ସଦୁପଯୋଗ) କରିପାରେ, ତା' ହେଲେ କି କାଣ୍ଡ ନ ଘଟିପାରେ। ଗୋଟାଏ atom (ପରମାଣୁ) ମଧ୍ୟରେ ନିହିତ ଶକ୍ତିକୁ (atomic energy) ନିୟନ୍ତ୍ରିତ କରି, ଆୟତ୍ତ କରି ମଣିଷ ଆଜି କ'ଣ କରି ପାରୁଛି—ଦେଖ। ପ୍ରତ୍ୟେକ ମଣିଷ ଭିତରେ ଯେ ଶକ୍ତି ଅଛି, ତା' ହେଉଛି ଭଲପାଇବା। ଏଇ ଭଲପାଇବାର ଶକ୍ତି ଅପରିସୀମ। ଯଦି ଏଇ ଭଲପାଇବାକୁ କେନ୍ଦ୍ରକରି ଚାଲିପାରୁ,

ତାକୁ ବ୍ୟବହାର କରିପାରୁ ତା ହେଲେ କି କାଣ୍ଡ ନ ଘଟିପାରେ ! ପିଲାବେଳେ କବିତାରେ ପଢ଼ିଥିଲି—

'Little drops of water
Little grains of sand,
Make the mighty ocean
And the pleasant land.'

ଏହି ଭଲପାଇବାର ଆକର୍ଷଣରେ ଆମେ ଯଦି ଜଣେ ଜଣେ କରି ଲୋକ ବଢ଼ାଇ ପାରୁ, ପରସ୍ପର ପ୍ରୀତି-ନିବଦ୍ଧ ହୋଇଉଠୁ, ତାହେଲେ ତାର ସମବେତ ଶକ୍ତି କେତେ ହୋଇପାରେ !

ପାରସ୍ପରିକ ପ୍ରୀତି-ନିବଦ୍ଧ ନ ହେଲେ କିନ୍ତୁ ହେବନି । ଜଣେ ଏକକଭାବେ କେତେଟିକେ ବା କରିପାରେ ! ଖୁବ୍‌ଜୋର ଗୋଟାଏ ରାଜ୍ୟ ଦେଇପାରେ ! ପାରସ୍ପରିକ ପ୍ରୀତିନିବଦ୍ଧ ହେଲେ ସମବେତ ପ୍ରଚେଷ୍ଟାରେ ଆମେ ଅସମ୍ଭବକୁ ସମ୍ଭବ କରିପାରୁ । ଆଉ ସେତେବେଳେ ଯାଇ ବୁଝି ପାରିବୁ ଯେ, ଠାକୁର ଆମ ଭିତରେ କେତେ ଶକ୍ତି, କେତେ ସମ୍ପଦ ରଖି ଦେଇଛନ୍ତି !

ଗତକାଲି ଶ୍ରୀବିଗ୍ରହ-ପ୍ରତିଷ୍ଠା ଦିବସରେ ସମବେତ ଭକ୍ତଙ୍କ ସଂଖ୍ୟା ଆନୁମାନିକ ଏକଲକ୍ଷ ହୋଇଥିଲା । ପ୍ରାୟ ତିନିଶହ ରିଜର୍ଭ ମୋଟର-ବସ୍‌ରେ ଆସାମର ବିଭିନ୍ନ ପ୍ରାନ୍ତରୁ ଆବାଳ-ବୃଦ୍ଧ-ବନିତା ଏଠାରେ ସମବେତ ହୋଇଥିଲେ । ଏହାଛଡ଼ା ଟ୍ରେନ୍, ପ୍ଲେନ୍ ଓ ଷ୍ଟିମର ଯୋଗେ ଭାରତର ବିଭିନ୍ନ ରାଜ୍ୟରୁ ବହୁଲୋକ ଉତ୍ସବରେ ଯୋଗ ଦେଇଥିଲେ ।

ଏହି ବିପୁଳ ଜନସମାବେଶ କଥା ଉଲ୍ଲେଖ କରି ଶ୍ରୀଶ୍ରୀପିତୃଦେବ କହିଲେ— ଏଭଳି ଜନସମାବେଶ ଯଦି ପ୍ରତିଦିନ ହୁଏ, ତେବେ କି କାଣ୍ଡ ଘଟିବ କେ ଜାଣେ ! ଯେତେବେଳେ ଯେଉଁଠି ଜନସମାବେଶ ଦେଖେ, ସବୁ ବିଶାଳ ବୋଲି ମନେହୁଏ । ବେଗୁସରାଇ, ପୂର୍ଣ୍ଣିଆ, ଶିଲିଗୁଡ଼ି ପ୍ରଭୃତି ପ୍ରତ୍ୟେକ ଜାଗାରେ ତ ବିପୁଳ ଜନସମାବେଶ ହୋଇଥିଲା ।

ପ୍ରଫୁଲ୍ଲ ଭାଇ—ଆଶ୍ଚର୍ଯ୍ୟର କଥା, କାହାରି ମୁହଁରେ କୌଣସି ଅଭିଯୋଗ ନାହିଁ । କେତେ ଦୂରଦୂରାନ୍ତରରୁ କେତେ କଷ୍ଟ କରି ଆସିଛନ୍ତି । ଯେଉଁଠି ସେଠି ପଡ଼ି ରହିଛନ୍ତି ।

ଶ୍ରୀଶ୍ରୀପିତୃଦେବ—ଏଇ ଯେ କ୍ଳେଶସୁଖପ୍ରିୟତା ଏଇଟା ପରମପିତାଙ୍କର ଦାନ, ତାଙ୍କର ଆଶୀର୍ବାଦ । ମୁଁ ତ କଥା ପର୍ଯ୍ୟନ୍ତ କହି ପାରେ ନା । ଭାବ ବୁଝାଇ ଦେଇ ପାରେ ନା । ଅସମୀୟା ଭାଷା କିଛି-କିଛି ଜାଣେ, କିନ୍ତୁ utilize (ବ୍ୟବହାର) କରି ପାରେ ନା । ଓଡ଼ିଆ ମଧ୍ୟ କିଛି-କିଛି ଜାଣେ, କିନ୍ତୁ utilize କରିପାରେ ନା । ମୋର subject predicate ଠିକ୍ ରହେନା ! ମୋର କଥା ତ ତୁମ୍ଭମାନଙ୍କୁ ବୁଝିନେବାକୁ ପଡ଼େ ।

ପ୍ରଫୁଲ୍ଲ ଭାଇ—କଥାର ଫୁଲଝରୀ ଅନେକ ଶୁଣିଛି । କିନ୍ତୁ ପ୍ରାଣର ପରଶ ତ ସବୁ ଜାଗାରେ ପାଏ ନାହିଁ ।

ଶ୍ରୀଶ୍ରୀପିତୃଦେବ—ତୁମ୍ଭମାନଙ୍କର ପ୍ରାଣ ଅଛି ସେଥିଲାଗି । ଯେଉଁମାନେ ଏଠାକୁ ଆସିଛନ୍ତି ସେମାନେ ପ୍ରାଣ ନେଇ ହିଁ ଆସିଛନ୍ତି । ଭକ୍ତର ସଙ୍ଗ ମୋର ଖୁବ୍ ଭଲଲାଗେ । ଠାକୁରଙ୍କ ପ୍ରତି କାହାର ଆକର୍ଷଣ ଦେଖିଲେ ମୋର ପ୍ରାଣଟା ତାପାଇଁ ବିଗଳିତ ହୋଇଯାଏ ।

ତା' ପାଇଁ ସବୁକିଛି କରିପାରେ।

ନାମ-ଧ୍ୟାନ ପ୍ରସଙ୍ଗରେ ପୁନରାୟ କହିଲେ—ପ୍ରତିଦିନ ନାମ-ଧ୍ୟାନ କରିବା ପ୍ରୟୋଜନ। ରୋଗ-ବଇରାଗ ହେଉ, ବା ଅନ୍ୟ ଯାହାକିଛି ହେଉ ନା କାହିଁକି, ନାମ-ଧ୍ୟାନ ବାଦ୍‌ଦେବା ଠିକ୍ ନୁହେଁ। ଠାକୁର କହିଛନ୍ତି—ଉଦାହାଣ ଦେଲେ ଯଦି କାର ଉପକାର ହୁଏ, ତାହେଲେ ତା' କୁହ। ମୋର ଦୀକ୍ଷା ପରଠାରୁ ଦିନକ ପାଇଁ ବି ନାମ-ଧ୍ୟାନ ବାଦ୍ ଦେଇନି। ଅସୁସ୍ଥତା ହେଉ, ବା ଅନ୍ୟ ଯା' କିଛି ହେଉ, ଏଇଟା ବାଦ୍ ପଡ଼ିନି। ମୁଁ ଯାହା କରେ ତାହା ହିଁ କହୁଛି। ଅନେକେ କହନ୍ତି ଯେ, ଚାଲିବା-ବୁଲିବା ସମୟରେ ନାମ-ଧ୍ୟାନ କରିଲେ, ବସି ବସି ନାମ-ଧ୍ୟାନ ନ କଲେ ବି ଚଳେ। ମୁଁ କିନ୍ତୁ ସେ କଥା କୁହେନା। ମୋର ବ୍ୟକ୍ତିଗତ କଥା ହେଉଛି— ଚାଲିବା-ବୁଲିବାରେ ନାମ ତ ଅବଶ୍ୟ କରିବି। ତେବେ ଚାଲିବା-ବୁଲିବାରେ ଯେତେ ବି ନାମ-ଧ୍ୟାନ କରୁନା କାହିଁକି, ଆସନ କରି ଯଥା ସମୟରେ ନାମ-ଧ୍ୟାନ—ସେ ଯେତେ କମ୍ ସମୟ ହେଉ ନା କାହିଁକି—କରିବାକୁ ହିଁ ହେବ। ମଣିଷର ଯା' ଭଲଲାଗେ, ସେ କଣ ତା' ତ୍ୟାଗ କରିବ? ସେଥିପାଇଁ ଅଭ୍ୟାସ କରି ନାମ-ଧ୍ୟାନକୁ ଭଲ ଲଗାଇ ନେବାକୁ ହୁଏ। ଭଲ ଲାଗିଗଲେ, ସେତେବେଳେ ଆଉ ନାମ-ଧ୍ୟାନଠାରୁ ବିରତ ରହି ହେବନି। ସେଥିଲାଗି ସୁ-ଅଭ୍ୟାସ କେବେହେଲେ ତ୍ୟାଗ କରିବା ଉଚିତ ନୁହେଁ। ମୋର ଭାବ ଠିକ୍ ଠିକ୍ ବୁଝାଇ ପାରୁଛି ତ?

ରେବତୀ ଭାଇ (ବିଶ୍ୱାସ)—ଆଜ୍ଞା, ଖୁବ୍ clear (ସ୍ପଷ୍ଟ)।

ରେବତୀ ଭାଇଙ୍କ ଆଡ଼କୁ ଚାହିଁ ପଚାରିଲେ—କ'ଣ ଲେଖୁଛୁ?

ରେବତୀ ଭାଇ—ଆଜ୍ଞା...।

ପ୍ରଣବ ବରା ଭାଇ (ଆସାମ) କୁ କହିଲେ—Daily paper (ଦୈନିକ ସମ୍ବାଦପତ୍ର) ବାହାର କରିବାକୁ ଚେଷ୍ଟା କରୁଛି। ପ୍ରଥମେ ଅଳ୍ପ ଅଳ୍ପ କରି ବାହାର କରିବି। ତୁ କଣ କହୁଛୁ?

ପ୍ରଣବ ଭାଇ—ଆଜ୍ଞା, ଖୁବ୍ ଭଲ ହେବ।

ପ୍ରଫୁଲ୍ଲ ଭାଇ (ଦାସ, ଦେଓଘର)—Daily paper କରିବାକୁ ଗଲେ funds ତ ଦରକାର।

ଶ୍ରୀଶ୍ରୀପିତୃଦେବ—ଆମର ଯା' ଅଛି ତା' ସାଙ୍ଗକୁ ଆପାତତଃ ଗୋଟାଏ ଲାଇନୋ ମେସିନ୍ ଓ ଦୁଇଟା ପ୍ଲାଟ ମେସିନ୍ ହେଲେ ହିଁ ହେବ। ଆରମ୍ଭ କରିବା ସମୟରେ ମନେହୁଏ ଆମର କିଛି ବି ନାହିଁ। ତେବେ ଗୋଟାଏ ସମ୍ପଦ ଆମର ଅଛି—ତା' ହେଉଛି ଠାକୁରଙ୍କ ଦୟା। ଆଉ ସେଥିରେ ହିଁ ସବୁକିଛି ଯୋଗାଡ଼ ହୋଇଯାଏ।

ଦୀନେଶ ଭାଇ (ଦେବ, ତ୍ରିପୁରା)—ତ୍ରିପୁରାର 'ଆଶୀର୍ବାଦ' (ସାପ୍ତାହିକ) ପତ୍ରିକା ପାଇଁ ମେସିନ୍ ପ୍ରୟୋଜନ।

ଶ୍ରୀଶ୍ରୀପିତୃଦେବ—କରିନେବୁ। ତୁ କେତେବେଳେ ଆସିଲୁ, ଆଗୁରୁ ଦେଖିନି ତ?

ଦୀନେଶ ଭାଇ—ଆଜ୍ଞା, ଦୁଇଦିନ ହୋଇଗଲା।

ସ୍ଥାନୀୟ ଗୁରୁଭ୍ରାତା ଶ୍ରୀ ନାରାୟଣ ସରକାର ଭାଇ ସମସ୍ତଙ୍କ ମଝିରେ ବସି

ଶ୍ରୀଶ୍ରୀପିତୃଦେବଙ୍କ ବାଣୀ ଟେପ୍ ରେକର୍ଡ କରୁଥିଲେ। ତାଙ୍କ ହାତରେ ଛୋଟ ମାଇକ୍‌ଟି ଦେଖି ଶ୍ରୀଶ୍ରୀପିତୃଦେବ ପଚାରିଲେ—ସେଇଟା ପୁଣି କଣରେ ?

ନାରାୟଣ ଭାଇ—ଆଜ୍ଞା, ଆପଣଙ୍କ ବାଣୀ ଟେପ୍ ରେକର୍ଡ କରୁଛି।

ଶ୍ରୀଶ୍ରୀପିତୃଦେବ—(ମୃଦୁହସି) ମୋର ବାଣୀ କଣରେ ? ମୁଁ ତ କଥାଇ କହି ଜାଣେ ନା। ମୋ କଥା ପୁଣି record କରିବୁ କଣ ?

ନାରାୟଣ ଭାଇ—ଆପଣଙ୍କ କଥା ଆମ୍ଭମାନଙ୍କର ଖୁବ୍ ଭଲଲାଗେ।

ଶ୍ରୀଶ୍ରୀପିତୃଦେବ—ଠାକୁରଙ୍କ ପ୍ରତି ତୁମ୍ଭମାନଙ୍କର ଅନୁରାଗ, ତୁମ୍ଭମାନଙ୍କ ହୃଦୟର ପ୍ରସାରତା ହିଁ ମୋ କଥାକୁ ଭଲ ଲଗାଏ। ମୁଁ ତ କଥା କହି ହିଁ ପାରେନା।

ପ୍ରଫୁଲ୍ଲ ଭାଇ—ଏଠାକୁ ଆସି ରବୀନ୍ଦ୍ରର କଥା ମନେ ପଡୁଛି।

ଶ୍ରୀଶ୍ରୀପିତୃଦେବ—ମୋର ତ ସବୁବେଳେ ହିଁ ମନେ ପଡୁଛି। (ଟିକିଏ ଚୁପ୍‌କରି ରହିଲେ। ହଠାତ୍ ଆଖି ଦୁଇଟି ଛଳ-ଛଳ କରି ଉଠିଲା।) ମନ୍ଦିରରେ ଶ୍ରୀଶ୍ରୀଠାକୁରଙ୍କ ଶ୍ରୀବିଗ୍ରହ ଯେତେବେଳେ ଉନ୍ମୋଚନ କରେ, ସେତେବେଳେ ମନେହେଲା, କଣ ଏକେବାରେ ପ୍ରତ୍ୟକ୍ଷ କରିଲି—ରବୀନ୍ ମୋ ପାଖରେ ଅଛି। ମୁଁ ଯେଭଳି (ସାଷ୍ଟାଙ୍ଗ) ପ୍ରଣାମ କଲି, ସେ ବି ଠିକ୍ ସେପରିଭାବେ ପ୍ରଣାମ କଲା।

ଶ୍ରୀଶ୍ରୀପିତୃଦେବଙ୍କ ନୟନଯୁଗଳ ଅଶ୍ରୁଭାରାକ୍ରାନ୍ତ। କଣ୍ଠ ବାଷ୍ପାକୁଳ। ଧୀରେ-ଧୀରେ କହିବାକୁ ଲାଗିଲେ—ମୁଁ ଖୁବ୍ ବାସ୍ତବବାଦୀ ଲୋକ। ଯାହା ବାସ୍ତବ ନୁହେଁ, ତା କହେ ନା। କେହି ରବୀନ୍‌କୁ ଦେଖିଲା କି ନାହିଁ ଜାଣେନା, ତେବେ ମୁଁ ମୋର ଇନ୍ଦ୍ରିୟ ଦେଇ ବୋଧ କଲି ଯେ, ସେ ମୋ ପାଖରେ ଅଛି। ଯେମିତି କରି ମୁଁ ପ୍ରଣାମ କଲି, ସେ ବି ଠିକ୍ ସେମିତି କରି ପ୍ରଣାମ କଲା। ରବୀନ୍ ମୋର ଠାକୁରଙ୍କ ପାଖରେ ହିଁ ରହିଛି। ତାହା ହିଁ ଗୋଟାଏ ଆନନ୍ଦ। ଠାକୁର ପୁଣି ଯେତେବେଳେ ଆସିବେ ରବୀନ୍ ବି ପୁଣି ଆସିବ—ଠାକୁର ରବୀନ୍‌କୁ ନେଇ ଆସିବେ। ସେ ମୁକ୍ତ ଜୀବ—ଆମ୍ଭମାନଙ୍କପରି ବଦ୍ଧ ନୁହେଁ। (ଟିକିଏ ଉଦାର ଦୃଷ୍ଟିରେ ବାହାରଆଡ଼େ ଚାହିଁ) ଯେଉଁସବୁ ଭକ୍ତ ଏମାନଙ୍କର ଏହି ମନ୍ଦିର ନିର୍ମାଣ କଷ୍ଟେ ଯୋଗାଣ ଦେଉଛନ୍ତି—ସେମାନେ ଅପାର ମଙ୍ଗଳର ଅଧିକାରୀ। ଯେଉଁସବୁ ଭକ୍ତ ନିଷ୍ଠା ସହକାରେ ଠାକୁରଙ୍କର ସେବା କରି ଚାଲିଛନ୍ତି ସେମାନେ ବି ଅପାର ମଙ୍ଗଳର ଅଧିକାରୀ।

ଅନେକଙ୍କ ଆଖିରେ ଲୁହ। ସମସ୍ତ ପରିବେଶଟା ମୁହୂର୍ତ୍ତକ ମଧ୍ୟରେ ଭାବଗମ୍ଭୀର, ପରମ ପବିତ୍ର ହୋଇଗଲା। ପ୍ରସଙ୍ଗ ପରିବର୍ତ୍ତନ କରି ପ୍ରଫୁଲ୍ଲ ଭାଇ କହିଲେ—ଏଠାରେ ପ୍ରତ୍ୟେକ କର୍ମୀଙ୍କ ମୁହଁରେ ଶୁଣିଛି ଅଶୋକଦାଙ୍କ କଥା। ଯା ସଙ୍ଗରେ ଦେଖାହୁଏ, ସେଇ କୁହେ—ଏଠାରେ ଗୌହାଟୀର ଶ୍ରୀମନ୍ଦିରରେ ଯା' କିଛି ଦେଖୁଛନ୍ତି ସବୁ ହିଁ କରିଛନ୍ତି ପୂଜ୍ୟପାଦ ଅଶୋକଦା। ପ୍ରତିଟି କାର୍ଯ୍ୟ ପଛରେ ରହିଛି ତାଙ୍କର ସୁଦକ୍ଷ ପରିଚାଳନା।

ଶ୍ରୀଶ୍ରୀପିତୃଦେବ—ଲୋକ ତ ତାକୁ ଖୁବ୍ ଭଲପାଆନ୍ତି। ତା ଛଡ଼ା ସେ ପରିଶ୍ରମ ବି କରେ। ମାଟି କାଟିବାଠାରୁ ଆରମ୍ଭ କରି ସବୁ କାମ ନିଜ ହାତରେ କରିଛି।

ଜେନୈକ ଭାଇ—ନିଜେ ଟ୍ରକ୍ ପର୍ଯ୍ୟନ୍ତ ଚଳାଇଛନ୍ତି, ମାଟି କାଟି ଆଣି ଏଠାରେ

ପକାଇଛନ୍ତି। ମନ୍ଦିର-ପ୍ରାଙ୍ଗଣ ପୋତିଛନ୍ତି। ମନ୍ଦିରର ଏ ଜାଗାଟା ତ ଖାଲି ଥିଲା। ପ୍ରାୟ ୭/୮ ଫୁଟ ପାଣି।

ଶ୍ରୀଶ୍ରୀପିତୃଦେବଙ୍କର ପ୍ରସନ୍ନ ଦୃଷ୍ଟି ସବୁରି ଉପରେ। ମମତାସିକ୍ତ ନୟନଯୁଗଳରୁ ଅବିଶ୍ରାମ ଝରିପଡୁଛି ସ୍ନେହଧାରା ପ୍ରତ୍ୟେକଙ୍କ ଉପରେ। ଆଜିର ଏଇ ବିରାଟ ଜନସମାବେଶ, ଶ୍ରୀଶ୍ରୀଠାକୁରଙ୍କ ପ୍ରତି ପ୍ରତି-ପ୍ରତ୍ୟେକଙ୍କର ପ୍ରାଣଢଳା ଆକର୍ଷଣ ଓ ବ୍ୟାକୁଳତା ଦେଖି ବିମୁଗ୍ଧ ନ ହୋଇ ରହି ହୁଏ ନା। ଭକ୍ତ-ଜନସାଧାରଣଙ୍କର କ୍ଳେଶ-ସୁଖପ୍ରିୟତା ପ୍ରସଙ୍ଗରେ ଶ୍ରୀଶ୍ରୀପିତୃଦେବ ଏଥର ଗୋଟିଏ ଘଟଣା ଉଲ୍ଲେଖ କରିଲେ।

ଥରେ ବୈଶାଖ ନବବର୍ଷ ଉତ୍ସବ ସମୟରେ ଠାକୁର ବାହାରକୁ ବାହାରିଛନ୍ତି ସବୁ ବୁଲି ଦେଖିବାକୁ—ସେତେବେଳେ ସମୟ ପ୍ରାୟ ଦୁଇଟା। ସେଇ ପ୍ରଚଣ୍ଡ ଖରାର ତାପରେ ହଜାର ହଜାର ମା' ଓ ଭାଇମାନେ ଗଛତଳେ ଆଶ୍ରୟ ନେଇଛନ୍ତି। ଶ୍ରୀଶ୍ରୀଠାକୁରଙ୍କ ଶ୍ରୀମୁଖ ଦର୍ଶନର ଆକାଙ୍କ୍ଷା ଏତେ ପ୍ରବଳ ଯେ, ଶତ କଷ୍ଟ ମଧ୍ୟରେ ବି ସେମାନଙ୍କ ମୁଖମଣ୍ଡଳରେ କୌଣସି ପ୍ରକାର କଷ୍ଟର ଚିହ୍ନ ନାହିଁ। ବରଂ ପରମକୃତାର୍ଥର ଛାପ ସେଠାରେ ସ୍ପଷ୍ଟ। ଘରେ ଫେରିଆସି ଠାକୁର କହିଲେ—ମୋତେ ଏମାନେ ଏତେ ଭଲପାଆନ୍ତି! ଏମାନଙ୍କ ଭଲପାଇବାର ଆକର୍ଷଣ ଦେଖି ମୁଁ ଅଭିଭୂତ ହୋଇପଡ଼ିଛି।

ପରମଦୟାଲ ଶ୍ରୀଶ୍ରୀଠାକୁରଙ୍କ ସ୍ମୃତି-ଚାରଣରେ ଶ୍ରୀଶ୍ରୀପିତୃଦେବଙ୍କ ମୁଖମଣ୍ଡଳ ଦିବ୍ୟଭାବରେ ଉଦ୍ଭାସିତ ହୋଇ ଉଠିଲା। ସମସ୍ତେ ଗଭୀର ଆଗ୍ରହ ସହକାରେ ପରମ-ତୃପ୍ତିରେ ତାଙ୍କ ମୁଖରୁ ଇଷ୍ଟ-ପ୍ରସଙ୍ଗ ଉପଭୋଗ କରିବାକୁ ଲାଗିଲେ। ସାନ୍ଧ୍ୟ-ପ୍ରାର୍ଥନାର ସମୟ ହୋଇ ଆସିଲା। ସେ ଗାତ୍ରୋତ୍ଥାନ କଲେ। ସମବେତ ଭକ୍ତମଣ୍ଡଳୀ ବି ତାଙ୍କୁ ପ୍ରଣାମ ଜଣାଇ ଉଠିପଡ଼ିଲେ।

## ମଙ୍ଗଳବାର, ପହିଲା ବୈଶାଖ, ୧୩୮୨ (ଇଂ ୧୫/୪/୭୫)

ନବବର୍ଷର ନବୀନ ପ୍ରଭାତରେ ବେଦମାଙ୍ଗଳିକୀ ଓ ନଗରକୀର୍ତ୍ତନର ସୁରଲହରୀ ସହସ୍ର-ସହସ୍ର ଭକ୍ତ-ହୃଦୟ ଇଷ୍ଟଭାବୋଦ୍ଦୀପନାରେ ଉଦ୍‌ବେଳିତ କରିତୋଳିଲା। ଅତଃପର ବିନତି-ପ୍ରାର୍ଥନାରେ ଯୋଗ ଦେବାପାଇଁ ବହିରାଗତ ଓ ଆଶ୍ରମସ୍ଥିତ ମା' ଓ ଭାଇମାନେ ଦ୍ରୁତ ପଦଚାଳନା କଲେ ଠାକୁର୍-ବଙ୍ଗଳା ଅଭିମୁଖରେ। ଆଜି ଠାକୁର-ବଙ୍ଗଳାର Gate ଅତିକ୍ରମ କରି ଉତ୍ତାଳ ଜନସମୁଦ୍ର ସରକାରୀ ରାସ୍ତା ଗ୍ରାସ କରି ପକାଇଛନ୍ତି। ଅଭୂତପୂର୍ବ ଜନସମାବେଶ। ୫ଟା ୨୭ ମିନିଟ୍‌ରେ ଆରମ୍ଭ ହେଲା ବିନତି-ପ୍ରାର୍ଥନା। 'ରାଧାସ୍ୱାମୀ ନାମ ଜୋ ଗାୱେ, ସୋଇ ତରେ...'। ଅୟୁତ କଣ୍ଠ ନିଃସୃତ ସେଇ ସୁରଲହରୀରେ ଗଗନ-ପବନ ମୁଖରିତ ହୋଇ ଉଠିଲା।

ପ୍ରାର୍ଥନାନ୍ତେ ଶ୍ରୀଶ୍ରୀଠାକୁରଙ୍କ ଆଶୀର୍ବାଣୀ (ନବବର୍ଷ ଉପଲକ୍ଷେ ପ୍ରଦତ୍ତ ଏପ୍ରିଲ ୧୦, ୧୯୫୪ ମସିହା) ପାଠ କଲେ ସତ୍‌ସଙ୍ଗ ସମ୍ପାଦକ ଶ୍ରୀଯୁକ୍ତ ନନୀଗୋପାଳ ଚକ୍ରବର୍ତ୍ତୀ ମହୋଦୟ। ମାଇକ୍ ମାଧ୍ୟମରେ ଚତୁର୍ଦ୍ଦିଗରେ ବିଚ୍ଛୁରିତ ହୋଇପଡ଼ିଲା ସେଇ-ବାଣୀ—

''ଆଜି ନବୀନ ବର୍ଷର ଜନ୍ମଦିନ
ନବୀନ ଦୀପନା ନେଇ
ବର୍ଷ ନବୀନ ରୂପେ
ଦୁନିଆ ବୁକୁରେ
ଉଦ୍ଭାସିତ ହୋଇ ଉଠିଲା,
ଜନ୍ମ ନେଲା—
ସବିତାର ଭାସ୍କର ଦୀପନାରେ
ଆତ୍ମବିକାଶ କରି ;

.........................

ପ୍ରଚଣ୍ଡ ଭିଡ଼, କିଛି ଦେଖାଯାଉ ନାହିଁ କିନ୍ତୁ ସ୍ପଷ୍ଟ ଶୁଣାଯାଏ ଦୃପ୍ତ-କଣ୍ଠର ସ୍ୱରଧ୍ୱନି—ମନେରଖ—

ବଞ୍ଚିବାକୁ ହେବ ତୁମକୁ,
ବଞ୍ଚାଇ ରଖିବାକୁ ହେବ ସମସ୍ତଙ୍କୁ,
ନବୀନ ଜନ୍ମର ଆରାଧନା କରିବାକୁ ହେବ,—

..............................

ଚାଲ,
ଆହୁରି ଚାଲ,
ଆଗେଇ ଚାଲ—
ଉଚ୍ଛଳ ଅନୁଦୀପନାରେ;
ସୁକ୍ରିୟ ଅନୁବେଦନା ନେଇ,
ଅସତ୍-ନିରୋଧୀ ଅନୁବେଦନାକୁ ଅକ୍ଷୁଣ୍ଣ ରଖି,

ପରମଦୟାଲ ପରମପିତା ପତିତପାବନ ଶ୍ରୀଶ୍ରୀଠାକୁରଙ୍କର ବାକ୍ନିଚୟ ପାଠକରି ଚାଲିଛନ୍ତି ନନୀଦା—

ଯିଏ ମୋର ଏକାନ୍ତ,
ଯିଏ ମୋର ପ୍ରିୟପରମ
ଯିଏ ମୋର ପରମପିତା ପରମେଶ୍ୱର
ତାଙ୍କର ଚରଣରେ ଏକାନ୍ତ ପ୍ରାର୍ଥନା—
ତୁମ୍ଭେମାନେ ସୁଖରେ ଥାଅ,
ସ୍ୱସ୍ତିର ଅଧିକାରୀ ହୁଅ,
ନିର୍ବ୍ୟାଧି ହୁଅ,
ଚିରାୟୁ ହୋଇ ବଞ୍ଚିରୁହ—
ତୁମ୍ଭମାନଙ୍କର ଯାହାକିଛି ସବୁ ନେଇ ;

........................

କୁହ—

'ବନ୍ଦେ ପୁରୁଷୋତ୍ତମମ୍'

ପୁଣି କୁହ—

'ବନ୍ଦେ ପୁରୁଷୋତ୍ତମମ୍'

ଆକଣ୍ଠ ଘୋଷଣାରେ କୁହ—

'ବନ୍ଦେ ପୁରୁଷୋତ୍ତମମ୍।''

ଏହାପରେ ସ୍ୱରଚିତ କବିତା ପାଠ କଲେ ସତୀଶ ଚନ୍ଦ୍ର ପାଲ (ବଙ୍ଗଳାରେ), ବସନ୍ତୱାନ ସିଂ (ହିନ୍ଦୀରେ)। ଶୈଳେନ୍ଦ୍ର ନାଥ ଭଟ୍ଟାଚାର୍ଯ୍ୟ ଗାଇଲେ ସ୍ୱରଚିତ ଗୀତଟି—'ତୁମକୁ ପ୍ରଣାମ ଦୟାଲଠାକୁର, ଯୁଗାବତାର ଶ୍ରୀଅନୁକୂଳ।' ଏଥର ସମବେତ କଣ୍ଠରେ ଗୀତ ହେଲା 'ତୋମାର ରଙ୍ଗେ ହୃଦୟ ଆମାର ରାଙ୍ଗା......' (ଶ୍ରୀଶ୍ରୀପିତୃଦେବ ବିରଚିତ)। ଭକ୍ତି-ପ୍ରେମାଶ୍ରୁରେ ଭକ୍ତବୃନ୍ଦଙ୍କର ଆଖି ଛଳ ଛଳ। ଶ୍ରୀଶ୍ରୀପିତୃଦେବ ଗୀତ ପରେ ଅର୍ଘ୍ୟାଞ୍ଜଳି ସହ ପ୍ରମାଣ ନିବେଦନ କଲେ ପ୍ରିୟପରମଙ୍କ ଶ୍ରୀପାଦପଦ୍ମରେ। ଅନନ୍ତର ଶ୍ରୀଶ୍ରୀବଡ଼ମାଙ୍କ ଘରେ ଯାଇ ପରମରାଧ୍ୟା ଶ୍ରୀଶ୍ରୀବଡ଼ମାଙ୍କ ଶ୍ରୀଚରଣରେ ନିବେଦନ କଲେ ଭକ୍ତି ଅର୍ଘ୍ୟ। ତାଙ୍କ ସହିତ ଶ୍ରୀଶ୍ରୀଠାକୁର ପରିବାରର ଉପସ୍ଥିତ ଅନ୍ୟମାନେ ମଧ୍ୟ ଅର୍ଘ୍ୟାଞ୍ଜଳି ସହ ପ୍ରଣାମ ନିବେଦନ କଲେ ଦୟାଲଠାକୁର ଓ ଜଗଜ୍ଜନନୀ ଶ୍ରୀଶ୍ରୀବଡ଼ମାଙ୍କ ଶ୍ରୀଚରଣରେ। ସମବେତ ଭକ୍ତମଣ୍ଡଳୀ ମଧ୍ୟ ଯିଏ-ଯେଉଁଠି ଥିଲେ ସେଠାରେ ରହି ଏକସଙ୍ଗେ ପ୍ରଣାମ ନିବେଦନ କଲେ। ଶ୍ରୀଶ୍ରୀପିତୃଦେବ ଏଥରକ ଯାଇ ବସିଲେ ବଡ଼ ନାଟମଣ୍ଡପରେ। ଶ୍ରୀଶ୍ରୀଠାକୁର-ପରିବାରର ଅନ୍ୟମାନଙ୍କ ସହିତ ଉପସ୍ଥିତ ସମସ୍ତେ ତାଙ୍କୁ ପ୍ରଣାମ ନିବେଦନ କଲେ।

ପ୍ରଣାମ ପର୍ବର ଶେଷ ନୁହେଁ ; ବରଂ ଆରମ୍ଭ। ଭକ୍ତଜନ ସମସ୍ତେ ଏଥରକ ଅର୍ଘ୍ୟାଞ୍ଜଳି ସହ ବ୍ୟକ୍ତିଗତଭାବେ ପ୍ରଣାମ ପାଇଁ ଆଗେଇ ଚାଲିଲେ ଶ୍ରୀଶ୍ରୀଠାକୁରଙ୍କ ଘର ଆଡ଼କୁ। ସେତେବେଳକୁ ଦୀର୍ଘ ଲାଇନ ପଡ଼ିଯାଇଛି ସେଠାରେ। ଶ୍ରୀଶ୍ରୀବଡ଼ମାଙ୍କ ଘରକୁ ଯିବା ରାସ୍ତାରେ ଏବଂ ବଡ଼ ନାଟମଣ୍ଡପ ସମ୍ମୁଖରେ ବି ଦୀର୍ଘ ଲାଇନ ପଡ଼ିଛି। ସମଗ୍ର ଠାକୁର-ବଙ୍ଗଳା ଲୋକେ-ଲୋକାରଣ୍ୟ। ସର୍ବତ୍ର ଜନତାର ଚାପ। ସ୍ୱସ୍ତିସେବକ ଭାଇମାନେ ପ୍ରଣାମର ସୁବିଧାର୍ଥେ ହାତ ଧରାଧରି ହୋଇ ଲାଇନ କରି ଠିଆହୋଇ ରହିଛନ୍ତି ଲାଇନର ମଝିରେ-ମଝିରେ। ଚତୁର୍ଦ୍ଦିଗରେ ପ୍ରାଣଚାଞ୍ଚଲ୍ୟର ଚାପ।

ବଡ଼ ନାଟମଣ୍ଡପରେ ଶ୍ରୀଶ୍ରୀପିତୃଦେବଙ୍କ ପାଖରେ ପ୍ରଣାମ ସମୟରେ ଭିଡ଼ ନିୟନ୍ତ୍ରଣ କରୁଛନ୍ତି ଭବାନୀ ଭାଇ (ରାୟ), ବ୍ରଜଗୋପାଳ ଭାଇ (ଗୁରୁ), ଶିବଦୟାଲ ଭାଇ (ସିଂ), ଶିଶୁରଞ୍ଜନ ଭାଇ (ବିଶ୍ୱାସ) ଓ ଶିବିରବାସୀ କିଛି ଭାଇ। ମା'ମାନଙ୍କ ଦିଗରେ ସେହି କର୍ମ ସମ୍ପାଦନ କରୁଛନ୍ତି ବୀଣାମା (ମାଳାକାର), ଲକ୍ଷ୍ମୀଦି (ଗୁହ) ପ୍ରଭୃତି। ମାଇକ୍‌ରେ ବାରମ୍ବାର ଘୋଷିତ ହେଉଛି ମା ଓ ଭାଇମାନେ! ସୁଶୃଙ୍ଖଳଭାବରେ ପ୍ରଣାମ କରନ୍ତୁ ଓ ଅନ୍ୟମାନଙ୍କୁ ପ୍ରଣାମ କରିବାର ସୁଯୋଗ ଦିଅନ୍ତୁ ; ଛୋଟ-ଛୋଟ ପିଲାମାନଙ୍କୁ ଲକ୍ଷ୍ୟ ରଖନ୍ତୁ—ଟଙ୍କା-ପଇସା,

ଗହଣା-ଗାଣ୍ଠି ସାବଧାନରେ ରଖନ୍ତୁ। ବଙ୍ଗଳା, ହିନ୍ଦୀ, ଅସମୀୟା, ଓଡ଼ିଆ, ପ୍ରଭୃତି ବିଭିନ୍ନ ଭାଷାରେ ହେଉଛି ଏହି ଏକା ଘୋଷଣା। ପ୍ରଣାମ-ନିବେଦନ ଅବିରାମ ଚାଲିଛି। ଆଗନ୍ତୁକମାନଙ୍କ ମଧ୍ୟରେ ଅନେକେ ଶ୍ରୀଶ୍ରୀଠାକୁରଭୋଗର ନୈବେଦ୍ୟ, ଶ୍ରୀଶ୍ରୀପିତୃଦେବଙ୍କଲାଗି ବ୍ୟବହାର୍ଯ୍ୟ-ସାମଗ୍ରୀ (ଧୋତି, ଗେଞ୍ଜି, ବହି, ଡାଏରୀ, ଚାଦର ଇତ୍ୟାଦି) ସଙ୍ଗରେ ଆଣିଛନ୍ତି। ଶ୍ରୀଶ୍ରୀପିତୃଦେବ ଏସବୁ ସାମଗ୍ରୀ କେତେବେଳେ ନନ୍ଦଦୁଲାଳ ଭାଇ (ଭଟ୍ଟାଚାର୍ଯ୍ୟ) ଙ୍କ ହାତରେ, କେତେବେଳେ ସ୍ୱସ୍ତିସେବକ ଭାଇମାନଙ୍କ ହାତରେ ଦେବାର କଥା କହୁଛନ୍ତି, ପୁଣି କେତେବେଳେ ବି ତାହା ନିଜ ହାତରେ ଗ୍ରହଣ କରି ବିଛଣା ଉପରେ ରଖୁଛନ୍ତି ଏବଂ ମଧୁର ହସି ମୁଣ୍ଡ ହଲାଇ କହୁଛନ୍ତି—'ଖୁବ୍ ଭଲ'।

ପ୍ରଣାମ ନିବେଦନ ଚାଲିଛି। ଏହାରି ଫାଙ୍କେ ଫଙ୍କେ ଆଗନ୍ତୁକମାନଙ୍କର ଶୁଭାଶୁଭର ଖବର ନେଉଛନ୍ତି। ସେମାନେ ବି ସୁବିଧାମୁତାବକ ନିଜ ନିଜର ଜିଜ୍ଞାସ୍ୟ ବା ସମସ୍ୟାର କଥା ନିବେଦନ କରି ଯଥାଯଥ ବିଧାନ ନେଉଛନ୍ତି।

ଜଣେ ଭଉଣୀ (ଡାହାରା, ବିହାର) ପଚାରିଲେ—ମୋର ଭାଉଜ ସ୍ୱାମୀ-ସ୍ୱରୂପାନନ୍ଦଜୀଙ୍କ ଦୀକ୍ଷା ନେଇଛି। ବର୍ତ୍ତମାନ ଏଠାରେ ନେବାକୁ ଚାହେଁ—ନେବା କି ଠିକ୍ ହେବ ?

ଶ୍ରୀଶ୍ରୀପିତୃଦେବ—ପୁରୁଷୋତ୍ତମଙ୍କ ଦୀକ୍ଷା ସର୍ବାବସ୍ଥାରେ ନିଆ ଯାଇପାରେ। (ଟିକିଏ ରହି) ଆଉ ଭାଇ (ଉକ୍ତ ମା'ର ସ୍ୱାମୀ) ?

ଉକ୍ତ ଭଉଣୀ—ସେ ଦୀକ୍ଷା ନେଇଛନ୍ତି। ଶ୍ରୀଶ୍ରୀଠାକୁରଙ୍କ ଦୀକ୍ଷା।

ଶ୍ରୀଶ୍ରୀପିତୃଦେବ ସମ୍ମତିସୂଚକଭାବେ ମୁଣ୍ଡ ହଲାଇଲେ।

ଉକ୍ତ ଭଉଣୀ—କାହାପାଖରୁ ନେବ ?

—ଭାଇ କାହାଠାରୁ ନେଇଛି ?

—ଆଜ୍ଞା, ମନୋରଞ୍ଜନଦା (ଝା) ଙ୍କ ଠାରୁ।

—ତା'ହେଲେ ତା' ପାଖରୁ ନେବ।

—ଆମ ସଙ୍ଗରେ ଆହୁରି ତିନି-ଚାରିଜଣ ବି ଦୀକ୍ଷା ନେବାକୁ ଚାହାନ୍ତି। କାହାଠାରୁ ନେବେ ?

—ସେଇ ମନୋରଞ୍ଜନଦା ହିଁ ଦେଇପାରେ।

—ସେମାନେ ତନୁଦା (ନିଖିଳ ଘଟକ) ଙ୍କ ଠାରୁ ନେବାକୁ ଚାହାଁନ୍ତି।

ଶ୍ରୀଶ୍ରୀପିତୃଦେବ ମୁଣ୍ଡ ହଲାଇ ସମ୍ମତି ଜଣାଇଲେ।

ଧୀରେନ୍ ଭାଇ (ମଲ୍ଲିକ)—(ଜଣେ ମା'ଙ୍କୁ ଲକ୍ଷ୍ୟକରି)—ଏଇ ମା'ଙ୍କର ଖୁବ୍ ସାପ ଭୟ—କ'ଣ କରିବେ ?

ଶ୍ରୀଶ୍ରୀପିତୃଦେବ—ବେଣ୍ଟା ଚେର ତେଉଁରିଆରେ ପୁରାଇ ଡାହାଣ ହାତରେ ଧାରଣ କରିବେ।

ଭାଇ ଓ ମା'ମାନଙ୍କର ପ୍ରଣାମ ଚାଲିଛି। ଜନୈକା ଭଗ୍ନୀ ପ୍ରତି ଶ୍ରୀଶ୍ରୀପିତୃଦେବଙ୍କର

ଦୃଷ୍ଟି ଆକର୍ଷଣ କରି ଅଜିତ୍ ଭାଇ (ଗାଙ୍ଗୁଲୀ) କହିଲେ—ଏଇ ଭଉଣୀଟିର B.A. Part I ପରୀକ୍ଷାରେ reappear କରିବାକୁ ହେବ। ଇଚ୍ଛାକଲେ ଏହା ସହିତ Part II ବି ଦେଇପାରେ। କଣ୍ କରିବ—Part I ଏବଂ Part II ଏକସଙ୍ଗରେ ଦେବ, ନା କେବଳ Part I ଦେବ ?

ଶ୍ରୀଶ୍ରୀପିତୃଦେବ—ଯା' କରିବା ଭଲ ମନେକରେ ତା'ହିଁ କରିବା ଭଲ। Result (ପରୀକ୍ଷାର ଫଳ) ଭଲ ହେବା ଦରକାର।

ଗୋଟିଏ ଛୋଟ ପିଲାକୁ ନିର୍ଦ୍ଦେଶ କରି ତାର ଅଭିଭାବକ ନିବେଦନ କଲେ ପିଲାଟା ଦୁଷ୍ଟାମି କରେ ଖୁବ୍।

ଶ୍ରୀଶ୍ରୀପିତୃଦେବ—ଦୁଷ୍ଟାମି କରିବା ତ ଭଲ। ମା' ଉପରେ ଟାଣ ରହିଲେ ହିଁ ହେଲା।

ଭବାନୀ ଭାଇ (ରାୟ)— ଆଜ୍ଞା, ଏଇ ଭାଇଟି (ଜଣେ ଭାଇଙ୍କୁ ଦେଖାଇ) ଏଠାରେ ଦୀକ୍ଷା ନେବାକୁ ଚାହାଁନ୍ତି, ସେ ଆଗେ ଦୀକ୍ଷା ନେଇଥିଲେ ; ଯା'ଙ୍କ ମାଧ୍ୟମରେ ଦୀକ୍ଷା ପାଇଥିଲେ, ସେ ଋତ୍ୱିକ୍ ବର୍ତ୍ତମାନ ଇଷ୍ଟବିରୋଧୀ ଦଳରେ।

ଶ୍ରୀଶ୍ରୀପିତୃଦେବ—ଠାକୁରଙ୍କର ଯା' କୁହା ଅଛି, କହି ଦେ।

ଆଦେଶକ୍ରମେ ଭବାନୀ ଭାଇ ଉକ୍ତ ଭାଇଟିଙ୍କୁ ଜଣାଇଲେ ଯେ—ଏଭଳି ହେଲେ ଶ୍ରୀଶ୍ରୀଠାକୁରଙ୍କର କୁହା ଅଛି, ତାଙ୍କୁ (ଶ୍ରୀଶ୍ରୀଠାକୁରଙ୍କୁ) କିମ୍ବା ଶ୍ରୀଶ୍ରୀବଡ଼ଦାଙ୍କୁ ଋତ୍ୱିକ୍ ପଦରେ ବରଣ କରି ସେହି ଅନୁସାରେ ଋତ୍ୱିକୀ ପଠାଇବାକୁ ହେବ। ପୃଥକ୍‌ଭାବେ ପୁରଶ୍ଚରଣର ପ୍ରୟୋଜନ ନାହିଁ।

ଅନ୍ୟ ଥର ଭଳି ଏଥରକ ବି ଆଗନ୍ତୁକମାନଙ୍କ ଭିତରୁ ଅନେକେ ତାଙ୍କ ନିକଟରେ ଦୀକ୍ଷା ଗ୍ରହଣ କରୁଛନ୍ତି। କେତେବେଳେ ବା କର୍ମୀଗଣ ଦୀକ୍ଷା-ପ୍ରାର୍ଥୀଙ୍କୁ ସାଙ୍ଗରେ ନେଇ ଦୀକ୍ଷା-ଦାନ ଲାଗି ତାଙ୍କର ଅନୁମତି ପ୍ରାର୍ଥନା କରୁଛନ୍ତି। ଦୀକ୍ଷାପ୍ରାର୍ଥୀଙ୍କ ସଂଖ୍ୟା କ୍ରମଶଃ ଅତ୍ୟଧିକ ହେବାରୁ ଶ୍ରୀଶ୍ରୀପିତୃଦେବ କର୍ମୀ ଓ ସାଧାରଣ ସତ୍‌ସଙ୍ଗୀଙ୍କୁ ଜଣାଇଲେ ଯେ, ଦୀକ୍ଷା ନେବାପାଇଁ ବ୍ୟକ୍ତିଗତଭାବରେ ସ୍ୱତନ୍ତ୍ର ଅନୁମତି ନେବାର ପ୍ରୟୋଜନ ନାହିଁ।

ଗୋଟିଏ ପିଲାର ହାତରେ ଖଡ଼ି (ବିଦ୍ୟାରମ୍ଭ) ହେବ, ମା' ପିଲାଟିକୁ କୋଳରେ ନେଇ ଶ୍ରୀଶ୍ରୀପିତୃଦେବଙ୍କ ପାଖକୁ ଆଗେଇ ଆସିବା କ୍ଷଣି, ସେ ତ ଭୟରେ କୁଙ୍କୁଡ଼ି ଯାଇ—ମା'ର କୋଳରେ ମୁହଁ ଲୁଚାଇବାକୁ ଚାହେଁ। ଶ୍ରୀଶ୍ରୀପିତୃଦେବ ଏହା ଦେଖି ସ୍ଲେଟ୍-ଖଡ଼ି ତାଙ୍କ ପାଖରେ ରଖିବାକୁ କହିଲେ ଉକ୍ତ ମା'ଟିଙ୍କୁ। ଏଥରକ ପିଲାଟିକୁ ନେଇ ତାର ମା ଆଗେଇ ବସିବା ସଙ୍ଗେ ସଙ୍ଗେ ହଠାତ୍ ପିଲାଟିର ଲଜ୍ଜା, ଭୟ କୁଆଡ଼େ ଚାଲିଗଲା—ହସରେ ମୁହଁଟି ଭରିଉଠିଲା। ଶ୍ରୀଶ୍ରୀପିତୃଦେବ ତାର ହାତରେ ଖଡ଼ି ଧରାଇ ସ୍ଲେଟ ଉପରେ 'ରା' ଲେଖାଇଦେଲେ। ପିଲାଟି ଏଥର ନିଜେ ସେହି ଲେଖା ଉପରେ ଖଡ଼ି ଚଲାଇଲା। ହସ-ହସ ମୁହଁରେ ଦକ୍ଷିଣା ଦେଇ ପ୍ରଣାମ ନିବେଦନ କଲା।

ଆଉ ଜଣେ ଭାଇର ମଧ୍ୟ ହାତେ ଖଡ଼ି (ବିଦ୍ୟାରମ୍ଭ) ହେଲା।

ଏଥରକ 'ସତ୍ୟାନୁସରଣ' ଓ 'ଧୃତି ବିଧାୟନା' ଗ୍ରନ୍ଥ ପାଠ ଓ ଆଲୋଚନା ହେଲା।

ଜନୈକ ଭାଇ ହାଲଖାତା ଉପଲକ୍ଷେ ଖଣ୍ଡେ ଲାଲ-କନାରେ ବନ୍ଧେଇ ଲମ୍ବାଖାତା

ଶ୍ରୀଶ୍ରୀପିତୃଦେବଙ୍କ ଆଗରେ ଟେକି ଧରିଲେ । ଶ୍ରୀଶ୍ରୀପିତୃଦେବ ଖାତାଟି ତାଙ୍କ ହାତରେ ଦେବାର ନିର୍ଦ୍ଦେଶ ଦେଲେ । ପରେ ଖାତାଟି ମୁଣ୍ଡରେ ଲଗାଇ ଉକ୍ତ ଭାଇଙ୍କ ହାତରେ ଦେଲେ । ଭାଇଟି ଗୋଟିଏ ଠୁଙ୍ଗାରେ କିଛି ଭୋଗ-ସାମଗ୍ରୀ ଏବଂ ଅନ୍ୟ ଗୋଟିକରେ କିଛି ଧଳାଫୁଲ ଆଣିଥିଲେ । ଭୋଗ-ସାମଗ୍ରୀ ତାଙ୍କ ଇଚ୍ଛାକ୍ରମେ ନନ୍ଦଦୁଲାଳ ଭାଇଙ୍କ ହାତରେ ଦିଆହେଲା, ଏବଂ ଫୁଲତକ ତାଙ୍କ ବିଛଣା ଉପରେ ରଖାହେଲା ।

ଅଜିତ୍ ଭାଇ (ଧର) କେତୋଟି ଦଣ୍ଡ (ଶ୍ରୀଶ୍ରୀଠାକୁରଙ୍କ ଆଶୀର୍ବାଦପୂତ ଦଣ୍ଡ) ହାତରେ ନେଇ ଆଗେଇ ଆସିଲେ ଏବଂ ଶ୍ରୀଶ୍ରୀପିତୃଦେବଙ୍କ ହାତରେ ନିବେଦନ କଲେ । ଶ୍ରୀଶ୍ରୀପିତୃଦେବ ଦଣ୍ଡଗୁଡ଼ିକୁ କିଛି ସମୟ ପାଇଁ କପାଳ ଦେଶରେ ସ୍ପର୍ଶକରି (ଶ୍ରୀଶ୍ରୀଠାକୁରଙ୍କ ଉଦ୍ଦେଶ୍ୟରେ ପ୍ରଣାମ ଜଣାଇ) ଦଣ୍ଡ-ପ୍ରାର୍ଥୀମାନଙ୍କ ହାତରେ ଗୋଟିଏ ଗୋଟିଏ କରି ଅର୍ପଣ କରିଲେ ।

ଠାକୁରବଙ୍ଗଳାର ଗେଟ୍‌ରେ ଢଂ ଢଂ ଶବ୍ଦରେ ଆଠଟାର ଘଣ୍ଟା ବାଜି ଉଠିଲା । ଏବେ ବି ପ୍ରଣାମ ଚାଲିଛି ; ପ୍ରଣାମର ଲାଇନ୍ ଆରମ୍ଭ ହୋଇଛି ସେଇ କେଉଁ ସକାଳ ୬ଟା ୧୫ ମିନିଟ୍‌ରୁ । ଠାକୁରବାଂଲା ପ୍ରାଙ୍ଗଣରେ ଭିଡ଼ କିଛିଟା କମି ଆସିଛି । ଅନେକେ ସଦର ଗେଟ୍ ପାର ହୋଇ ଚାଲିଛନ୍ତି ପ୍ରାତଃରାଶ ଉଦ୍ଦେଶ୍ୟରେ, କେହି ବା ଅନ୍ୟ କିଛି କାମରେ । ଦୂରରୁ ଗୋଟାଏ ଶୃଙ୍ଖଳିତ କୋଳାହଳର ଶବ୍ଦ ସ୍ପଷ୍ଟ ଭାସିଆସୁଛି ।

ଗୋଟିଏ ଚାରିପାଞ୍ଚ ବର୍ଷ ବୟସର ପିଲା ଆଗେଇ ଆସି ପଚାରିଲା—ବଡ଼ଦା ! ଆପଣ ଭଲ ଅଛନ୍ତି ?

ଶ୍ରୀଶ୍ରୀପିତୃଦେବ—ଆପଣ ?

ଉକ୍ତ ଭାଇ—ମୁଁ ଭଲ ଅଛି ।

—ମୁଁ ବି ଭଲ ଅଛି, ଠାକୁରଙ୍କ ଦୟାରୁ ।

—ଆପଣଙ୍କ ଦେହ କିପରି ଅଛି ?

—ହଁ, ଏକପ୍ରକାର ଭଲ ।

ପିଲାଟିର ପରିଧାନରେ ଲୁଗା ଓ ଫୁଲ୍‌ହାତପଞ୍ଜାବୀ ! ସୁନ୍ଦର ନିଷ୍ପାପ କୋମଳ ମୁହଁରେ ତୃପ୍ତିର ହସ—ଆନନ୍ଦ । ପିଲାଟି ବହିରାଗତ ଜଣେ ଭାଇଙ୍କର ପୁତ୍ର ବୋଲି ଜଣାଗଲା ।

କଲିକତାର ପ୍ରଖ୍ୟାତ E. N. T. Specialist (ନାସା, କର୍ଣ୍ଣ ଓ ଗଳା ବିଶେଷଜ୍ଞ) ଡା: ଏସ୍. କେ. ନାଗଚୌଧୁରୀ ଆଗେଇ ଆସି ଭୂମିଷ୍ଠ ପ୍ରଣାମ କଲେ । ଶ୍ରୀଶ୍ରୀପିତୃଦେବ ତା' ଦେଖି କରଯୋଡ଼ିକରି ପ୍ରତିନମସ୍କାର ଜଣାଇଲେ ଏବଂ ସମ୍ମୁଖ ଆସନରେ ବସିବାକୁ ଇଙ୍ଗିତ କଲେ । ଡା: ନାଗଚୌଧୁରୀ ଆସନ ଗ୍ରହଣ କରି ପୁନରାୟ ହାତଯୋଡ଼ କରି ପ୍ରଣତି ଜଣାଇଲେ ।

ଜଣେ ଭଉଣୀ ଆସି ଜଣାଇଲେ—ମନରେ ଶାନ୍ତି ପାଉନି, ମୋଟେ ନିଦ ହୁଏ ନା ।

ଶ୍ରୀଶ୍ରୀପିତୃଦେବ ଭଉଣୀଟିର ଘରର ଖବର ନେଲେ—ଘରେ କିଏ କିଏ ଅଛନ୍ତି, କିଏ କିଏ ଦୀକ୍ଷିତ ଇତ୍ୟାଦି ଘଟଣା ଭଉଣୀଟି ସବିନୟେ ଜଣାଇଲେ । ଶ୍ରୀଶ୍ରୀପିତୃଦେବ ସବୁ ଶୁଣି ପଚାରିଲେ—ସବୁ ତ ଭଲ, ମନରେ ଶାନ୍ତି ପାଉନୁ କାହିଁକି ?

ଭଉଣୀଟି କିଛି ଯେପରି କହିବାକୁ ଚାହେ ; ଅଥଚ ସଙ୍କୋଚରେ କିଛି କହିପାରୁନି। ସେ ତା ଦେଖି କହିଲେ ଅନ୍ୟ ସମୟରେ କହିବୁ।

ଏଥରକ ସତ୍ୟ ଭାଇ (ପ୍ରମାଣିକ) ଶ୍ରୀଶ୍ରୀପିତୃଦେବଙ୍କ ଦାଢ଼ି କାଟିବା ଆରମ୍ଭ କଲେ ; ତେବେ ବି ବିରାମ ନାହିଁ—ଦାଢ଼ି କାଟିବା ମଝିରେ ବି ଚାଲିଛି କଥା—ପ୍ରଶ୍ନର ଉତ୍ତର, ସମସ୍ୟାର ସମାଧାନ।

ଛତାର ଖୁଣ୍ଟା ଲାଗି ଜଣେ ମା'ଙ୍କର ଆଖିରେ ଯନ୍ତ୍ରଣା, ଜ୍ୱାଳା। ଡାକ୍ତର ଦେଖାଇ ବି ବିଶେଷ ଫଳ ମିଳିନି।

ଶ୍ରୀଶ୍ରୀପିତୃଦେବ ବ୍ୟଥା ଉପଶମ ଲାଗି ସକାଳବେଳା ଆଖିରେ ବାସି ହୁକାର ପାଣିର ଛିଟିକା କିଛିଦିନ ଦେବାକୁ କହିଲେ।

ଜଣେ ଭାଇ ଜଣାଇଲେ, ସେ ସ୍ୱସ୍ତ୍ୟୟନୀବ୍ରତ ନେଇଛନ୍ତି ; ବାହାରେ କାମ କରନ୍ତି—ନିରାମିଷ ଖାଇବାର କୌଣସି ସ୍ୱତନ୍ତ୍ର ବ୍ୟବସ୍ଥା ନାହିଁ। ପ୍ରଶ୍ନ କଲେ—ବର୍ତ୍ତମାନ କଣ କରିବେ ?

ଶ୍ରୀଶ୍ରୀପିତୃଦେବ—ଲୁଣ-ଲଙ୍କା ଦେଇ ଭାତ ଖାଇବ। କିଛି ମାଖନ କିମ୍ବା ଘିଅ ରଖିବ, ତା' ଦେଇ ଖାଇବ। ନିଷ୍ଠା-ଆନୁଗତ୍ୟ-କୃତିସମ୍ବେଗ ଥିଲେ ସବୁ ଠିକ୍ ହୋଇଯିବ ; ସେମାନେ ନିଜେ ହିଁ (ଯେଉଁମାନେ ଖାଇବାକୁ ଦିଅନ୍ତି) ବ୍ୟବସ୍ଥା କରିବେ।

ଜନୈକା ମା—ଯାହା ଖାଇଲେ ଅମ୍ଳ ହୁଏ, ପେଟ ଫୁଲିଯାଏ।

ଶ୍ରୀଶ୍ରୀପିତୃଦେବ—ଅଳ୍ପ ଅଳ୍ପ ଖାଇବ, କିଛି ସମୟ ପରେ ପରେ। ଯାହା ଖାଇଲେ ଦେହ ଭଲ ରହେ, ସେସବୁ ହିସାବ କରି ଖାଇବ।

ଜନୈକ ଭାଇ ଆମାଶୟର ବ୍ୟବସ୍ଥାପତ୍ର ଜାଣିବାକୁ ଚାହିଁବାରୁ ସେ ଜିରା ଗୁଣ୍ଡ (ସୁଉକିଭରି ପରିମାଣ) ମହୁଦେଇ ମାରି, ଖାଇବା ପରେ ଦିନକୁ ତିନିଥର ଖାଇବାକୁ କହିଲେ। ଶାଗ, ରାଗ, ଖଟା ଖାଇବାକୁ ନିଷେଧ କଲେ।

ମାଲଦହର କର୍ମୀ ଶୈଳେନ୍ ଘୋଷ ଭାଇଙ୍କୁ ଦେଖି ଶ୍ରୀଶ୍ରୀପିତୃଦେବ ସୋହାଗ-ସ୍ୱରରେ ପଚାରିଲେ—ଖବର କଣରେ ?

ଶୈଳେନ୍ ଭାଇ—ଆଜ୍ଞା, ଭଲ।

—ଆମ୍ବ ଖାଇବାକୁ ଯିବି ନା କ'ଣ ?

—ଆଜ୍ଞା, ହଁ। ତାହେଲେ ତ ଖୁବ୍ ଭଲହେବ।

—ଭଲହେବ କାହିଁକି ?

—ଆଜ୍ଞା, ଆପଣ ଗଲେ ସମସ୍ତେ ଖୁସି ହୁଅନ୍ତି। ଚାରିଆଡୁ ଲୋକ ଆସନ୍ତି। ଅନେକ ଯେଉଁମାନେ ଏଠାକୁ ଆସି ପାରନ୍ତିନି ସେମାନେ ଆପଣଙ୍କ ଦର୍ଶନ ପାଇପାରିବେ।

—ଯାଃ ପାଗଳ ; ମୋତେ ଦର୍ଶନ କରିବାକୁ ଆସିବେ କାହିଁକି ? ସମସ୍ତେ ଠାକୁରଙ୍କ ଟାଣରେ ହିଁ ଆସନ୍ତି। ତୁମ୍ଭମାନଙ୍କ ମୁହଁରେ ଠାକୁରଙ୍କ କଥା ଶୁଣନ୍ତି ବୋଲି ଆସନ୍ତି ; ତୁମେସବୁ ଠାକୁରଙ୍କୁ ଭଲପାଅ, ସେଥିପାଇଁ ଆସ।

—ଆଜ୍ଞା, ଆପଣଙ୍କ ନାମ ଶୁଣି ହିଁ ସମସ୍ତେ ଆସନ୍ତି।

ଏଥରକ ଶ୍ରୀଶ୍ରୀପିତୃଦେବ ଉପସ୍ଥିତ ଲୋକମାନଙ୍କ ଆଡ଼େ ଏକନିମିଷ ଚାହିଁ କହିଲେ—କିନ୍ତୁ, ମୋ ସଙ୍ଗରେ ଅନେକ ଲୋକ।

ଶୈଲେନ୍ ଭାଇ—ସେଥିରେ କଣ ? ସମସ୍ତେ ଯିବେ।

—ଏତେ ଲୋକ ରହିବେ କେଉଁଠି ? ମା'ମାନେ ଅଛନ୍ତି—ରହିବେ କେଉଁଠି ?

—ଆପଣ ଯିବେ ଜାଣିଲେ ଗୁରୁଭାଇମାନେ ହିଁ ସବୁ ବ୍ୟବସ୍ଥା କରି ପକାଇବେ।

ଶ୍ରୀଶ୍ରୀପିତୃଦେବଙ୍କର ଉଠିବା ସମୟ ହୋଇଯାଇଛି। କିନ୍ତୁ ଉତ୍ସବ ସମୟ; ଆଗନ୍ତୁକମାନଙ୍କର ବିବିଧ ପ୍ରଶ୍ନ, ରୋଗ-ବିରାଗର କଥା ଯେପରି ଶେଷ ହେବାକୁ ଚାହେ ନା। ତା ଛଡ଼ା ଯେଉଁମାନେ ଦୂର-ଦୂରାନ୍ତରରୁ ଆସିଛନ୍ତି, ସେମାନେ ତାଙ୍କୁ କ୍ଷଣିକ ଦର୍ଶନ କରି କିଛି ମାତ୍ର ତୃପ୍ତ ହୋଇପାରୁ ନାହାଁନ୍ତି,—ଦୂରରେ ଠିଆହୋଇ ଅପଲକ ନେତ୍ରରେ ଚାହିଁ ରହିଥାନ୍ତି ପ୍ରିୟପ୍ରତିଭୂଙ୍କର ଶ୍ରୀଅଙ୍ଗ ଆଡ଼େ। ଭବାନୀ ଭାଇ, ବ୍ରଜ ଭାଇ ଓ ଶିବଦୟାଲ ଭାଇ ପ୍ରଭୃତି ବାରମ୍ବାର ତାଗିଦା ଦେଉଥାନ୍ତି—ଶୀଘ୍ର ପ୍ରଣାମ ସାରିବାକୁ।

ଜଣେ ମା ତାଙ୍କର ଶିଶୁପୁତ୍ରକୁ କୋଳରେ ନେଇ ପ୍ରଣାମ ନିବେଦନ କରି ସେହି ସ୍ଥାନରେ ହିଁ ବସି ପଡ଼ିଛନ୍ତି। ବୀଣାମା ଉକ୍ତ ମା'ଙ୍କୁ ଉଠିବାକୁ କହିଲେ। ମା'ଟି ତେବେ ବି ବସି ରହିଛନ୍ତି। ବୀଣାମା ପୁଣି କହିଲେ—ଆପଣ ଉଠନ୍ତୁ; ବଡ଼ଦାଙ୍କର ଉଠିବା ସମୟ ହୋଇଯାଇଛି। ଆପଣମାନେ ସମସ୍ତେ ନ ଉଠିଲେ ସେ ଉଠିବେନି। ମା'ଟି ଏଥରକ ସ୍ଥାନ ଛାଡ଼ି ଦୂରେଇ ଠିଆହେଲେ। ପଚାରି ଜଣାଗଲା ଯେ ଉକ୍ତ ମା'ଟି ମହୀଶୂରରୁ ଆସିଛନ୍ତି, ସଙ୍ଗରେ ତାଙ୍କର ସ୍ୱାମୀ।

୮ଟା ବାଜି ୫୦ ମିନିଟ୍। ପରମାରାଧ୍ୟ ଶ୍ରୀଶ୍ରୀଠାକୁର ଓ ପରମାରାଧ୍ୟା ଶ୍ରୀଶ୍ରୀବଡ଼ମାଙ୍କୁ ପ୍ରଣାମ କରି ଶ୍ରୀଶ୍ରୀପିତୃଦେବ ଷୋଡ଼ଶୀଭବନ ଅଭିମୁଖେ ଚାଲିଲେ। ସାଙ୍ଗରେ ଅଗଣିତ ଭକ୍ତମଣ୍ଡଳୀ।

ସନ୍ଧ୍ୟା ୫ଟା ୪୦ମି:ରେ ଠାକୁର-ବଙ୍ଗଳାରେ ସମବେତ ବିନତି-ପ୍ରାର୍ଥନା ହେଲା। ଯଥାରୀତି ପ୍ରଣାମାଦି ପରେ ଶ୍ରୀଶ୍ରୀପିତୃଦେବ ନାଟମଣ୍ଡପରେ ଭକ୍ତଜନ ପରିବୃତ ହୋଇ ବସିଲେ।

ଉପସ୍ଥିତ ଅଛନ୍ତି—ଅଜିତ କୁମାର ଗାଙ୍ଗୁଲୀ, ହୀରାଲାଲ ଚକ୍ରବର୍ତ୍ତୀ, ଧୀରେନ୍ଦ୍ର ନାଥ ମଲ୍ଲିକ, ଜିତେନ୍ଦ୍ର ନାଥ ଦେବବର୍ମ୍ମନ, ବିନୋଦବିହାରୀ ମୁନ୍‌ସୀ, ଯାମିନୀକାନ୍ତ ରାୟଚୌଧୁରୀ, ଶୈଳେନ୍ଦ୍ର ନାଥ ଭଟ୍ଟାଚାର୍ଯ୍ୟ, ବସନ୍ତ୍‌ଵାନ୍ ସିଂ, ନିତ୍ୟାନନ୍ଦ ମଣ୍ଡଳ, ଆଶୁତୋଷ ଗାଙ୍ଗୁଲୀ, ମନ୍ମଥ ନାଥ ଦେ, କରୁଣାସିନ୍ଧୁ ମୁଖୋପାଧ୍ୟାୟ, ରଞ୍ଜିତ କୁମାର ଚକ୍ରବର୍ତ୍ତୀ, ନୀରଦ ଚନ୍ଦ୍ର ଚୌଧୁରୀ, ଡ: ପ୍ରଶାନ୍ତ ବୋରା, ଗୋବର୍ଦ୍ଧନ ପରିଡ଼ା, ଗୁରୁକିଙ୍କର ପାଣ୍ଡେ, ହରିପଦ ଦାସ, ସୁଧାଂଶୁ ଦାସ, ପ୍ରଫୁଲ୍ଲ ଚକ୍ରବର୍ତ୍ତୀ, ସନ୍ତୋଷ କୁମାର ଦେ, ରାମେଶ୍ୱର ସିଂ। ଏହାଛଡ଼ା ରହିଛନ୍ତି ଅନେକ ମା' ଓ ଭଉଣୀମାନେ। ଭବାନୀ ଭାଇ, ମଦନ ଭାଇ, ବ୍ରଜଗୋପାଳ ଭାଇ ଏବଂ ଅନ୍ୟାନ୍ୟ ସ୍ୱସ୍ତିସେବକ ଭାଇମାନେ ପ୍ରଣାମ ନିବେଦନରେ ସହାୟତା କରୁଛନ୍ତି। ମା'ମାନଙ୍କ ନିମନ୍ତେ

ଭିଡ଼ ନିୟନ୍ତ୍ରଣ କରୁଛନ୍ତି ବୀଣାମା (ମାଳାକାର) ଓ ଲକ୍ଷ୍ମୀଦି (ଗୃହ) ପ୍ରଭୃତି।

ପ୍ରତିଦିନ ଭଳି ଆଜି ମଧ୍ୟ ଆଶ୍ରମବାଳିକାଗଣ ଧଳାଫୁଲର ସୁନ୍ଦର-ସୁନ୍ଦର ମାଳମାନ ଗୁନ୍ଥି ଆଣିଛନ୍ତି। ଧାଡ଼ିବାନ୍ଧି ସେମାନେ ଜଣକ ପରେ ଜଣେ ଶ୍ରୀଶ୍ରୀପିତୃଦେବଙ୍କ ଶ୍ରୀହସ୍ତରେ ଫୁଲମାଳ ଅର୍ପଣ କରି ତାଙ୍କୁ ପ୍ରଣାମ ଜଣାଇଲେ। ଶ୍ରୀଶ୍ରୀପିତୃଦେବ ପ୍ରତିଟି ମାଳ ମୁଣ୍ଡରେ ଲଗାଇ ନନ୍ଦଦୁଲାଲ ଭାଇଙ୍କ ହାତରେ ଦେଲେ। ଶ୍ରୀଶ୍ରୀପିତୃଦେବଙ୍କ ନିର୍ଦ୍ଦେଶରେ ସେ ଏସବୁ ଫୁଲମାଳ ନେଇ ନିୟମିତ ଶ୍ରୀଶ୍ରୀଠାକୁର ଓ ଶ୍ରୀଶ୍ରୀବଡ଼ମା'ଙ୍କର ପ୍ରତିକୃତି ସଜାଇଥା'ନ୍ତି।

୬ଟା ବାଜି ୨୬ ମିନିଟ୍। ଅନ୍ୟଦିନ ଭଳି ଆଜି ବି କୀର୍ତ୍ତନଦଳ 'ହରେକୃଷ୍ଣ ହରେକୃଷ୍ଣ କୃଷ୍ଣ କୃଷ୍ଣ ହରେ ହରେ' ଗାଇ ଗାଇ ଆସି ଠାକୁରବଙ୍ଗଳାରେ ପ୍ରବେଶ କଲେ, ଯଥାରୀତି ପ୍ରଣାମ କରି, ଆଶ୍ରମ ପ୍ରଦକ୍ଷିଣ କରିବାକୁ ଚାଲିଗଲେ।

ପ୍ରତି ନବବର୍ଷରେ 'ହାଲଖାତା' ଉପଲକ୍ଷେ ଅନେକ ବ୍ୟବସାୟୀ-ଗୁରୁଭାଇମାନେ ନୂଆ ଖାତା ଆଣି ଶ୍ରୀଶ୍ରୀପିତୃଦେବଙ୍କ ଶ୍ରୀଚରଣରେ ନିବେଦନ ପୂର୍ବକ ଆଶୀର୍ବାଦ ପ୍ରାର୍ଥନା କରିଥାନ୍ତି। ଏହି ଆଶୀର୍ବାଦପୂତ ଖାତାରେ ସେମାନେ ସାରାବର୍ଷର ବ୍ୟବସାୟ ସଂକ୍ରାନ୍ତ ହିସାବ ରଖନ୍ତି। ଜନୈକ ଭାଇ ଏଭଳି ଗୋଟିଏ ନୂଆ ଖାତା ଆଣି ଶ୍ରୀଶ୍ରୀପିତୃଦେବଙ୍କ ଶ୍ରୀହସ୍ତରେ ନିବେଦନ କଲେ। ଶ୍ରୀଶ୍ରୀପିତୃଦେବ ଖାତାଟି କପାଳରେ ଲଗାଇ ଉକ୍ତ ଭାଇଙ୍କ ହାତରେ ଫେରାଇଦେଲେ। ଭାଇଟି ପ୍ରଣାମ କରି ଉଠିଗଲେ।

ଆଲୋଚନା-ପ୍ରସଙ୍ଗରେ ଶ୍ରୀଶ୍ରୀପିତୃଦେବଙ୍କର ମୁର୍ଶିଦାବାଦ ରାମପଡ଼ା ସ୍ୱସ୍ତିଶିବିରକୁ ଯିବା କଥା ଉଠିଲା। ରାମପଡ଼ା ଯିବାକୁ ଏବେ ବି କୌଣସି ପକ୍କା ରାସ୍ତା ନାହିଁ। ନ୍ୟାଶନାଲ ହାଇଓ୍ୱେ (୩୪ ନଂ) ଧରି ରେଜିନଗର ନାମକ ସ୍ଥାନରୁ ପ୍ରାୟ ୨ ମାଇଲ ଦୁର୍ଗମ ମାଟି ରାସ୍ତାଦେଇ ସେଠାକୁ ଯିବାକୁ ହୁଏ। ରାସ୍ତା ଭଲ ନ ଥିବାରୁ ଏହାପୂର୍ବେ ଶ୍ରୀଶ୍ରୀପିତୃଦେବଙ୍କ ଗାଡ଼ି ରେଜିନଗରରୁ ରାମପଡ଼ା ମଧ୍ୟରେ ବହୁତ ଅସୁବିଧାରେ ପଡ଼ିଥିଲା।

ଶ୍ରୀଶ୍ରୀପିତୃଦେବ ପଚାରିଲେ—ରାସ୍ତା ପକ୍କା କରା ଯାଏ ନା ?

ଭବାନୀ ଭାଇ—ଆଜ୍ଞା, ଆପଣଙ୍କ ଇଚ୍ଛା ହେଲେ ହିଁ ହୋଇଯିବ।

—ମୋ' ଇଚ୍ଛା ମାନେ ?

—ଆଜ୍ଞା, ଆପଣ ଯିବେ ଜାଣିଲେ ସେ ଅଞ୍ଚଳର ସମସ୍ତେ ଉଠିପଡ଼ି ଲାଗିବେ ରାସ୍ତା ପାଇଁ। ସେତେବେଳେ ଠିକ୍ ହିଁ ହୋଇଯିବ।

—ଆଗେ ରାସ୍ତା ହେଉ, ତା'ପରେ।

ଏଥରକ ନବବର୍ଷ ଉତ୍ସବରେ ଅନ୍ୟାନ୍ୟ ବିଶିଷ୍ଟ ଅତିଥିମାନଙ୍କ ମଧ୍ୟରେ ଅଛନ୍ତି ପଶ୍ଚିମବଙ୍ଗ ବିଧାନ-ସଭାର ଡେପୁଟି ସ୍ପୀକର ଶ୍ରୀ ହରିଦାସ ମିତ୍ର, ବଙ୍ଗଳାର ପ୍ରସିଦ୍ଧ କଥାଶିଳ୍ପୀ ଶ୍ରୀ କୁମାରେଶ ଘୋଷ, 'ହାଓଡ଼ା-ବାର୍ତ୍ତା'ର (ହାଓଡ଼ାରୁ ପ୍ରକାଶିତ) ସମ୍ପାଦକ ଡ: ଶମ୍ଭୁ ପାଲ ଓ ତାଙ୍କ ସ୍ତ୍ରୀ।

୬ଟା ୫୦ ମିନିଟ୍‌ରେ ବିଶିଷ୍ଟ ଅତିଥିମାନଙ୍କୁ ନେଇ ପରମେଶ୍ୱର ପାଲ ଓ ପରେଶ ଭୋରା ଭାଇ ଆସିଲେ। ଶ୍ରୀଶ୍ରୀପିତୃଦେବ ଅତିଥିମାନଙ୍କ ଉଦ୍ଦେଶ୍ୟରେ କରଯୋଡ଼ି ନମସ୍କାର

ନିବେଦନ କରି ସେମାନଙ୍କ ପାଇଁ ଉଦ୍ଦିଷ୍ଟ ଆସନ ଗ୍ରହଣ କରିବାକୁ ଅନୁରୋଧ କଲେ । ସେମାନେ ଶ୍ରୀଶ୍ରୀପିତୃଦେବଙ୍କୁ ପ୍ରଣାମ ନିବେଦନ କରି ଆସନ ପରିଗ୍ରହ କଲେ । ହରିଦାସ ବାବୁ ପ୍ରଥମେ କଥା ଆରମ୍ଭ କଲେ—ମୁଁ ସବୁକିଛି ଦେଖି ବିସ୍ମିତ ହେଲି । ଏପରି ଦେଖିବି ତା ଆଗରୁ ଭାବିନି । ଏତେ ଲୋକ ଏତେ ସୁନ୍ଦର ବ୍ୟବସ୍ଥା—ଅବାକ୍ ହୋଇ ଯାଉଛି ।

ଶ୍ରୀଶ୍ରୀପିତୃଦେବ—ଏସବୁ ଯା' ଯା' ଦେଖୁଛନ୍ତି, ସେସବୁ ଏମାନେ (କାର୍ତ୍ତିକ ସରକାର ଓ ହରିବଲ୍ଲଭ ନାରାୟଣ ପ୍ରଭୃତି ଉପସ୍ଥିତ କେତେକ କର୍ମୀଙ୍କ ଉଦ୍ଦେଶ୍ୟରେ) କରିଛନ୍ତି । ଠାକୁରଙ୍କ ଦୟାରେ ସବୁ ହୋଇଯାଉଛି ।

—ସମସ୍ତେ କୁହନ୍ତି ତ ଆପଣ ହିଁ ସବୁ କରନ୍ତି ।

—ସେମାନେ ହିଁ ସବୁ କରିଛନ୍ତି । (ଟିକିଏ ରହି) ଆପଣଙ୍କର କୌଣସି ଅସୁବିଧା ହେଉନି ତ ରହିବା ବା ଖାଇବାର ?

ହରିଦାସ ବାବୁ—ନା, ନା, ଆଦୌ ଅସୁବିଧା ହେଉନି । ବରଂ ଏଭଳି ସୁବିଧା କଥା ଭାବି ଆସିନି ।

ଶ୍ରୀଶ୍ରୀପିତୃଦେବ—ଖାଇବା ବ୍ୟାପାରରେ ? ଆମେ ତ ନିରାମିଷ ଖାଉ, ଏଠାରେ ସମସ୍ତେ ସେଇଆ ଖାଅନ୍ତି ।

—ନା, ନା, କୌଣସି ବିଷୟରେ କୌଣସି ଅସୁବିଧା ହେଉନି । ଆମ୍ଭମାନଙ୍କ ପାଇଁ ଖୁବ୍ ଭଲ ବ୍ୟବସ୍ଥା ଅଛି । ଆମ୍ଭମାନଙ୍କ ପାଇଁ Guest House ର ପ୍ରୟୋଜନ ନ ଥିଲା । ଏଠାରେ ଦେଖୁଛି କେତେ ହଜାର ହଜାର ଲୋକ ଗଛତଳେ ଶୋଇ ଅଛନ୍ତି । ଆନନ୍ଦବଜାର ବୁଲି ଦେଖିଲି—ସେଠାରେ ବି ତ ସମସ୍ତେ ଭାତ-ଡାଲି ଖାଉଛନ୍ତି କେତେ ଆନନ୍ଦ ଆଉ ତୃପ୍ତିରେ ।

—ହଁ, ଆନନ୍ଦବଜାରରେ ସମସ୍ତେ ଠାକୁରଙ୍କ ପ୍ରସାଦ ପାଆନ୍ତି । ତେଣୁ ତୃପ୍ତିଭରେ ହିଁ ଖାଆନ୍ତି ।

—ଆମ ସମସ୍ତଙ୍କର ଇଚ୍ଛା ଅନ୍ତତଃ ଥରେ ଆନନ୍ଦବଜାରରେ ପ୍ରସାଦ ଗ୍ରହଣ କରିବୁ ।

ଶ୍ରୀଶ୍ରୀପିତୃଦେବ ଉତ୍‌ଫୁଲ୍ଲ ହୋଇ ଉତ୍ତର ଦେଲେ—ଖୁବ୍ ଭଲ ! ସଙ୍ଗେ ସଙ୍ଗେ ସେମାନଙ୍କର ପ୍ରସାଦ ଗ୍ରହଣରେ ଯେପରି କୌଣସି ଅସୁବିଧା ନ ହୁଏ, ସେଥିପାଇଁ ପରମେଶ୍ୱର ଭାଇ ଓ ପରେଶ ଭାଇଙ୍କୁ ଲକ୍ଷ୍ୟ ରଖିବାକୁ କହିଲେ ।

ଏହାପରେ କୁମାରେଶ ବାବୁ ଶ୍ରୀଶ୍ରୀପିତୃଦେବଙ୍କୁ କହିଲେ—ଆମେ ଏବେ ବି ପ୍ରକୃତ ମଣିଷ ଗଢ଼ିପାରିନୁ । ଆମେ ସ୍କୁଲ-କଲେଜ ବିଶ୍ୱବିଦ୍ୟାଳୟର ସଂଖ୍ୟା ବଢ଼ାଇଛୁ ; କିନ୍ତୁ ବିଶ୍ୱବିଦ୍ୟାଳୟର ଶିକ୍ଷା ମଣିଷକୁ ଭଦ୍ରତା, ସୌଜନ୍ୟ ଶିଖାଏ ନା । ଆମ୍ଭମାନଙ୍କର ଶିକ୍ଷା ପୋଥିଗତ ଶିକ୍ଷା । ଏଠାରେ (ସତ୍‌ସଙ୍ଗରେ) ସବୁ ପ୍ରକାରର ସୁଷ୍ଠୁ ବ୍ୟବସ୍ଥା, ପ୍ରକୃତ ମଣିଷ ଗଢ଼ିବାର ବ୍ୟବସ୍ଥା ! ମୋର ମନେହୁଏ ଟଙ୍କାପଇସା ବଡ଼କଥା ନୁହେଁ । ପ୍ରକୃତ କର୍ମୀ ହେଲେ ହିଁ ଟଙ୍କାପଇସା ଆସେ । Plan, Programme (ପରିକଳ୍ପନା ଓ ପଦ୍ଧତି) ଏହାର ବି ପ୍ରୟୋଜନ ହୁଏ ନା । ପ୍ରକୃତ କର୍ମୀ ହେଲେ ହିଁ ସବୁ ହୁଏ । ଏଠାରେ ତା'ହିଁ ଦେଖୁଛି । ଜଣଙ୍କୁ କେନ୍ଦ୍ରକରି ଏଠାରେ ଏପରି ସୁନ୍ଦର ବ୍ୟବସ୍ଥା, ଏତେ ଜନସମାବେଶ—ମୋର ଖୁବ୍ ଭଲ ଲାଗୁଛି ।

କଥା ପ୍ରସଙ୍ଗରେ କୁମାରେଶ ବାବୁ All India Litterateures' Conference (ସର୍ବଭାରତୀୟ ସାହିତ୍ୟିକ-ସମ୍ମେଳନ) ଦେଓଘରରେ କରିବାର ଇଚ୍ଛା ପ୍ରକାଶ କଲେ। କହିଲେ—ମୁଁ ଚେଷ୍ଟା କରିବି ଯଦି କରିବା ସମ୍ଭବ ହୁଏ। ଶ୍ରୀଶ୍ରୀପିତୃଦେବ ଖୁସି ହୋଇ ଏ ପ୍ରସ୍ତାବରେ ସମ୍ମତି ଦେଲେ।

ଶ୍ରୀଶ୍ରୀପିତୃଦେବଙ୍କୁ ଦୁଇଖଣ୍ଡି ବହି କୁମାରେଶ ବାବୁ ଉପହାର ଦେଲେ। ପ୍ରସଙ୍ଗତଃ ଜଣାଇଲେ, ସେ ରୁଷିଆ, ଜାପାନ ପ୍ରଭୃତି ଦେଶ ବୁଲିଛନ୍ତି ; ସେ-ସବୁ ଅଭିଜ୍ଞତା ସେ ତାଙ୍କର ଏ ବହିରେ ତୋଳିଧରିଛନ୍ତି। ଏହାଛଡ଼ା ଭଦ୍ରତା, ସୌଜନ୍ୟବୋଧ—ଯାହା ଆଜିର ଅଧିକାଂଶ ସମାଜରେ ଲୁପ୍ତପ୍ରାୟ, ତା' ପୁନରୁଜ୍ଜୀବନର ପ୍ରଚେଷ୍ଟା ଏ ବହିରେ କରିଛନ୍ତି।

ଶ୍ରୀଶ୍ରୀପିତୃଦେବ ହୃଷ୍ଟ ଚିତ୍ତରେ ବହିଗୁଡ଼ିକ ଗ୍ରହଣ କଲେ। କୁମାରେଶ ବାବୁଙ୍କ କଥାରେ ତୃପ୍ତିବୋଧ କଲେ। ମଧୁର କଣ୍ଠରେ କହିଲେ—ଏ ପ୍ରଚେଷ୍ଟା ଖୁବ୍‌ଇ ଭଲ।

ଉଠିବା ଆଗରୁ ପରମେଶ୍ୱର ଭାଇ ନିବେଦନ କଲେ—(ହରିଦାସ ବାବୁଙ୍କୁ ଲକ୍ଷ୍ୟ କରି) ଆଜ୍ଞା ସେ ଶ୍ରୀଶ୍ରୀଠାକୁରଙ୍କ 'ଦଣ୍ଡ' ପ୍ରାର୍ଥନା ଇଚ୍ଛା କରନ୍ତି।

ସଙ୍ଗେ-ସଙ୍ଗେ ଶ୍ରୀଶ୍ରୀପିତୃଦେବଙ୍କ ନିର୍ଦ୍ଦେଶକ୍ରମେ ଅଜିତ୍ ଧର ଭାଇ 'ଦଣ୍ଡ' ଆଣି ଶ୍ରୀଶ୍ରୀପିତୃଦେବଙ୍କ ହାତରେ ଦେଲେ। ସେ ଦଣ୍ଡଟି କିଛିକ୍ଷଣ ମୁଣ୍ଡରେ ଲଗାଇ, ହରିଦାସବାବୁଙ୍କ ହାତରେ ଦେଲେ ; କହିଲେ—ଏ ଦଣ୍ଡ ଶ୍ରୀଶ୍ରୀଠାକୁରଙ୍କ ଆଶୀର୍ବାଦପୂତ। ଠିକ୍‌ଭାବେ ବ୍ୟବହାର କରିବେ, ଅନ୍ୟ କାହାକୁ ଦେବେନି। କୁମାରେଶ ବାବୁ ଓ ଶମ୍ଭୁବାବୁ ମଧ୍ୟ ଦଣ୍ଡଗ୍ରହଣର ପ୍ରାର୍ଥନା ଜଣାଇଲେ—ଶ୍ରୀଶ୍ରୀପିତୃଦେବ ସେମାନଙ୍କୁ ମଧ୍ୟ ଦଣ୍ଡ ପ୍ରଦାନ କଲେ। କୁମାରେଶ ବାବୁ ଦଣ୍ଡଟି ହାତରେ ନେଇ, ଦଣ୍ଡ-ମୁଣ୍ଡରେ ସଂସ୍କୃତରେ ଲେଖା ଧର୍ମର ସଂଜ୍ଞା ପ୍ରତି ଦୃଷ୍ଟିପାତ କଲେ, ଶ୍ରୀଶ୍ରୀପିତୃଦେବ ତାହା ଦେଖି ପରମେଶ୍ୱର ଭାଇଙ୍କୁ କହିଲେ—ଦଣ୍ଡ ଉପରେ କଣ ଲେଖା ଅଛି ପଢ଼।

ପରମେଶ୍ୱର ଭାଇ—''ଯେନାତ୍ମନସ୍ତଥାନ୍ୟେଷାଂ ଜୀବନଂ ବର୍ଦ୍ଧନଂ ଚାପି ଧ୍ରିୟତେ ସଃ ଧର୍ମ୍ମଃ।

ଶ୍ରୀଶ୍ରୀପିତୃଦେବ—ଠାକୁର ଧର୍ମ୍ମ କହିଲେ ବୁଝନ୍ତି—

''ଅନ୍ୟେ ବାଁଚାୟ ନିଜେ ଥାକେ
ଧର୍ମ୍ମ ବଲେ ଜାନିସ୍ ତାକେ।''

(ଅନ୍ୟକୁ ବଞ୍ଚାଇ ରଖେ ନିଜକୁ/ଧର୍ମ୍ମ ବୋଲି ଜାଣିବ ତାକୁ) ଏଇ କଥା ହିଁ ସେଠାରେ ଲେଖାଅଛି।

ଏଥରକ ସେମାନେ ଚାରିଜଣଯାକ ପ୍ରଣାମ କରି ଉଠିଲେ।

୭ଟା ବାଜି ୮ ମିନିଟ। ପଶ୍ଚିମବଙ୍ଗର ମନ୍ତ୍ରୀ ଶ୍ରୀଯୁକ୍ତ ଚାରୁମିହିର ସରକାର ଆସି ପ୍ରଣାମ-ପୂର୍ବକ ଶ୍ରୀଶ୍ରୀପିତୃଦେବଙ୍କ ସମ୍ମୁଖସ୍ଥ ଆସନରେ ବସିଲେ।

ଏହାପରେ କେତୋଟି ନବଜାତକର ନାମକରଣ ହେଲା। ପିତା ଭ୍ରାନ୍ତିମୋହନ ମାନ୍ନା, ପିତାମହ ଗିରୀଶ ଚନ୍ଦ୍ର ମାନ୍ନା ଓ ପ୍ରପିତାମହ କ୍ଷେତ୍ରମୋହନ ମାନ୍ନା। ନବଜାତକର ନାମ

ବିଆହେଲା—ସୁପ୍ରୀତି ମାନ୍ନା। ପିତା ବିମଳ କୁମାର ଟାଲୀ, ପିତାମହ ହଂସରାଜ ଟାଲୀ, ପ୍ରପିତାମହ ଚ୍ୟବନଲାଲ ଟାଲୀ, ନବଜାତକର ନାମ ରଖାହେଲା ଦୀପକ କୁମାର ଡାକନାମ ଦୀପକ। ପୁଣି ଆଉ ଗୋଟିଏ ନବଜାତକର ପିତାଙ୍କ ନାମ ବିଶ୍ୱନାଥ, ପିତାମହ ଚନ୍ଦ୍ରନାଥ, ପ୍ରପିତାମହ ପଞ୍ଚାନନ। ଶ୍ରୀଶ୍ରୀପିତୃଦେବ ଏଥରକ ନାମ ରଖିଲେ—ପୃଥ୍ୱୀଶ।

ରୋଗ-ବ୍ୟାଧିର କଥା ବି ଚାଲିଛି। ଜଣେ ମା'ଙ୍କର ଅଧା-କପାଳୀ ବ୍ୟଥା। ଶ୍ରୀଶ୍ରୀପିତୃଦେବଙ୍କୁ ନିବେଦନ କରିବାରୁ ସେ କହିଲେ—ମୁଣ୍ଡରୁ ପାଦପର୍ଯ୍ୟନ୍ତ ନଡ଼ିଆତେଲ ଲଗାଇ ସୂର୍ଯ୍ୟୋଦୟ ପୂର୍ବରୁ ଅବଗାହନ ସ୍ନାନ କରିବେ। କିଛିଦିନ କଲେ ହିଁ ଭଲ ହୋଇଯିବ।

ଜନୈକ ଭାଇ ଜଣାଇଲେ, ହାଇଡ୍ରୋସିଲ ଅପରେଶନ୍ କରାଇଛନ୍ତି ; କିନ୍ତୁ ଅପରେଶନ୍ ପରେ ମଧ୍ୟ ଭଲଫଳ ମିଳିନି।

ଶ୍ରୀଶ୍ରୀପିତୃଦେବ ତା' ଶୁଣି କହିଲେ—କଣ୍ଟିକାରୀର ଚେର ଦେଢ଼ତୋଳା ୬/୭ଟି ଗୋଲମରିଚ ସାଙ୍ଗରେ ବାଟି ଖାଇବ, ସୋଲା-ରୁଟି ଓ ଗୁଆଘିଅ ଖାଇବ। ଏହିଭାବରେ ୧୫ ଦିନ ଖାଇଲେ ଅବଶ୍ୟ ଫଳ ପାଇବ।

ଜଣେ ଭାଇର ସାମ୍ନାରେ ପରୀକ୍ଷା ; ପଢ଼ା ମନେ ରହୁନି, ସ୍ମୃତିଶକ୍ତି ଦୁର୍ବଳ। ଶ୍ରୀଶ୍ରୀପିତୃଦେବ ଶୁଣି ଲେଖି ନେବାକୁ କହିଲେ—ବ୍ରାହ୍ମିଶାଗର ରସ ୧ ତୋଳା, ଶତମୂଳିର ରସ ୧ ତୋଳା, ଜଟାମାଂସୀର ଗୁଣ୍ଡ ସୁଉକିତୋଳା, ସକାଳେ ୧ ପା ଈଷଦୁଷ୍ଣ ଦୁଧରେ ମିଶାଇ ଖାଇବାକୁ ହେବ।

ଉକ୍ତ ଭାଇ—କେତେଦିନ ଏପରି ଖାଇବାକୁ ହେବ ?

—ଖାଇଲେ ହିଁ ବୁଝିପାରିବ, କେତେଦିନ ଖାଇବାକୁ ହେବ। କିଛିଦିନ ଖାଇଲେ ହିଁ ଉପକାର ପାଇବ।

ଜଣେ ଭଉଣୀ ସଦ୍ୟ ଟାଇଫଏଡରୁ ଉଠିଛନ୍ତି। ସର୍ବାଙ୍ଗରେ କଳା କଳା ଦାଗ, ଦେହରେ ଯନ୍ତ୍ରଣା ବି ହୁଏ।

ଶ୍ରୀଶ୍ରୀପିତୃଦେବ ତା' ଶୁଣି କହିଲେ—ପ୍ରତିଦିନ ସକାଳବେଳା ଘୋଳଦହି ଖାଇବ, ଶଙ୍ଖଆଳୁ ଖାଇବ। ଦିନବେଳା ଦହି ଓ ରୁଟି। ରାତିରେ ବି ରୁଟି। ଭାତ (ଦିନବେଳା) ଖାଇଲେ କମ୍ ଖାଇବ। ଲୁଣ ଓ ମିଠା ଏକଦମ୍ ବାଦ୍। Complan ଖାଇପାର। ଏମିତି ଅଯଥା ଦୁଧ ଖାଇବନି—ପାଇଖାନା ପରିଷ୍କାର ନ ହେଲେ ଖାଇପାର।

ଜନୈକ ଭାଇଙ୍କର ଅମ୍ଳଶୂଳ ହୋଇଛି। ଶ୍ରୀଶ୍ରୀପିତୃଦେବ ବିଧାନ ଦେଲେ—ଶୁଣ୍ଠିଚୂର୍ଣ୍ଣ ୫ ତୋଳା, ବୀଟ ଲୁଣ ଅଢ଼େଇ ତୋଳା, ସୋହାଗାର ଖଇ ସଓ୍ବାତୋଳା, ମୁଲତାନୀ ହେଙ୍ଗୁ ୧୦ ଅଣା—ଏଗୁଡ଼ିକୁ ନେଇ ପ୍ରଥମେ ସଜନାଛାଲିର ରସ ୪ ଆଉନ୍ସ ଗୋଟିଏ ପାତ୍ରରେ ରଖିବ। ତା' ପରେ କିଛି ରସ ନେଇ ଭଲକରି ହେଙ୍ଗୁ ମିଶାଇବାକୁ ହେବ। ତାପରେ ବୀଟ୍‌ଲୁଣ ଚୂର୍ଣ୍ଣ ଭଲକରି ମିଶାଇବାକୁ ହେବ। ସବାଶେଷରେ ୫ ତୋଳା ଶୁଣ୍ଠିଚୂର୍ଣ୍ଣ ମିଶାଇନେବ। ସେଥିରେ ଯେତେଟିକେ ସଜନାର ରସ ଲାଗିବ ଦେବାକୁ ହେବ।

ମିଶ୍ରିତ ଔଷଧଟିକୁ ୨୭ ଭାଗ କରି ଗୋଟିଏ ଗୋଟିଏ ଭାଗରେ ଦୁଇଟି କରି ବଟିକା

ତିଆରି କରି ପଥର ଥାଳିରେ ରଖିଦେବ। ବଟିକାଗୁଡ଼ିକ ଶୁଖିଗଲେ (ଛାୟାରେ)–ପ୍ରତ୍ୟହ ଦୁଇଟି କରି ବଟିକା ଥଣ୍ଡାପାଣି ସହ ଖାଇବାକୁ ହେବ। ଏହି ଭାବରେ ୨୭ ଦିନ ଖାଇବ।

ପଥ୍ୟ ହେଲା–ସିଝା ଝୋଳ, ଭାତ (ପୁରୁଣା ଚାଉଳର), ମଝିରେ ମଝିରେ ଏକକପ କ୍ଷୀର। ସହଜପାଚ୍ୟ ପୁଷ୍ଟିକର ଖାଦ୍ୟ ଖାଇବାକୁ ହେବ। ଖଟା, ଲଙ୍କା, ଶାଗ ପ୍ରଭୃତି ସମ୍ପୂର୍ଣ୍ଣ ବାଦ୍ ଦେବାକୁ ହେବ।

ଜଣେ ମା'ଙ୍କ ମୁହଁରେ ଶ୍ୱେତୀ (ଧଳାଛଉ)। ମାଆଟି ପ୍ରଣାମ କରିବା ପରେ ମୁହଁ ଉଠାଇବା ସଙ୍ଗେ ସଙ୍ଗେ ଶ୍ରୀଶ୍ରୀପିତୃଦେବ ତା' ଦେଖି ଜିଜ୍ଞାସା କଲେ–ତୁମ ମୁହଁରେ ସାଦା ସାଦା (ଧଳା) ଦାଗ ଦେଖୁଛି–ଔଷଧ ବ୍ୟବହାର କରୁଛ ତ ?

ଉକ୍ତ ମାଆ–ଆଜ୍ଞା ହଁ, ଏଲୋପାଥିକ୍ ଚିକିତ୍ସା ଚାଲିଛି।

–ଚିକିତ୍ସାର ଫଳ ପାଉଛ ?

–ଆଗ ଅପେକ୍ଷା ରଙ୍ଗଟା ବଦଳିଛି। ଭଲ ହେବାକୁ କେତେଦିନ ଯେ ଲାଗିବ ବୁଝି ପାରୁନି।

–ଡାକ୍ତର କ'ଣ କହୁଛନ୍ତି ?

–ଔଷଧ ଦେଇଛନ୍ତି, ଖାଇବାକୁ କହିଛନ୍ତି।

–ଖାଦ୍ୟ କଣ ଖାଅ ?

ମା'ଟି ଶ୍ରୀଶ୍ରୀପିତୃଦେବଙ୍କ କଥା ଠିକ୍‌ଭାବେ ବୁଝିପାରି ନାହାଁନ୍ତି ଦେଖି ପାଖରୁ ଅଜିତ୍ ଭାଇ (ଗାଙ୍ଗୁଲୀ) ଉକ୍ତ ମା'ଙ୍କୁ କହିଲେ–ଆପଣ କଣ କଣ ଖାଦ୍ୟ ଖାଆନ୍ତି ?

–ସବୁ ଖାଦ୍ୟ ଖାଏ। ଭାତ, ରୁଟି, ତରକାରୀ, ମିଠା ସବୁଖାଏ।

ଶ୍ରୀଶ୍ରୀପିତୃଦେବ–ଆଉ ମାଛ, ମାଂସ, ଅଣ୍ଡା ଏସବୁ ?

–ଅଣ୍ଡା, ମାଂସ ଖାଏନା। ମାଛ ଖାଏ।

–ମାଛ ଖାଅ କାହିଁକି ?

–ଡାକ୍ତର ଖାଇବାକୁ କହିଛନ୍ତି।

ଶ୍ରୀଶ୍ରୀପିତୃଦେବ–ମାଛ-ମାଂସ, ଅଣ୍ଡା, ପିଆଜ-ରସୁଣ ଏକେବାରେ ବାଦ୍ ଦେବାକୁ ହେବ। ଏସବୁ ବାଦ୍ ନ ଦେଲେ ଏ ରୋଗ କୌଣସି ଦିନ ବି ଭଲ ହେବନି। ମୁଁ ଅନେକ ପରୀକ୍ଷା କରି ଦେଖିଛି।

ଉକ୍ତ ମା' ଏଥରକ ଜଣାଇଲେ–ଔଷଧ ଯାହା ବ୍ୟବହାର କରୁଛି ତା' କରିଯିବି ତ ?

ଶ୍ରୀଶ୍ରୀପିତୃଦେବ–ଫଳ ଯେତେବେଳେ ଭଲ ପାଉଛ, ସେତେବେଳେ ସେଇଆ କରିବା ତ ଭଲ। ତେବେ ଏହି ଯେ ଆମିଷ ଖାଅ, ତା' ଏକେବାରେ ବାଦ୍ ଦେବାକୁ ହେବ।

ମାଆଟି ଏଥରକ ମୁଣ୍ଡ ହଲାଇ (ସମ୍ମତି ପ୍ରକାଶ କରି) ପ୍ରଣାମ କରି ଗୋଟିଏ ପାଖକୁ ଯାଇ ବସିଲେ।

ଏହାପରେ ଜଣେ ମାଆ ଓ କେଇଜଣ ଭଉଣୀ ଶ୍ରୀଶ୍ରୀପିତୃଦେବଙ୍କୁ ଗୀତ ଗାଇ ଶୁଣାଇବାର ଅନୁମତି ପ୍ରାର୍ଥନା କରିବାରୁ ସେ ଗାଇବାର ଅନୁମତି ଦେଲେ।

ପରପର କେତୋଟି ଗୀତ ହେଲା । ପ୍ରଥମ ମା'ଟି ହାରମୋନିୟମ୍ ନେଇ ଗାଇଲେ । ଏହାପରେ ଦୁଇଭଉଣୀ ଦ୍ୱୈତକଣ୍ଠରେ ଗାଇଲେ—

'ହେ ଶୁଭ ବୈଶାଖ, ହେ ନବବର୍ଷ
ଆବାର ଏସେଛୋ ଫିରେ ।
........................।'

ସବାଶେଷର ରାଜଶ୍ରୀ ଦତ୍ତ ନାମରେ ଜଣେ ଭଉଣୀ ଗାଇଲେ ।

ଶ୍ରୀଶ୍ରୀପିତୃଦେବଙ୍କର ଉଠିବା ସମୟ ହୋଇଯାଇଛି । ସମବେତ ଭକ୍ତମଣ୍ଡଳୀ ତାଙ୍କୁ ପ୍ରଣାମ ଜଣାଇଲେ । ବିଛଣା ଉପରେ ଥିବା ହାତଘଡ଼ି ସେ ହାତରେ ବାନ୍ଧିଲେ । ହାତ ବଢ଼ାଇ ଚାଦରଟି କାନ୍ଧରେ ରଖିବାକୁ ଯିବେ, ଏପରି ସମୟରେ ଜଣେ ଭାଇ ପ୍ରଣାମ କରି ମୁଣ୍ଡ ଟେକି ତାଙ୍କ ଆଡ଼କୁ ଚାହିଁ ରହିଥିବାର ଦେଖାଗଲା ।

ଶ୍ରୀଶ୍ରୀପିତୃଦେବ କହିଲେ (ଭବାନୀ ଭାଇଙ୍କୁ ଲକ୍ଷ୍ୟ କରି)—ଏଇ, ଦେଖ୍ ଏ ଭାଇଟି କ'ଣ କହୁଛନ୍ତି ?

ଭବାନୀ ଭାଇ ତା' ପାଖକୁ ଯାଇ ସବୁଶୁଣି କହିଲେ—ସେ B. A. (Hons.) ପାଶ୍ କରିଛନ୍ତି । ବର୍ତ୍ତମାନ କଣ କରିବେ ଜାଣିବାକୁ ଚାହାନ୍ତି ।

ଶ୍ରୀଶ୍ରୀପିତୃଦେବ—କଣ କରିବ ମାନେ ? କଣ କରିବାକୁ ଚାହେ ?

ଭବାନୀ ଭାଇ—କହୁଛନ୍ତି, ଆପଣ ଯା' କହିବେ ସେଇଆ କରିବେ ।

—ମୁଁ କଣ କହିଦେବି ? ତାର କଣ ଇଚ୍ଛା ପଚାର । ଆଉ ପଢ଼ାଶୁଣା କରିବାର ଇଚ୍ଛା ଅଛି କି ନାହିଁ ପଚାର ।

—ଆଜ୍ଞା, ସେ କହୁଛନ୍ତି ଆପଣ ଯଦି ଇଚ୍ଛା କରନ୍ତି ତାହେଲେ M. A. ପଢ଼ିବେ ।

ଶ୍ରୀଶ୍ରୀପିତୃଦେବ ଖୁସି ହୋଇ କହିଲେ—ହଁ ହଁ, M. A. ପଢ଼ୁ । ଭଲ result (ଫଳ) କରିବାକୁ ହେବ ।

## ବୁଧବାର, ୨-ବୈଶାଖ, ୧୩୮୨ (ଇଂ ୧୭/୪/୭୫)

ପ୍ରାତଃକାଳୀନ ବିନତି-ପ୍ରାର୍ଥନା ପରେ ଶ୍ରୀଶ୍ରୀପିତୃଦେବ ବଡ଼ ନାଟମଣ୍ଡପରେ ବସିଥାନ୍ତି । ବହୁ ଭକ୍ତଜନ ତାଙ୍କ ଚତୁଃପାର୍ଶ୍ୱରେ ବସିଛନ୍ତି । ଆଜି ବି ପ୍ରଣାମର line ଖୁବ୍ ବଡ଼ । ଭାଇମାନଙ୍କ-ଲାଇନ୍‌ରେ ଭିଡ଼ ନିୟନ୍ତ୍ରଣ କରୁଛନ୍ତି ଶିବଦୟାଲ ଭାଇ, ବ୍ରଜଗୋପାଳ ଭାଇ ଓ ମଦନ ଭାଇ ଏବଂ ମା'ମାନଙ୍କଦିଗରେ ଏ କାମ କରୁଛନ୍ତି ଭବାନୀ ଭାଇ, ବୀଣାମା ଓ ଲକ୍ଷ୍ମୀଦି ।

ଆଜି ଅନେକେ ଘରକୁ ଫେରିଯିବାର ଅନୁମତି ପ୍ରାର୍ଥନା କରୁଛନ୍ତି । ଶ୍ରୀଶ୍ରୀପିତୃଦେବ ମୁଣ୍ଡହଲାଇ ସମ୍ମତି ଜଣାଉଛନ୍ତି—ହଁ, ସାବଧାନରେ ଯାଅ । ଏକ କଥା ତାଙ୍କୁ ବାରମ୍ବାର କହିବାକୁ ହେଉଛି ; ତେଣୁ ଏଥରକ ମାଇକ ଯୋଗେ ଘୋଷଣା କରାଗଲା—'ଯେଉଁମାନେ ଘରକୁ ଫେରିଯିବାକୁ ଚାହାନ୍ତି, ସେମାନେ ଯାଇପାରନ୍ତି । ଶ୍ରୀଶ୍ରୀବଡ଼ଦାଙ୍କର ଅନୁମତି ଦିଆଅଛି ।

ସ୍ୱତନ୍ତ୍ରଭାବେ ଅନୁମତି ନେବାର ପ୍ରୟୋଜନ ନାହିଁ।' ମାଇକରେ ଏକଥା ବାରମ୍ବାର କହିବା ସତ୍ତ୍ୱେ ବି କାହାରି ଆଶା ମେଣ୍ଟେନା—ପ୍ରତ୍ୟେକେ ଚାହାଁନ୍ତି ତାଙ୍କର ଶ୍ରୀମୁଖର ହସ ଟିକକ ଉପଭୋଗ କରିବାକୁ, ସୁମିଷ୍ଟ ହସଯୁକ୍ତ କେଇପଦ ସମସ୍ତ ହୃଦୟଭରି ନେବାକୁ। ବିପୁଳ ଜନସମାବେଶରେ ସତର୍କ ରହିବାପାଇଁ ଆଜି ବି ଗତକାଲି ପରି ମଝିରେ-ମଝିରେ ଘୋଷଣା ଚାଲିଛି—'ମା' ଓ ଭାଇମାନେ! ପ୍ରଣାମ କରନ୍ତୁ ଓ ଅନ୍ୟମାନଙ୍କୁ ପ୍ରଣାମର ସୁଯୋଗ ଦିଅନ୍ତୁ। ଛୋଟ-ଛୋଟ ପିଲାମାନଙ୍କ ପ୍ରତି ଦୃଷ୍ଟି ରଖନ୍ତୁ—ଟଙ୍କା-ପଇସା ଗହଣାଗାଣ୍ଠି ସାବଧାନରେ ରଖନ୍ତୁ।'

ଆସାମର ଜନୈକ କର୍ମୀ ପ୍ରଣାମ କରି ମୁଣ୍ଡଟେକି ଚାହିଁବା ସଙ୍ଗେ ସଙ୍ଗେ ସେ ପଚାରିଲେ—କଣରେ, ଖବର କଣ ? ବର୍ତ୍ତମାନ ସେଆଡ଼େ କାମଦାମ କିପରି ହେଉଛି ?

ଉକ୍ତ ଭାଇ—ଆଜ୍ଞା, ଆପଣ ସେଠାକୁ ଯିବା ପରଠାରୁ ଦୀକ୍ଷା-ସଂଖ୍ୟା ଖୁବ୍ ବଢ଼ିଯାଇଛି। ଆସାମର ବିଭିନ୍ନ ଅଞ୍ଚଳର କର୍ମୀମାନଙ୍କ ମଧ୍ୟରେ ଯୋଗାଯୋଗ ବି ବଢ଼ିଯାଇଛି।

(ଏଠାରେ ଉଲ୍ଲେଖଯୋଗ୍ୟ ଯେ ଗତ ଫେବୃୟାରୀ ୮ ତାରିଖରେ ଶ୍ରୀଶ୍ରୀପିତୃଦେବ ସଭକ୍ତ ସପରିବାର ଦେଓଘରରୁ ଆସାମ ଯାତ୍ରା ଏବଂ ଆସାମ ପରିକ୍ରମା କରି ମାର୍ଚ୍ଚ ୨୫ରେ ଦେଓଘରକୁ ଫେରି ଆସନ୍ତି)।

ଜନୈକା ମା ଶ୍ରୀଚରଣରେ ପ୍ରଣାମ ଜଣାଇ ସ୍ମିତ ହସି ପଚାରିଲେ—ବଡ଼ଦା ! ଭଲ ଅଛନ୍ତି ?

ଶ୍ରୀଶ୍ରୀପିତୃଦେବ—ତୁମେ ଭଲ ଅଛ ?

ଉକ୍ତ ମା—ଆପଣଙ୍କ ଆଶୀର୍ବାଦରେ ଭଲ ଅଛି।

—ମୁଁ ମଧ୍ୟ ତାଙ୍କରି (ଶ୍ରୀଶ୍ରୀଠାକୁରଙ୍କ) ଦୟାରେ ଏକପ୍ରକାର ଭଲ।

ଏଥର ମା'ଟି ତାଙ୍କ ପୁଅକୁ ଦେଖାଇ କହିଲେ—ଏଟି ମୋର ପୁଅ।

ଶ୍ରୀଶ୍ରୀପିତୃଦେବ ପିଲାଟିର ମୁହଁକୁ ଚାହିଁ କହିଲେ—ଖୁବ୍ ଭଲ।

ପୂଜନୀୟା ଶ୍ରୀମତୀ ପାରୁଲ ଚକ୍ରବର୍ତ୍ତୀ ଆଗେଇ ଆସିବା ସଙ୍ଗେ ସଙ୍ଗେ ଶ୍ରୀଶ୍ରୀପିତୃଦେବ ପାର୍ଶ୍ୱବର୍ତ୍ତୀ ନିର୍ଦ୍ଦିଷ୍ଟ ଆସନଟି ଦେଖାଇ ବସିବାକୁ କହିଲେ। ତାଙ୍କୁ ସେ (ଶ୍ରୀଶ୍ରୀପିତୃଦେବ) ମା-ମଣି ବୋଲି ଡାକନ୍ତି। ତାଙ୍କ ସହ ଗୋଟିଏ ପରେ ଗୋଟିଏ ବିଭିନ୍ନ ବିଷୟରେ କଥା ଆରମ୍ଭ ହେଲା।

ଭ୍ରାତୃଭକ୍ତି ନେଇ କଥା ଉଠିଲା। ଶ୍ରୀଶ୍ରୀପିତୃଦେବ ଲକ୍ଷ୍ମଣଙ୍କ ଭ୍ରାତୃଭକ୍ତିର ବିଷୟ-ଉଲ୍ଲେଖ କଲେ—ବନବାସରେ ଥିବାବସ୍ଥାରେ ରାମଚନ୍ଦ୍ର ଲକ୍ଷ୍ମଣଙ୍କୁ ଫଳମୂଳ ଅର୍ପଣ କରି କହୁଥିଲେ—ଧର ଲକ୍ଷ୍ମଣ। କେବେହେଲେ ଭୁଲରେ ସୁଦ୍ଧା କହି ନାହାଁନ୍ତି ଯେ ତୁମେ ଖାଅ ଲକ୍ଷ୍ମଣ। ଲକ୍ଷ୍ମଣ ବି ବଡ଼ଭାଇଙ୍କ କଥାନୁସାରେ ଧରି ରହିଥାନ୍ତି, ଖାଇବା କଥା ଭୁଲରେ ବି ମନରେ ଆଣନ୍ତି ନି। ଏଭଳି ଭାଇ ହେଲେ ଆପଣାଛାଏଁ (ବଡ଼ଭାଇର) ହୃଦୟରେ ସ୍ଥାନ ପାଇଥାଏ।

ଏ ଭାବରେ କଥା ଚାଲିଛି—ପୁଣି ଏହାରି ଫାଙ୍କେ-ଫାଙ୍କେ ସେ ଆଗନ୍ତୁକମାନଙ୍କର ବିବିଧ ପ୍ରଶ୍ନର ଉତ୍ତର ଦେଇଚାଲିଛନ୍ତି। ତାଙ୍କର ସୁମିଷ୍ଟ ଆଳାପନାରେ ସେମାନଙ୍କର ମନପ୍ରାଣ

ଭରି ଯାଉଛି ।

[ବ୍ରଜ ଭାଇ (ଗୁରୁ) ଜନୈକ ଭାଇଙ୍କୁ ଦେଖାଇ ଶ୍ରୀଶ୍ରୀପିତୃଦେବଙ୍କୁ ନିବେଦନ କଲେ—ଦୀକ୍ଷା ନେବାକୁ ଚାହାନ୍ତି, କିନ୍ତୁ ଭାବୁଛନ୍ତି ବାପା-ମାଙ୍କର ଅନୁମତି ନିଆ ହୋଇନି, ସେମାନେ ତ ଘରେ ଅଛନ୍ତି—ବର୍ତ୍ତମାନ କଣ କରିବେ ? ଦୀକ୍ଷା ନେବା କି ଠିକ୍ ହେବ ? ]

[ଶ୍ରୀଶ୍ରୀପିତୃଦେବ—(ଉକ୍ତ ଭାଇଙ୍କୁ ଲକ୍ଷ୍ୟ କରି) ରାସ୍ତାରେ ଯଦି କେଜିଏ ସୁନା ଗୋଟାଇ ପାଅ—କଣ କରିବ ? କିମ୍ବା ୫୦୦ ଟଙ୍କାର ଗୋଟାଏ ବାଣ୍ଡିଲ ରାସ୍ତା ମଝିରେ ଦେଖିଲେ—ସେତେବେଳେ କଣ ବାପା-ମାଙ୍କର ଅନୁମତି ନେଇ ଆସି ତା ସଂଗ୍ରହ କରିବ ? ନା ପ୍ରଥମେ ଗୋଟାଇ ନେଇ ବାପା-ମା'ଙ୍କୁ ସେ ଖବର ଦେବ ?]

[ଏଥରକ ଉକ୍ତ ଭାଇଟି ଦୀକ୍ଷା ନେବାକୁ ଚାହିଁଲେ । ଶ୍ରୀଶ୍ରୀପିତୃଦେବ ପୁନରାୟ କହିଲେ (ଉକ୍ତ ଭାଇଟିଙ୍କୁ)—କିନ୍ତୁ ଏଇ ସୁନା ବା ଟଙ୍କା ନେଇ ତୁମକୁ ତାର ପରବର୍ତ୍ତୀ ଅବସ୍ଥା ପାଇଁ ମଧ୍ୟ ପ୍ରସ୍ତୁତ ହେବାକୁ ପଡ଼ିବ । ଆଇନତଃ ଯା' କରଣୀୟ କରିବାକୁ ହେବ, ଚୋର-ଡକାଏତଙ୍କ ହାତରୁ ରକ୍ଷା ପାଇବାର ବ୍ୟବସ୍ଥା ମଧ୍ୟ ଠିକ୍ ରଖିବାକୁ ହେବ। ସେହିପରି ଦୀକ୍ଷା ନେଇ ମଧ୍ୟ ଯାହା ଯାହା କରଣୀୟ ଠିକ୍ ମୁତାବକ କରିଚାଲିବାକୁ ହେବ । ବାପା-ମା ଯେଉଁଥିରେ ଖୁସି ହୁଅନ୍ତି, ସେ ଦିଗରେ ମଧ୍ୟ ଲକ୍ଷ୍ୟ ରଖିବାକୁ ହେବ ।]

୬ଟା ବାଜି ୪୦ ମିନିଟ୍। ପଶ୍ଚିମ ବଙ୍ଗର ଭୂତପୂର୍ବ ମନ୍ତ୍ରୀ ଓ ଇଷ୍ଟଭ୍ରାତା ଶ୍ରୀଯୁକ୍ତ ଚାରୁମିହିର ସରକାର ଆସି ପ୍ରଣାମ କରି ଶ୍ରୀଶ୍ରୀପିତୃଦେବଙ୍କ ସମ୍ମୁଖରେ ବସିଲେ । କିଛିକ୍ଷଣ ପରେ ସେ ଘରକୁ ଫେରି ଯିବାର ଅନୁମତି ପ୍ରାର୍ଥନା କଲେ । ଶ୍ରୀଶ୍ରୀପିତୃଦେବ କହିଲେ—'ପୁଣି ଯେତେବେଳେ ସୁଯୋଗ ହେବ ଆସିବେ'। ଶ୍ରୀ ସରକାର ସମ୍ମତି ଜଣାଇ ପ୍ରଣାମ କରି ଉଠିଗଲେ ।

ପରେ ପରେ କେତୋଟି ନବଜାତକର ନାମକରଣ ହେଲା ।

ପୂର୍ବ-ପ୍ରସଙ୍ଗକ୍ରମେ ମା ମଣିଙ୍କ ଆଡ଼କୁ ମୁହଁ ବୁଲାଇ ପୁଣି ସେ କହିବାକୁ ଲାଗିଲେ—କାହାର ଭଲ ଦେଖିଲେ, ଭଲ ଚେହେରା, ଭଲ ପୋଷାକ—ମୁଁ ଖୁସି ହୁଏ, ଭଲ ଲାଗେ । ଭଲ ଘର, ଭଲ ଗାଡ଼ି--ଏସବୁ ଦେଖିଲେ ବି ଭଲଲାଗେ । ପୁଣି କାହାରି କିଛି ମନ୍ଦ ଦେଖିଲେ, କାହାକୁ ବିଶ୍ୱାସଘାତକତା କରିବାର ଦେଖିଲେ ବ୍ୟଥା ପାଏ ; ପିଲାବେଳୁ ହିଁ ମୋର ଧରଣ ଏ-ପ୍ରକାର । ପରମପିତାଙ୍କ ଇଚ୍ଛାରେ ହିଁ ମୋର ଏମିତି ପ୍ରକୃତି ।

ଇଷ୍ଟନିଷ୍ଠା ପ୍ରସଙ୍ଗରେ କହିଲେ—ଯେଉଁମାନେ ଠାକୁରଙ୍କର କାମ କରନ୍ତି ସେମାନଙ୍କର ଉପାୟ ଅବଶ୍ୟ ହୁଏ । ସେ-ହିଁ ବ୍ୟବସ୍ଥା କରନ୍ତି । ସେ-ତ ନାରାୟଣ । ତେଣୁ ତାଙ୍କ କର୍ମୀମାନେ ମଧ୍ୟ ତାଙ୍କ ଛଡ଼ା ଆଉ କିଛି ଚାହାନ୍ତି ନି। ଏଠାରେ ଯେଉଁମାନେ ଫିଲାନ୍‌ଥ୍ରପିରେ କାମ କରନ୍ତି ସେମାନେ ସାମାନ୍ୟ ପାଆନ୍ତି—ଠାକୁରଙ୍କ ବିଧାନ ମୁତାବକ ।

ଠାକୁର କହିଛନ୍ତି ଜୀବନ-ବୃଦ୍ଧି ହିଁ ଧର୍ମ । ମୁଁ ଠାକୁରଙ୍କ ପଥରେ ଚାଲିଛି ଅଥଚ ମୋତେ ଦେଖି କେହି ମୋ ପାଖକୁ ଆସେନା—ଏ କେବେ ବି ହୁଏ ନା । ମୋ ପାଖକୁ ଯଦି ଲୋକେ ନ ଆସନ୍ତି, ତେବେ ବୁଝିବାକୁ ହେବ ମନର ଖୋରାକ କେହି ପାଉ ନାହାନ୍ତି ।

ଦୁଇଟା ଜିନିଷ ଅଛି—ଆତ୍ମକେନ୍ଦ୍ରିକତା ଆଉ ଇଷ୍ଟକେନ୍ଦ୍ରିକତା । ଆତ୍ମକେନ୍ଦ୍ରିକତା ବାଦ୍ ଦେଇ ଇଷ୍ଟକେନ୍ଦ୍ରିକ ହେଲେ ହିଁ ସବୁ ମେଣ୍ଟିଯାଏ । ଏଇଟା ଯେତେ ସହଜ, ପୁଣି ସେତେ କଠିନ । କରିଲେ ହିଁ ହୁଏ—ଇଷ୍ଟଙ୍କ ପାଇଁ କରିଲେ ହିଁ ହୁଏ ।

କିଭଳି ଠାଙ୍କ ଦୟାରେ ସବୁ ସମ୍ଭବ ହୁଏ, ସେ ପ୍ରସଙ୍ଗରେ ଶ୍ରୀଶ୍ରୀପିତୃଦେବ କହିଲେ—ମୋର ଝିଅମାନଙ୍କର ବାହା ଦେଲେ (ପୂଜନୀୟା ମଞ୍ଜୁଳାଦି ଓ ପୂଜନୀୟା ଅଞ୍ଜଳିଦି)—ମୋର ତ କିଛି ନାହିଁ—ସବୁ ହିଁ ଲୋକମାନେ ବ୍ୟବସ୍ଥା କଲେ । ସେମାନେ ହିଁ ସବୁ ଯୋଗାଡ଼ କଲେ । ଠାକୁର ଥିବା ସମୟରେ ଯେପରି ଝିଅମାନଙ୍କର ବାହା ଦେଇଥିଲି, ଏଥରକ ବି ଠିକ୍ ସେମିତି । ପରପର ଦୁଇ ଝିଅଙ୍କର ବିବାହ ହେଲା । ଆମ୍ଭମାନଙ୍କର ଅର୍ଥସମ୍ପଦ ଯଥେଷ୍ଟ ନୁହେଁ, ତେବେ ଲୋକସମ୍ପଦ ଅଛି । ଠାକୁର କହିଛନ୍ତି—

"ମାନୁଷ ଆପନ ଟାକା ପର
ଯତ ପାରିସ୍ ମାନୁଷ ଧର ।"
(ମଣିଷ ଆପଣା ଟଙ୍କା ପର
ଯେତେ ପାରିବ ମଣିଷ ଧର ।)

ମଣିଷ ହିଁ ଅସଲ,—ସେହିଭାବରେ ଚାଲିଲେ ହିଁ ହେଲା । ଜୋର କରି କଣ ଭଲପାଇବା ଆଦାୟ କରିହୁଏ ? ଭଲପାଇବା ଆଦାୟ କରାଯାଏ କେବଳ ଭଲପାଇ । ଏଠାକୁ (ସତ୍‌ସଙ୍ଗ ଆଶ୍ରମ) ଯେଉଁମାନେ ଆସନ୍ତି ସେମାନେ ଭଲପାଇବାର ଟାଣରେ ହିଁ ଆସନ୍ତି । ସେମାନେ ଠାକୁରଙ୍କୁ ହିଁ ଭଲପାଆନ୍ତି— ତେଣୁ ଆସନ୍ତି ।

ଏଥର ଜନୈକ ଭାଇ ଜଣାଇଲେ, ସେ ବାର-ବାର M. A. ପରୀକ୍ଷାରେ ଅକୃତକାର୍ଯ୍ୟ ହେଉଛନ୍ତି ।

ଶ୍ରୀଶ୍ରୀପିତୃଦେବ ତା' ଶୁଣି କହିଲେ—ଯା' ପଢ଼ିବ, ଲେଖିବ । ଲକ୍ଷ୍ୟରଖ—ଯେଭଳି ବନାନ ଭୁଲ ନ ହୁଏ । ବାରମ୍ବାର ଲେଖିବ ଆଉ ପଢ଼ିବ, ପଢ଼ିବ ଆଉ ଲେଖିବ ।

ଅନ୍ୟ ଜଣେ ଭାଇ ଜଣାଇଲେ, ସେ ମାନସିକ ଅଶାନ୍ତିରେ ଭୋଗୁଛନ୍ତି । ଘରେ ଜମିବାଡ଼ି କିଛି ଅଛି, ମାଲି-ମକଦ୍ଦମା ଚାଲିଛି ।

ଶ୍ରୀଶ୍ରୀପିତୃଦେବ—ଜମିବାଡ଼ି ଥିଲେ ଅନେକ ସମୟରେ ଅଶାନ୍ତି ଆସେ । ଏଥିଲାଗି ଘାବଡ଼େଇଯିବା ଠିକ୍ ନୁହେଁ । ସବୁଆଡୁ ବିଚାର ବିବେଚନା କରି ଚାଲିବାକୁ ହୁଏ । ମାଲି-ମକଦ୍ଦମା ବିଷୟରେ ଭଲ (ଶୁଭାନୁଧ୍ୟାୟୀ) ଓକିଲ ପରାମର୍ଶ କରି ଯାହା ଯାହା କରଣୀୟ କରିବ । ଅସଲ କଥା, ଠାକୁରଙ୍କୁ ଲକ୍ଷ୍ୟକରି ଚାଲିବା । ତା'ହେଲେ ଆଉ ସବୁ ଠିକ୍ ହୋଇଯାଏ । ସେତେବେଳେ କାହା ସହିତ କିପରି ବ୍ୟବହାର କରିବାକୁ ହେବ, କାହା ସହିତ କି କଥା କହିବାକୁ ହେବ ସବୁ ଆପ୍ତେ ଆପେ ଠିକ୍ ହୋଇଯାଏ ।

ଉକ୍ତ ଭାଇ—ମନ ପ୍ରାୟ ହିଁ ଚଞ୍ଚଳ ହୁଏ ।

ଶ୍ରୀଶ୍ରୀପିତୃଦେବ—ଏଇ ତ କହିଲି । ମନ ତ ଚଞ୍ଚଳ ଥାଏ । ସେଥିରେ କ'ଣ ? ଆମେ ଜୀବନରେ କଣ ଚାହୁଁ ? ଆମେ ଚାହୁଁ ଶାନ୍ତି । ଅଶାନ୍ତି ଦୂର ହେଲେ ହିଁ ଶାନ୍ତି ଆସେ । ଏଥିଲାଗି

ମନକୁ ଶାନ୍ତ କରିବା ଦରକାର। ତାଙ୍କ ପଥରେ ଚାଲିଲେ, ତାଙ୍କର ସ୍ମରଣ-ମନନ କରିଲେ ହିଁ ମନ ଶାନ୍ତ ହୁଏ—ମନ କାରଣମୁଖୀ ହୁଏ। ଯିଏ ଶାନ୍ତ ସେ ହିଁ ସୁଖୀ।

—ଗୋଟାଏ ଲୋକ ପଛରେ ଲାଗି ରହିଛି।

—ସେମିତି ପ୍ରାୟ ଥାଏ ; ନିଜେ ସବୁଆଡ଼କୁ ଖିଆଲ ରଖି ଚାଲିଲେ ହିଁ ହେଲା।

ରୋଗ ବଇରାଗର କଥା ବି ଚାଲିଛି। ଜଣେ ଭାଇ ଜଣାଇଲେ—ପେଟରେ ଗ୍ୟାସ୍ ହୁଏ, pain (ଯନ୍ତ୍ରଣା) ବି ହୁଏ।

ଶ୍ରୀଶ୍ରୀପିତୃଦେବ—ଲୁଣ ଓ ମିଠା ଏକଦମ୍ ବାଦ୍ ଦେଇଦିଅ। ଅନ୍ୟାନ୍ୟ ଖାଦ୍ୟ ଯାହା ଖାଅ, ତା' ଅଳ୍ପ-ଅଳ୍ପ କରି ଖାଇବ ବାରେ ବାରେ। ଏପରି ଖାଇଲେ ପ୍ରଥମେ-ପ୍ରଥମେ ଦେହ ଦୁର୍ବଳ ଲାଗିପାରେ ; କିନ୍ତୁ କିଛିଦିନ ପରେ ପୁଣି ଠିକ୍ ହୋଇଯିବ।

—ଆଜ୍ଞା, ଏଇଥିରେ ଭଲ ହୋଇଯିବ ?

—ହଁ, ତୁମର ଶରୀର ତ ଭଲ। ମନେହୁଏ ଯେପରି କିଛି ହୋଇନି। ତେବେ ଏବେଠାରୁ ସାବଧାନ ହେବା ଉଚିତ। ନ ହେଲେ ମାରାତ୍ମକ କିଛି ହୋଇଗଲେ ସହଜରେ ଭଲ ହେବନି।

ଭାଇଟି ପ୍ରଣାମ ନିବେଦନ କରି ଅଦୂରରେ ଯାଇ ବସିଲେ।

ଏଥରକ କଥା-ପ୍ରସଙ୍ଗରେ ଶ୍ରୀଶ୍ରୀପିତୃଦେବ କହିଲେ—ଅଧିକାଂଶ ରୋଗର ସୃଷ୍ଟି ଖାଇବାଠାରୁ। ଖାଇବା ଠିକ୍ ରଖିଲେ ହିଁ ପାଇଖାନା ଠିକ୍ ହୁଏ। ବେଶି ଖାଇଲେ ଅଧିକାଂଶ କ୍ଷେତ୍ରରେ ପାଇଖାନା ବନ୍ଦ ହୋଇଯାଏ ; ସେତେବେଳେ ଭିତରେ ମଇଳା ଜମି tissue (ତନ୍ତୁ) କୁ affect (ଆକ୍ରମଣ) କରେ।

ଜଣୈକା ମା (ବୟସ ୩୦) ନିବେଦନ କଲେ ଯେ ତାଙ୍କର ୧୦ଟି ସନ୍ତାନ ଗର୍ଭାବସ୍ଥାରେ ନଷ୍ଟ ହୋଇଯାଇଛି ; ଗୋଟିଏ ବି ସନ୍ତାନ ନାହିଁ।

ଶ୍ରୀଶ୍ରୀପିତୃଦେବ ଜୀତେନ ଭାଇଙ୍କୁ (ଦେବବର୍ମ୍ମନ) ଔଷଧ ଦେବାକୁ ନିର୍ଦ୍ଦେଶ ଦେଲେ ; ପୁଣି କହିଲେ—'ସଂଯମୀ ହୋଇ ରହିବାକୁ ହେବ—ସ୍ୱାମୀ-ସ୍ତ୍ରୀ ସମ୍ପୂର୍ଣ୍ଣ ସ୍ୱତନ୍ତ୍ରଭାବେ ଯେପରି ରହ, ଅନ୍ତତଃ ଔଷଧ ଯେତେଦିନ ଚାଲିବ। ତା' ପରେ ଗର୍ଭରେ ସନ୍ତାନ ଆସିଲେ ପୁଣି ଯେପରି ଆସ—ସେତେବେଳେ ଔଷଧ କହିଦେବି।

ଉକ୍ତ ମା—ତାହେଲେ ତାଙ୍କ (ଜୀତେନ ଭାଇ) ନିକଟରୁ ଔଷଧ ନେଇଯିବି ?

ଶ୍ରୀଶ୍ରୀପିତୃଦେବ—ହଁ, ତା ପାଖରେ ମୋର ସମସ୍ତ ଔଷଧ କୁହାଅଛି। ପରେ ପୁଣି ଆସିଲେ ଅନ୍ୟ ଔଷଧ କହିଦେବି।

ବ୍ରଜ ଭାଇ (ଗୁରୁ) ଜଣେ ଭାଇଙ୍କୁ ଦେଖାଇ ଶ୍ରୀଶ୍ରୀପିତୃଦେବ କହିଲେ—ଏ ଭାଇ ଗ୍ରାମଶୀତଳାଙ୍କ ପାଖରେ ବଳି ଦେବେ ବୋଲି ମାନସିକ କରିଥିଲେ, ବର୍ତ୍ତମାନ କଣ କରିବେ ଜାଣିବାକୁ ଚାହାଁନ୍ତି।

ଶ୍ରୀଶ୍ରୀପିତୃଦେବ—ପୁରୋହିତ ହାତରେ ବୋଦାର ମୂଲ୍ୟ ଦେଇଦେବ—କହିବ ମାନସିକ ଥିଲା। ବୋଦା ମାନସିକ ଥିଲା ବୋଲି କହିବା ଦରକାର ନାହିଁ।

ଜିଜ୍ଞାସୁମାନଙ୍କର ଶେଷ ହୁଏ ନା ; ଜଣେ-ଜଣେ ଆସି ତାଙ୍କ ପାଖରେ ପଚାରିଚାଲିଛନ୍ତି

ଗୋଟିକ ପରେ ଗୋଟିଏ ବିଷୟ। ତେଣୁ ଆଜି 'ପାଠ' ହେବାକୁ ଡେରି ହେଲା।

୭/୪୦ ମି:ରେ 'ସତ୍ୟାନୁସରଣ' ପାଠ ହେଲା।

''ଧୈର୍ଯ୍ୟଧର ବିପଦ କଟିଯିବ।''

ଏହା ପରେ 'ଧୃତି-ବିଧାୟନା' (୧ମ ଖଣ୍ଡ, ବାଣୀ—ନଂ ୧୬୫)ରୁ ପାଠ କରି ଶୁଣାଇଲେ ଶ୍ରୀ ପଣ୍ଡିତ ଭାଇ (ଗୁରୁପ୍ରସନ୍ନ ଭଟ୍ଟାଚାର୍ଯ୍ୟ)—

''ଅସ୍ୱସ୍ତିର କାରଣ ଯାହା କିଛି
ତାକୁ ଅପନୋଦନ କରି
ସ୍ୱସ୍ତିରେ ସଂସ୍ଥ ହେବା ହିଁ ଶାନ୍ତି ;
ଅବଶ୍ୟ ଯେ ଅସ୍ୱସ୍ତି ମଣିଷର ଈପ୍ସିତ,
ତା' ସ୍ୱସ୍ତି ଓ ଶାନ୍ତି-ପଛୀ ହିଁ।''

ଗତକାଲିର ସେଇ ଧୋତି-ପଞ୍ଜାବୀ ପିନ୍ଧା ପିଲାଟି (ବୟସ ୪/୫ ବର୍ଷ) ପାଖକୁ ଆସି ହାତଯୋଡ଼ କରି ଶ୍ରୀଶ୍ରୀପିତୃଦେବଙ୍କୁ ଭୂମିଷ୍ଠ ହୋଇ ପ୍ରଣାମ ଜଣାଇଲା। ଏହା ପରେ ମୁଣ୍ଡ ହଲାଇ ତାଙ୍କ ମୁହଁକୁ ଚାହିଁ ଅସ୍ପଷ୍ଟ ସ୍ୱରରେ କହିଲା—ବ-ଡ଼-ଦା ଆଜି ଘରକୁ ଯାଉଛି।

ଶ୍ରୀଶ୍ରୀପିତୃଦେବ ଏଥରକ ସ୍ମିତହସି ଉତ୍ତର ଦେଲେ—ହଁ, ଆସ।

ପିଲାଟିର ମା' ଆସି ପିଲାଟିକୁ ନେଲେ ଏବଂ ପୁଣି ପ୍ରଣାମ କଲେ।

ପ୍ରାୟ ୮ଟା ବାଜେ। ଶ୍ରୀଶ୍ରୀପିତୃଦେବ ସମ୍ମୁଖସ୍ଥ କର୍ମୀମାନଙ୍କ ଆଡ଼େ ଚାହିଁ ପଚାରିଲେ ଆଜି ଋତ୍ୱିକ୍-ସମ୍ମେଳନ ନା ?

ଶ୍ରଦ୍ଧେୟ ନନୀଦା (ଚକ୍ରବର୍ତ୍ତୀ)—ଆଜ୍ଞା ହଁ, ସକାଳ ୮ଟାରେ ଆରମ୍ଭ ହେବ।

ଶ୍ରୀଶ୍ରୀପିତୃଦେବ—ତା'ହେଲେ ଯାଆନ୍ତୁ—ଆଉ ତ ଡେରି ନାହିଁ।

ନନୀଦା—ଆଜ୍ଞା।

କର୍ମୀଗଣ ତାଙ୍କୁ ପ୍ରଣାମାନ୍ତେ ଉଠିଲେ—ଯାତ୍ରା ଆରମ୍ଭ କଲେ 'ଫିଲାନ୍‌ଥ୍ରପି' ଅଫିସ ଆଡ଼କୁ। ଏହି ଋତ୍ୱିକ୍-ଅଧିବେଶନ (୧୪୮ ତମ) ଫିଲାନ୍‌ଥ୍ରପିର ଦ୍ୱିତଳରେ ହେବ।

## ବୈଶାଖ-୫, ଶନିବାର, ୧୩୮୨ (ଇଂ ୧୯/୪/୭୫)

ବିଗତ ନବବର୍ଷ ଉତ୍ସବ ଉପଲକ୍ଷେ ବହିରାଗତ ଅନେକେ ବିଦାୟ ନେଉଛନ୍ତି। ଆଶ୍ରମସ୍ଥ କର୍ମୀସକଳ ପ୍ରାୟ ଅଛନ୍ତି।

ଠାକୁରବଙ୍ଗଳାରେ ଶ୍ରୀଶ୍ରୀପିତୃଦେବଙ୍କ ଉପସ୍ଥିତିରେ ଆଜି ବି ୫ଟା ୨୭ ମିନିଟ୍‌ରେ ସମବେତ ବିନତି-ପ୍ରାର୍ଥନା ଆରମ୍ଭ ହେଲା। ପ୍ରାର୍ଥନାନ୍ତେ ଯଥାରୀତି ପ୍ରଣାମାଦି ପରେ ଉପସ୍ଥିତ ଭକ୍ତମଣ୍ଡଳୀ ଶ୍ରୀଶ୍ରୀପିତୃଦେବଙ୍କୁ ବେଷ୍ଟନକରି ବସି ରହିଛନ୍ତି। ସତ୍ୟାନୁସରଣ ପାଠ ଆରମ୍ଭ ହେଲା—

''ସଂଯତ ହୁଅ, କିନ୍ତୁ ନିର୍ଭୀକ ହୁଅ।''

ଗୁରୁକିଙ୍କର ଭାଇ ପରମପ୍ରେମମୟ ଶ୍ରୀଶ୍ରୀଠାକୁରଙ୍କର ଏହି ବାଣୀଟି ପାଠ କରିବା

ପରେ ହିନ୍ଦି, ଓଡ଼ିଆ, ଅସମୀୟା ଓ ଇଂରାଜୀରେ ଯଥାକ୍ରମେ ଲାଲ ଭାଇ (ରାମନନ୍ଦନ ପ୍ରସାଦ), ଗୋବର୍ଦ୍ଧନ ଭାଇ, ଡା: ପ୍ରଶାନ୍ତ ଭାଁଇ ଓ ପଣ୍ଡିତ ଭାଇ ପାଠ କରିଲେ।

ଏହାପରେ ଶ୍ରୀଶ୍ରୀପିତୃଦେବଙ୍କ ନିର୍ଦ୍ଦେଶରେ ବାଣୀଟିର ଆଲୋଚନା ଆରମ୍ଭକଲେ ଗୋବର୍ଦ୍ଧନ ଭାଇ।

—ସଂଯତ ହେବା ମାନେ ଗୁରୁଜନମାନଙ୍କ ନିକଟରେ ଯେପରିଭାବେ କଥା କହିବା ଦରକାର ସେପରିଭାବରେ କହିବା। ବିନୟ ସହକାରେ ସେମାନଙ୍କ କଥା ମାନିବା।

ଶ୍ରୀଶ୍ରୀପିତୃଦେବ—ନିର୍ଭୀକ ହେବା ମାନେ କଣ ?

ଗୋବର୍ଦ୍ଧନ ଭାଇ—ନିର୍ଭୀକ ହେବା ମାନେ ଭୟଶୂନ୍ୟ ହେବା।

ଶ୍ରୀଶ୍ରୀପିତୃଦେବ—ତା'ହେଲେ ସଂଯତ ହେବା ଏବଂ ନିର୍ଭୀକ ହେବା—ଏଇ ଦୁଇକଥା ମଧ୍ୟରେ ସମ୍ପର୍କ କଣ ?

—ଆଜ୍ଞା, ସଂଯତ ନ ହେଲେ ନିର୍ଭୀକ ହୋଇ ହୁଏନା।

—ସଂଯତ ହେବାଟା କେମିତି ?

—ସଂଯତ ହେଲେ ଉଚ୍ଛୃଙ୍ଖଳତା ରହେ ନା। ଯେଭଳି, ମୋତେ ଯଦି କେହି କିଛି କୁହେ, ମୁଁ କ୍ରୁଦ୍ଧ ହୋଇ ଉଠିବିନି।

ଗୁରୁକିଙ୍କର ଭାଇ—ସବୁ ଅବସ୍ଥାରେ କଣ ମୋତେ ନୀରବରେ ସହ୍ୟ କରିବାକୁ ପଡ଼ିବ ?

ଗୋବର୍ଦ୍ଧନ ଭାଇ—ନା, ତା' ନୁହେଁ। ମୋତେ ଯଦି କେହି କିଛି କୁହେ, ତେବେ ମୁଁ ସହ୍ୟ କରିବି ଏବଂ ବିନୀତ ରହିବି। ତା' ବୋଲି ମୋର ଇଷ୍ଟ-ସମ୍ବନ୍ଧରେ କେହି କିଛି ବାଜେକଥା କହିଲେ—ସେତେବେଳେ କିନ୍ତୁ ଛାଡ଼ିଦେବିନି।

ଶ୍ରୀଶ୍ରୀପିତୃଦେବ—ତା' ହେଲେ ସଂଯତ ହେଉଛି କେଉଁଠି ?

ଗୋବର୍ଦ୍ଧନ ଭାଇ—କ୍ରୋଧ ଭାବରୁ ସଂଯତ ହେବା କଥା କୁହାହେଉଛି।

ଶ୍ରୀଶ୍ରୀପିତୃଦେବ—ହଁ, ସେକଥା କହିପାର। କିନ୍ତୁ ଏ ଦୁଇଟି କଥା ଭିତରେ ସାମଞ୍ଜସ୍ୟ କଣ ? —ବୁଝି ହେଲାନି।

ଏହାପରେ ଶ୍ରୀଶ୍ରୀପିତୃଦେବ ପରମେଶ୍ୱର ଭାଇଙ୍କୁ 'ସଂଯତ୍ ହେବା' ଓ 'ନିର୍ଭୀକ ହେବା' ଦୁଇଟି ଭିତରେ କି ସମ୍ବନ୍ଧ, ବୁଝାଇ କହିବାକୁ ଆଦେଶ କଲେ।

ପରମେଶ୍ୱର ଭାଇ (ପାଲ)—ନାନା କାରଣରୁ ଆମେ ସଂଯତ ହେଉ। ହୁଏତ, ଉଦ୍ଧତ ହୋଇ କାହାକୁ କଟୁକଥା କହିଲି। କାହାର ମନରେ ଆଘାତ ଦେଲି, ପରେ ଏହି ଘଟଣା ସ୍ମରଣ କରି ସଂଯତ ହୁଏ। ସେତେବେଳେ ହୁଏତ ଆଉ କାହାକୁ ଏ ପ୍ରକାର ନ କହିବାକୁ ଚେଷ୍ଟା କରେ। ଏ ହେଲା ସଂଯତ ହେବା। ଅନେକ କ୍ଷେତ୍ରରେ ପୁଣି ଭୟରେ ସଂଯତ ହୁଏ। ହୁଏତ ଗୁରୁକିଙ୍କର ଭାଇ କିଛି ଅନ୍ୟାୟ କହିଲେ, କିନ୍ତୁ ମୁଁ ଦେଖିଲି ଗୁରୁକିଙ୍କର ଭାଇ ଖୁବ୍ ଶକ୍ତିଶାଳୀ ଲୋକ, ଭାରି ରାଗୀ ଲୋକ; ଏଣୁ କୌଣସି କଥାର ଉତ୍ତର ଦେଲିନି। ଆଉ ଗୁରୁଜନ ଯେଉଁମାନେ ସେମାନଙ୍କ ପାଖରେ ବି ଭୟରେ ସତ୍ୟ କଥା କହି ପାରେନା। ଏପରି ନ କହିବା, ନ କରିବା ହିଁ ସତ୍ୟର ଅପଳାପ ଘଟାଏ—ଯା' କୌଣସିମତେ ହେବା ଉଚିତ

ନୁହେଁ; ଯା ସତ୍ୟ ତା ଅକପଟଭାବେ ପ୍ରକାଶ କରିବା ହିଁ ନିର୍ଭୀକତା।

ଶ୍ରୀଶ୍ରୀପିତୃଦେବ—ଅନେକ ସମୟରେ ଆମେ ସଂଯତ ହେବାକୁ ଯାଇ ଯେଉଁଠି ଯାହା କରିବା ପ୍ରୟୋଜନ ତା' କରୁନା, ଯେପରିଭାବେ କରିବା ପ୍ରୟୋଜନ ତା' କରୁନା। ତା'ହେଲେ ସଂଯତ ହେବା ଆଉ ନିର୍ଭୀକ ହେବା—ଏ ଦୁଇଟା କଥା ଭିତରେ କୌଣସି contradiction (ବିରୋଧ) ଅଛି ନା କଣ (ପରମେଶ୍ୱର ଭାଇଙ୍କୁ ଲକ୍ଷ୍ୟ କରି)?

ପରମେଶ୍ୱର ଭାଇ—ଆଜ୍ଞା, ତା' ନୁହେଁ।

ଶ୍ରୀଶ୍ରୀପିତୃଦେବ—ହଁ, ମୋର ମନେ ହୁଏ ସଂଯତ ନ ହେବା ସେ କ୍ରୋଧ ବଶତଃ ହେଉ ବା ଅନ୍ୟ ଯେ କୌଣସି କାରଣରୁ ହେଉ—ତାର ତ ଗୋଟାଏ expression (ପ୍ରକାଶ) ଅଛି। ଏହି expression ଠାରୁ ସଂଯତ ହେବାକୁ କୁହା ହେଉଛି। ଯେପରି ଧର, କାହାକୁ କହିଲ (ଉଚ୍ଚ ସ୍ୱରରେ) କଣ ମହାଶୟ, କଣ କହୁଛନ୍ତି, ଏସବୁ କଣ କରୁଛନ୍ତି? —ଏଥିରେ ତୁମର ଔଦ୍ଧତ୍ୟ ହିଁ ପ୍ରକାଶ ପାଇଲା। ଏ ଧରଣର କଥା କହି ତାକୁ ତତେଇଦେଲ। ଏଥିରେ ତୁମର କୌଣସି ଲାଭ ହେଲାନି, ବରଂ କ୍ଷତି ହିଁ ହେଲା। କିନ୍ତୁ ତୁମେ ସଂଯତ ହୋଇ ଯଦି କହିଥାନ୍ତ—(ନରମ ସ୍ୱରରେ)—ଆପଣ ଏସବୁ କଣ କହୁଛନ୍ତି? ଆପଣଙ୍କ ପାଖରୁ ଏଭଳି କଥା ଆଶା କରିନି। ସେତେବେଳେ ସେ କହିଥାନ୍ତା, ରାଗମୁଣ୍ଡରେ କହି ପକାଇଛି, ଦୟାକରି କିଛି ମନେ କରିବେନି। ଏଥିରେ ଉଭୟଙ୍କର ହିଁ ଲାଭ। ସଂଯତ ହୋଇ କିଛି କହିଲେ ତାର action (କ୍ରିୟା) ହିଁ ଅନ୍ୟ ରକମ ହୁଏ—ସେଥିରେ ପରିବେଶ ବି ଉପକୃତ ହୁଏ। ଏକା କଥା ସେ କହିବାର ଧରଣ ଯୋଗୁଁ ରାଗ ବା ଔଦ୍ଧତ୍ୟ ପ୍ରକାଶ ପାଏ, ପୁଣି ମିଠାକରି କହିଲେ ସେହି କଥା ହିଁ ମଣିଷର ହୃଦୟ ସ୍ପର୍ଶକରେ। କେବଳ ମାତ୍ର ଯଥାର୍ଥ କଥା କହିବାରେ ଯେ ନିର୍ଭୀକତା ପ୍ରକାଶ ପାଏ ତା' ନୁହେଁ, ଯେଉଁଠି ଯେଭଳି ଯାହା କହିବା ବା କରିବା ପ୍ରୟୋଜନ, ସେଠାରେ ସେଭଳି ଠିକ୍ ଠିକଭାବେ କହିଲେ ଓ କରିଲେ, ତେବେ ଯାଇ ନିର୍ଭୀକତା ପ୍ରକାଶ ପାଏ।

ଯେ ନିର୍ଭୀକ ସେ ସଂଯତ ହିଁ ଥାଏ। ସମସ୍ତଙ୍କର ଯେଉଁଥିରେ ମଙ୍ଗଳ ହୁଏ, କଲ୍ୟାଣ ହୁଏ, ତାହା ହିଁ କରେ। ଅଯଥା ଶକ୍ତିର ଅପବ୍ୟବହାର କରେନା।

ବସନ୍ତାନ ଭାଇ (ସିଂ)—ଆମେ ସାଧାରଣତଃ ଜାଣୁ ଯେ ନିର୍ଭୀକ ବ୍ୟକ୍ତି ଯା' ଖୁସି ତା କରିପାରେ, କିନ୍ତୁ ଶ୍ରୀଶ୍ରୀଠାକୁର ଯେ ବାଣୀ ଦେଇଛନ୍ତି, ସେଥିରୁ ବୁଝାଯାଉଛି— ଯେ ନିର୍ଭୀକ ସେ ହିଁ ସଂଯତ ହୁଏ।

ଶ୍ରୀଶ୍ରୀପିତୃଦେବ—ଠାକୁର ଯେଉଁ ସବୁ ବାଣୀ ଦେଇଛନ୍ତି ମୋତେ ନିଜକୁ ସେ-ଭାବରେ ଗଢ଼ି ତୋଳିବାକୁ ହେବ—ଏ ବୋଧ ଆମ ପ୍ରତି-ପ୍ରତ୍ୟେକଙ୍କ ଭିତରେ ପକ୍କା ହେବା ଦରକାର। ଆମେ ରୋଜ 'ସତ୍ୟାନୁସରଣ' ପାଠ କରୁ, ଏ ବାଣୀଗୁଡ଼ିକ ଆମର ଚରିତ୍ରଗତ ହେବା ପ୍ରୟୋଜନ। ଠାକୁର ବାଣୀ ଦେଇଛନ୍ତି ମୋତେ (ଆମର) ତିଆରି ହେବାଲାଗି—ମୋର ଚରିତ୍ର ଗଠନ ପାଇଁ।

ପଣ୍ଡିତ ଭାଇ—ପରିବାର, ସମାଜ, ରାଷ୍ଟ୍ର ସମ୍ବନ୍ଧରେ ଠାକୁରଙ୍କର ଯାହା କୁହା ଅଛି,

ଅନେକେ କୁହନ୍ତି, ଏସବୁ କ'ଣ ବାସ୍ତବରେ ଚରିତ୍ରଗତ କରିବା ସମ୍ଭବ ?

ଶ୍ରୀଶ୍ରୀପିତୃଦେବ—ଏକଥା ଠାକୁରଙ୍କୁ ବି ଶୁଣିବାକୁ ହୋଇଛି ଅନେକଥର। ଠାକୁରଙ୍କ ପାଖରେ ସେତେବେଳେ ପ୍ରଫୁଲ୍ଲ (ଦାସ), ଦେବୀ (ମୁଖାର୍ଜୀ) ରହୁଥିଲେ। ଠାକୁର କହୁଥାନ୍ତି, ଆଉ ଏମାନେ ସବୁ ଲେଖୁଥାନ୍ତି। ଆହୁରି ଅନେକେ ବି ଥାଆନ୍ତି। ଠାକୁର ପ୍ରାୟ ସବୁ ସମୟରେ ହିଁ ବାଣୀ ଦେଉଥା'ନ୍ତି—ଏପରିକି ସ୍ନାନ-ପାଇଖାନା ସମୟରେ ବି କେବେ କେବେ ସେ କହିଚାଲୁଥାନ୍ତି। ଦିନେ ଠାକୁର ବାଣୀ ଦେଉଛନ୍ତି, ମାୟା ମାଉସୀମା' ଆସି କହିଲେ—'ତୁ ଯେ ଦିନରାତି ଏତେ ସବୁ ବାଣୀ କହିଚାଲିଛୁ ଏସବୁ କରିବ କିଏ ? ଏସବୁ ହେବ କ'ଣ ? କାହାପାଇଁ ଦେଉଛୁ ଏସବୁ ?' —ଏମିତି ପ୍ରାୟ ହିଁ କହୁଥା'ନ୍ତି। ଠାକୁରଙ୍କର ଏଥିରେ ଅସ୍ୱସ୍ତି ହିଁ ହେଉଥାଏ କିନ୍ତୁ କିଛି କହୁ ନ ଥାନ୍ତି। ସେଦିନ ମାୟା ମାଉସୀମା' ଏକଥା କହିବା ସଙ୍ଗେ ସଙ୍ଗେ ଠାକୁର ଉପସ୍ଥିତ ସମସ୍ତଙ୍କୁ ଜଣେ ଜଣେ କରି ପଚାରିଲେ—ବାଣୀଗୁଡ଼ିକ କାହା ପାଇଁ ? ସମସ୍ତେ କହିଲେ—ଏସବୁ ଆମ୍ଭମାନଙ୍କ ପାଇଁ। ତା'ପରେ ମୋତେ ଦେଖି ଠାକୁର ପଚାରିଲେ—ବାଣୀସବୁ କାହା ପାଇଁ ରେ ? ମୁଁ କହିଲି—ଆଜ୍ଞା, ମୋ ପାଇଁ। ଠାକୁର ସେବେ ମାୟା ମାଉସୀମା'ଙ୍କୁ କହିଲେ—ଏଇ ତ, ତା' ପାଇଁ ହିଁ ଦେଉଛି ; ସେଇ ସବୁ ପାଳନ କରିବ। (ଟିକିଏ ରହି) ଠାକୁର କହିଛନ୍ତି, ମୋର ଯାହା ଦେବାର ଦେଇଯାଉଛି, ଏସବୁ ଛପା ରହିବ। ଯଦି ଜଣେ ବି ଥାଏ, ସେ କରିବ। ଆଉ କେହିବି ଯଦି ନ ଥାଏ ତାହେଲେ ବାଣୀ ସବୁ ରହିବ—ଭବିଷ୍ୟତରେ ଯଦି କେହି ଆସେ ସେ ହିଁ କରିବ।

ବସନ୍ତ ଭାଇ (ସିଂ)—ଆଜ୍ଞା, ହଁ। ମାୟା ମାଉସୀମା'ଙ୍କର ସେକଥା ଆମେ ବି ଶୁଣିଛୁ।

ଶ୍ରୀଶ୍ରୀପିତୃଦେବ—ବାଣୀଗୁଡ଼ିକ ଯେ ପଢ଼ିବ ତା' ପାଇଁ। ଯେ ନେବ (ଅନୁଭବ କରିବ) ତା' ପାଇଁ। ଠାକୁର ଆମ ପ୍ରତ୍ୟେକଙ୍କ ପାଇଁ ବାଣୀଗୁଡ଼ିକ ଦେଇଛନ୍ତି—ଆମ୍ଭମାନଙ୍କ ମଙ୍ଗଳ ପାଇଁ। ଯେଉଁମାନେ ଭାବନ୍ତି ବାଣୀସବୁ ଆମ ସମସ୍ତଙ୍କ ପାଇଁ, ସେମାନେ ନିଜେ କରିବା କଥା ଭାବନ୍ତି ନି, ନିଜେ ଏଡ଼ାଇ ଚାଲିବାକୁ ଚାହାଁନ୍ତି। ଏଟା କୌଣସିମତେ ଠିକ୍ ନୁହେଁ। ଠାକୁର ସମସ୍ତଙ୍କ ମଙ୍ଗଳ ପାଇଁ ହିଁ ବାଣୀ ଦେଇଛନ୍ତି। ସମସ୍ତଙ୍କ ପାଇଁ ମାନେ କଣ ?—ସେ ସମସ୍ତଙ୍କର ପ୍ରଭୁ। ମୁଁ ଯେଉଳି ତାଙ୍କର ପୂଜା କରିପାରେ ସେଭଳି ଲକ୍ଷ ଲକ୍ଷ ଲୋକ ତାଙ୍କର ପୂଜା କରି ପାରନ୍ତି, କରନ୍ତି ବି ସେଇଆ। ଏଇ ପୂଜା କରିବା, ତାଙ୍କୁ ଭକ୍ତି କରିବା—ଏ ସବୁର expression ଅଛି। ଚଳନ-କଥନ, ଆଚାର-ଆଚରଣରେ ଏହି expression ଧରାପଡ଼େ।

ପଣ୍ଡିତ ଭାଇ—ଆଜ୍ଞା, ଆମ୍ଭମାନଙ୍କ ଭିତରୁ ଯେଉଁମାନେ ଠାକୁରଙ୍କ ସଙ୍ଗ କରିଛନ୍ତି, ଠାକୁରଙ୍କ ବହି ପଢ଼ିଛନ୍ତି, ଯେଉଁମାନେ ଠାକୁରବାଡ଼ୀ ଯିବା-ଆସିବା କରନ୍ତି, ସେମାନଙ୍କର ଆଚାର-ବ୍ୟବହାର ହିଁ ପାଲଟିଯାଇଛି। ଆମ ପରିଚିତ ଲୋକଙ୍କ ଭିତରେ ଦେଖୁଛି କେତେ ପରିବର୍ତ୍ତନ।

ଶ୍ରୀଶ୍ରୀପିତୃଦେବ ଖୁସି ହୋଇ କହିଲେ—ହଁ, ଠାକୁର ଏଇଆ ତ ଚାହିଁଛନ୍ତି। ମୁଁ

ଦେଖିଛି—ଏଇ ଯେ ଆମର ଉତ୍ସବ ହୁଏ, କେତେ ଦୂର-ଦୂରାନ୍ତରରୁ କେତେ ଲୋକ ଆସନ୍ତି—ଠାକୁରବାଡ଼ୀ ଆସିଲେ ହିଁ ସେମାନେ କିଛି ନା କିଛି ହାତରେ ନେଇ ଆସନ୍ତି। ଆଉ ଏଭାବେ ଆସିବା ହିଁ ଶାସ୍ତ୍ରୀୟ ବିଧି। ଏମିତି କୌଣସି ସାଧୁ-ଦର୍ଶନରେ ଗଲେ ବା ବାହାରେ ଯେ କୌଣସିଠାକୁ ଗଲେ କିଛି ନା କିଛି ନେଇ ଯିବାକୁ ହୁଏ। ଏଭଳି ଯେ କରେ ତାର ହିଁ ମଙ୍ଗଳ। ପ୍ରଣାମ କରିବା ବେଳରେ ବି ସେଇକଥା। ଅନେକେଇ ପୁଅ-ଝିଅ ନେଇ ଠାକୁର-ପ୍ରଣାମ କରେ, ପ୍ରତ୍ୟେକଙ୍କ ହାତରେ କିଛି ନା କିଛି ଦେଇ ତେବେ ଯାଇ କରେ। ହୁଏତ ସ୍ୱାମୀ-ସ୍ତ୍ରୀ ନିଜେ ପ୍ରଣାମୀ ଦେଇ ପ୍ରଣାମ କଲେ, ପୁଅ-ଝିଅ ପ୍ରତ୍ୟେକଙ୍କ ହାତରେ ବି କିଛି କିଛି ଦେଇ ପ୍ରଣାମ କରିବାକୁ କହିଲେ। ଏଭଳି କରିବା ହିଁ ଆଦର୍ଶ। ଏଥିରେ ହିଁ ମଙ୍ଗଳ—କେହି ବୁଝୁ ବା ନ ବୁଝୁ।

ପରମେଶ୍ୱର ଭାଇ—ଠାକୁର ଶ୍ରୀଶ୍ରୀରାମକୃଷ୍ଣଦେବ ମଧ୍ୟ ଏଭଳି କଥା କହିଛନ୍ତି।

ଶ୍ରୀଶ୍ରୀପିତୃଦେବ ପରମେଶ୍ୱର ଭାଇଙ୍କ କଥାରେ ସମ୍ମତି ଜଣାଇ କହିଲେ— ଶ୍ରଦ୍ଧା-ଭକ୍ତି ହେଲା ଅନ୍ତରର ଜିନିଷ। ଏସବୁ ବଢ଼ାଇ ତୋଳିବା ଦରକାର। ବାସ୍ତବଭାବେ କରିବା ଭିତର ଦେଇ ତା' ବଢ଼ିଉଠେ। ବାସ୍ତବଭାବେ କରିବା ମାଧ୍ୟମରେ ହିଁ ଶ୍ରଦ୍ଧା-ଭକ୍ତିର କର୍ଷଣ ହୁଏ ହୃଦୟ-ଭୂମିରେ।

୯ଟା ବାଜି ୪୭ ମିନିଟ। ''ଧୃତି-ବିଧାୟନା'' (୧ମ ଖଣ୍ଡ) ହାତରେ ନେଇ ଏଥରକ ପଣ୍ଡିତ ଭାଇ ଶ୍ରୀଶ୍ରୀପିତୃଦେବଙ୍କ ମୁହଁଆଡ଼େ ଚାହିଁ କହିଲେ—ଏଥରକ ପଢ଼େଁ ?

ଶ୍ରୀଶ୍ରୀପିତୃଦେବ—ହଁ, ପଢ଼୍।

୨୧୨ ନଂ ବାଣୀଟି ପଢ଼ିଚାଲିଛନ୍ତି ପଣ୍ଡିତ ଭାଇ—

''ତୁମେ ଯଦି ସୁକେନ୍ଦ୍ରିକ, ସୁଷ୍ଠୁ ସମାଧାନ-ତତ୍ପର ନ ହୋଇଉଠ,
ଉପଚୟୀ ନିଷ୍ପନ୍ନତାକୁ
ଦକ୍ଷକୁଶଳ ତତ୍ପରତାରେ
ସାର୍ଥକ ନ କରିତୋଳ—
ଉପଚୟୀ ଶ୍ରେୟ ସଂଶ୍ରୟୀ କରି,—
ତୁମର ଅଳସ ସାଧୁତା
ବିଲୋଳ ବ୍ୟର୍ଥତାରେ
ଦ୍ୟୁତୟରେ ଅବସନ୍ନ ହୋଇପଡ଼ିବ—
ଜୀବନର ସାର୍ଥକ-ସନ୍ଦୀପନାରୁ ବଞ୍ଚିତ ହୋଇ ;
ତେଣୁ ନିଜେ କର,
ଅନ୍ୟକୁ ମଧ୍ୟ ନନ୍ଦିତ କର ତାଙ୍କଠାରେ,
କରିବାରେ ପ୍ରଣୋଦିତ କର,
ଆହୁରି କରିବା ପଥରେ ଚାଲ,
ଆୟର କରିବାକୁ ଅନୁପ୍ରାଣିତ କର,

ସାମର୍ଥ୍ୟାନୁପାତିକ ଯା' ପାର—ଦିଅ,
ଆଉ, ସାମର୍ଥ୍ୟ-ସଂରକ୍ଷଣରେ ଅନ୍ୟ ନିକଟରୁ ନିଅ—
କାହାରିକୁ କୌଣସି-ପ୍ରକାରେ ଘୃଣା ନ କର,
ଯଜନ, ଯାଜନ, ଅଧ୍ୟୟନ, ଅଧ୍ୟାପନା ଦାନ, ପ୍ରତିଗ୍ରହର
ସାରମର୍ମ ହିଁ ସେଠାରେ।''

ବାଣୀଟି ଆଲୋଚନା ହେବା ପରେ ପାଠ ଶେଷ ହେଲା। ପ୍ରତୀକ୍ଷମାଣ ଭକ୍ତମଣଳୀର ଏକାଂଶ ଏଥରକ ଆଗେଇ ଆସିଲେ ଶ୍ରୀଶ୍ରୀପିତୃଦେବଙ୍କ ସମ୍ମୁଖକୁ।

ଜଣେ ଭାଇଙ୍କର କୋଷ୍ଠକାଠିନ୍ୟ। କୋଷ୍ଠକାଠିନ୍ୟଜନିତ ବ୍ୟାଧିର ଉପସର୍ଗ ବି ଦେଖା ଦେଇଛି। କୌଣସି ଔଷଧର ସ୍ଥାୟୀଫଳ ମିଳିନି।

ଶ୍ରୀଶ୍ରୀପିତୃଦେବ ସବୁ ଶୁଣି କହିଲେ—'ସ୍ୱସ୍ତିଚୂର୍ଣ୍ଣ' (ସ୍ୱସ୍ତିବାହିନୀ ଶିବିରରେ ପ୍ରସ୍ତୁତ) ଖାଲିପେଟରେ ରୋଜ ସକାଳେ ଏକଚାମଚ କରି ଥଣ୍ଡାପାଣି ସହ ଖାଇବ। ଆଉ, ଲଘୁପାଚ୍ୟ ଆହାର ଗ୍ରହଣ କରିବ। ଟିକିଏ କମ କରି ଖାଇବ। କିଛିଦିନ ଏଭାବରେ ଚଳିଲେ ହିଁ ସବୁ ଠିକ୍ ହୋଇଯିବ।

ଉକ୍ତ ଭାଇ—ବଡ଼ଦା, କେତେଦିନ ଖାଇବାକୁ ହେବ ?

ଶ୍ରୀଶ୍ରୀପିତୃଦେବ—ଖାଇଲେ ହିଁ ବୁଝିପାରିବ କେତେଦିନ ଖାଇବାକୁ ହେବ।

ଜଣେ ଭାଇଙ୍କର ଝିଅର ହାତ ଲେଖିବାକୁ ବସିଲେ ହିଁ ପ୍ରାୟ ଝାଳେଇ ଯାଏ, ଲେଖି କରେନା।

ଶ୍ରୀଶ୍ରୀପିତୃଦେବ ଜୀତେନ୍ ଭାଇଙ୍କୁ (ଦେବବର୍ମନ) ନିମ୍ବଫଳରୁ ତିଆରି ଔଷଧଟି ଦେବାକୁ କହିଦେଲେ। ଜୀତେନ୍ ଭାଇ ଉକ୍ତ ଭାଇଟିଙ୍କୁ ଔଷଧ ନେଇଯିବାକୁ କହିଲେ।

ଜଣେ ଭାଇଙ୍କର ପେଟରେ ବ୍ୟଥା, ଅମ୍ଳ ବି ହୁଏ। ଶ୍ରୀଶ୍ରୀପିତୃଦେବ ଜୀତେନ୍ ଭାଇଙ୍କୁ ଅମ୍ଳଶୂଳର ଔଷଧ କହିଦେବାକୁ ନିର୍ଦ୍ଦେଶ ଦେଲେ।

ଉକ୍ତ ଭାଇ—ଆଜ୍ଞା, ପଥ୍ୟ କ'ଣ ହେବ ?

ଶ୍ରୀଶ୍ରୀପିତୃଦେବ—ଶାଗ, ରାଗ, ଖଟା, ଡାଲି, କଞ୍ଚା ତେଲ, ଚିନି, ଗୁଡ଼ ଏସବୁ ଖାଇବନି। ଝୋଳ-ଭାତ (ଆଳୁ-ପୋଟଳ ବା ଆଳୁ-ଜହ୍ନି-ବାଇଗଣ ପ୍ରଭୃତିର ଝୋଳ) ଖାଇବ। ଝୋଳରେ ତେଲ-ମସଲା ଆଦୌ ଦେବନି, ସାମାନ୍ୟ ଟିକିଏ ଘିଅର ଫୁଟଣ ତରକାରୀ ଓହ୍ଲାଇବା ଆଗରୁ ଦେଇପାର। ଦୁଧ-ଭାତ ମଧ୍ୟ ଖାଇବା ଭଲ। ଭୋକ ରଖି ଖାଦ୍ୟ ଖାଇବ।

ଜଣୈକା ବୟସ୍କା ମାଆ ଶ୍ରୀଶ୍ରୀପିତୃଦେବଙ୍କୁ ନିବେଦନ କଲେ—ତାଙ୍କର ପ୍ରାୟ ହିଁ ମୁଣ୍ଡବୁଲାଏ। ଭୋକ ହୁଏନା। ଅନେକ ସମୟ ମୁହଁରେ ଗୋଟାଏ ପିତା-ପିତା ଭାବ। ଡାକ୍ତର କହିଛନ୍ତି—ଭିତରେ କଫ ବସିଯାଇଛି।

ଶ୍ରୀଶ୍ରୀପିତୃଦେବ—ତ୍ରିଫାଳୀ (ସ୍ୱସ୍ତିସେବକଙ୍କ ଦ୍ୱାରା ପ୍ରସ୍ତୁତ) ନିୟମିତ କେତେକ ଫାଇଲ ବ୍ୟବହାର କରିବେ। ଏଥିରେ ହିଁ ଫଳ ପାଇବେ।

ଏହିଭାବେ ଜଣକ ପରେ ଜଣେ ରୋଗ-ବ୍ୟାଧିର କଥା କହିଚାଲିଛନ୍ତି— ସେ ଉପଯୁକ୍ତ

ବ୍ୟବସ୍ଥା ଦେଇଚାଲିଛନ୍ତି । ପୁଣି ମଝିରେ ମଝିରେ ଅନ୍ୟମାନଙ୍କର ନାନାବିଧ ସମସ୍ୟା ସମାଧାନର ପଥ ବତାଇ ଦେଉଛନ୍ତି ।

ଜଣେ ଭାଇ B. Sc. ପାଶ୍ କରିଛନ୍ତି Hons. ନେଇ । କ'ଣ କରିବେ ବୋଲି ପଚାରିଲେ ।

ଶ୍ରୀଶ୍ରୀପିତୃଦେବ—ସୁବିଧା ପାଇଲେ M. Sc. ପଢ଼ିବ ।

ଜଣେ ଭଉଣୀ ଏବର୍ଷ ଉଚ୍ଚ-ମାଧ୍ୟମିକ (Higher Secondary) ପରୀକ୍ଷା ଦେଇଛନ୍ତି । ଶ୍ରୀଶ୍ରୀପିତୃଦେବଙ୍କର ଆଶୀର୍ବାଦ ପ୍ରାର୍ଥନା କଲେ—ଶ୍ରୀଶ୍ରୀପିତୃଦେବ ମୁଣ୍ଡହଲାଇ ଆଶୀର୍ବାଦ ଜଣାଇଲେ ।

ଦୁଇଟି ଭଉଣୀ ଦୀକ୍ଷା ନେବାକୁ ଚାହାନ୍ତି ।

ଶ୍ରୀଶ୍ରୀପିତୃଦେବ—କାହା ସାଙ୍ଗରେ ଆସିଛନ୍ତି ?

ଜୀତେନ୍ ଭାଇ—ଆଜ୍ଞା, ପଡ଼ିଶାଘରର ମା'ଙ୍କ ସହ ଆସିଛନ୍ତି ।

ଶ୍ରୀଶ୍ରୀପିତୃଦେବ—ବାପା-ମାଙ୍କର ମତ ଅଛି ?

ସେମାନେ ଜଣାଇଲେ ଯେ ସେମାନଙ୍କ ବାପା-ମାଙ୍କର ମତ ଅଛି । ଶ୍ରୀଶ୍ରୀପିତୃଦେବ ଦୀକ୍ଷାଦାନର ସମ୍ମତି ଜଣାଇଲେ ।

କଥାର ମଝିରେ-ମଝିରେ ପୁଣି କେତୋଟି- ନାମକରଣ ହେଲା । ନବଜାତକର ବାପା-ମା ସେମାନଙ୍କର ସନ୍ତାନର ନାମକରଣ ଅନେକ ସମୟରେ ଏହିଠାରୁ ହିଁ କରି ନେଇ ଯାଆନ୍ତି । ପରମଦୟାଲ ଶ୍ରୀଶ୍ରୀଠାକୁରଙ୍କ ସମୟରେ ବି ଏହିପରି ହେଉଥିଲା । ନବ-ଜାତକର ବାପା-ମା କିମ୍ବା ଆତ୍ମୀୟମାନେ ଆସି ସେହି ସନ୍ତାନର ନାମ ଜାଣି ନେଉଥିଲେ । ଅନେକ ସମୟରେ ନିଜେ ଆସି ନ ପାରିଲେ ଋତ୍ୱିକ୍‌ମାନଙ୍କ ମାଧ୍ୟମରେ ନାମକରଣ କରି ନେଉଥିଲେ । ଆଜି ବି ସେହି ଧାରା ଅବ୍ୟାହତ ଅଛି ।

ଏହିଭାବରେ ବିଭିନ୍ନ ଲୋକଙ୍କର ବିଭିନ୍ନ ସମସ୍ୟାର ସମାଧାନ ଦେବାରେ ଶ୍ରୀଶ୍ରୀପିତୃଦେବ ବ୍ୟସ୍ତ । ଉତ୍ସବର ଆରମ୍ଭ ଦିନଠାରୁ ଅତ୍ୟଧିକ ପରିଶ୍ରମ ହେତୁ ତାଙ୍କର ଶରୀର ଅସୁସ୍ଥ ହୋଇପଡ଼ିଛି । ମଝିରେ-ମଝିରେ କାଶ ଉଠୁଛି । ଏକ ଭାବରେ ଗତ କେତେଦିନ ଧରି ଅନବରତ କଥା କହି ତାଙ୍କର ଗଳାର ସ୍ୱର ବି ଭାଙ୍ଗିଯାଇଛି । କିନ୍ତୁ ତଥାପି ବିରାମହୀନଭାବରେ ସମସ୍ତଙ୍କ ସମସ୍ୟାଦିର ସମାଧାନ ଦେଇ ଚାଲିଛନ୍ତି । କେହି କୌଣସି ବିଷୟରେ କିଛି ଜାଣିବାକୁ ଚାହିଁଲେ ସେ ସହଜ-ସରଳ ଭାଷାରେ ତାର ଉତ୍ତର ଦେଉଛନ୍ତି ; କେତେବେଳେ ବା ଉଚ୍ଚସ୍ୱରରେ, ପୁଣି କେତେବେଳେ ବା ମୃଦୁସ୍ୱରରେ । ତାଙ୍କର କଥାକହିବାକୁ କଷ୍ଟ ହେଉଛି ଦେଖି ନିକଟସ୍ଥ ଜନୈକ କର୍ମୀ, ବହିରାଗତମାନଙ୍କୁ ବେଶିକଥା ନ କହିବାକୁ ଅନୁରୋଧ କରିଲେ, ସେ ମଧ୍ୟେ ମଧ୍ୟେ ଧମକ ଦିଅନ୍ତି—'କହିବାକୁ ଦେ ନା କଣ କହୁଛି' । କେତେବେଳେ ବା ନିଜେ ସମସ୍ୟାପୀଡ଼ିତ କାହାକୁ କିଛି କହିବାର ଭାବ ଦେଖି ପାଖରେ ଥିବା କର୍ମୀମାନଙ୍କୁ କହନ୍ତି—'ଶୁଣ୍ ନା ଏ ମା'ଟି କଣ କହୁଛି'—ଇତ୍ୟାଦି-ଇତ୍ୟାଦି ।

କଥା ହେଉ ହେଉ ହରିଦାସ ଭଦ୍ର ନାମକ ଜଣେ ପ୍ରବୀଣ କର୍ମୀ ଶ୍ରୀଶ୍ରୀପିତୃଦେବଙ୍କ

ନିକଟରେ ଆସି କିଛି ଅର୍ଥ ସାହାଯ୍ୟ ପ୍ରାର୍ଥନା କଲେ—ଆଖି ଖରାପ, ଡାକ୍ତର ଦେଖାଇବାକୁ ହେବ।

ଶ୍ରୀଶ୍ରୀପିତୃଦେବ—କେତେ ଲାଗିବ ?

ଉକ୍ତ ଭାଇ—ପଚାଶ ଟଙ୍କା ହେଲେ ହୋଇଯିବ।

ଶ୍ରୀଶ୍ରୀପିତୃଦେବ—ସମ୍ମୁଖରେ ବସିଥିବା କର୍ମୀମାନଙ୍କ ଆଡ଼କୁ ଚାହିଁ ପଚାରିଲେ— ଏ, ତୋ ପକେଟରେ ଟଙ୍କା ଅଛି ?

ସମସ୍ତେ ଏକସ୍ୱରରେ 'ଆଜ୍ଞା ହଁ ଅଛି' ବୋଲି କହିଉଠିଲେ। ସଙ୍ଗେ-ସଙ୍ଗେ ଅନେକେ ହିଁ ଦୁଇ-ପାଞ୍ଚ-ଦଶ ଟଙ୍କା କରି ଦେବାକୁ ଲାଗିଲେ। ଦେଖୁ-ଦେଖୁ ପଚାଶ ଟଙ୍କାରୁ ବେଶି ଉଠିଗଲା।

ଟଙ୍କାତକ ସାହାଯ୍ୟ-ପ୍ରାର୍ଥୀଙ୍କ ହାତରେ ଦେଇ ଦିଆହେଲା।

ଶ୍ରୀଶ୍ରୀପିତୃଦେବ ଏଥରକ ଉକ୍ତ ଭାଇଙ୍କୁ କହିଲେ—ଯାଆନ୍ତୁ, ଏ ଟଙ୍କା ନେଇ ଚିକିତ୍ସା କରାଇବେ।

୯ଟା ବାଜି ୮ ମିନିଟ୍। ତାଙ୍କର ଆପାତତଃ ଉଠିବାର ନିର୍ଦ୍ଦିଷ୍ଟ ସମୟ ପାର ହୋଇଯାଇଛି। ଆପାତତଃ କୌଣସି ଜିଜ୍ଞାସୁ ନ ଦେଖି, ସେ ଉଠିଲେ। ସମବେତ ଭକ୍ତମଣ୍ଡଳୀ ତାଙ୍କୁ ପ୍ରଣାମ ଜଣାଇଲେ।

## ରବିବାର, ୭-ବୈଶାଖ, ୧୩୮୨ (ଇଂ ୨୦/୪/୭୫)

ଠାକୁରବଙ୍ଗଳାରେ ଶ୍ରୀଶ୍ରୀପିତୃଦେବଙ୍କର ଉପସ୍ଥିତିରେ ଊଷା-ବିନତି ପ୍ରାର୍ଥନାଦି ଶେଷ ହେଲା। ବଡ଼ ନାଟମଣ୍ଡପରେ ତାଙ୍କ ଚାରିପଟେ ଘେରି ବସିଛନ୍ତି—ଶୀତଳ ଚକ୍ରବର୍ତ୍ତୀ, ବସନ୍ତ୍ୱାନ ସିଂ, ଆଶୁତୋଷ ଗାଙ୍ଗୁଲୀ, ଜିତେନ୍ ଦେବ ବର୍ମ୍ମନ, ପରମେଶ୍ୱର ପାଲ, ଡା: ଅନ୍ନଦାବିଜୟ ହାଲଦାର, ଧୀରେନ୍ ମଲ୍ଲିକ, ଅଜିତ ଗାଙ୍ଗୁଲୀ ଏବଂ ଆହୁରି ଅନେକେ। ଏଥରକ ସତ୍ୟାନୁସରଣ ପାଠ ଆରମ୍ଭ ହେଲା।

"ବିନୀତ ହୁଅ, ତା' ବୋଲି ଦୁର୍ବଳ-ହୃଦୟ ହୁଅନା।"

ଗୁରୁକିଙ୍କର ଭାଇ, ରାମନନ୍ଦନ ଭାଇ, ଗୋବର୍ଦ୍ଧନ ଭାଇ ଓ ପଣ୍ଡିତ ଭାଇ ବାଣୀଟି ଜଣେ ଜଣେ ଯଥାକ୍ରମେ ବଙ୍ଗଳା, ହିନ୍ଦୀ, ଓଡ଼ିଆ ଓ ଇଂରାଜୀରେ ପାଠ କଲେ।

ଶ୍ରୀଶ୍ରୀପିତୃଦେବ—ବୁଝି ହେଉଛି ?

ଗୁରୁକିଙ୍କର ଭାଇ—ଆଜ୍ଞା।

ଗୋପେନ୍ ଭାଇ (ମଲ୍ଲିକ)—ବିନୀତ ହେବା ସହିତ ଦୁର୍ବଳ ହୃଦୟ ହେବାର କି ସମ୍ପର୍କ ?

ଗୁରୁକିଙ୍କର ଭାଇ—ବିନୀତ ହେବା ମାନେ ନମ୍ର ହେବା।

ଶ୍ରୀଶ୍ରୀପିତୃଦେବ—ସେ କିପରି ?

ଗୁରୁକିଙ୍କର ଭାଇ ବିଷୟଟି ନେଇ ଆଲୋଚନା କଲେ। କିନ୍ତୁ ତଥାପି ବି କଥାଟି ପରିଷ୍କାର ହେଲାନି ଦେଖି ଶ୍ରୀଶ୍ରୀପିତୃଦେବ କହିଲେ—ଏଠାରେ ଅଛି, 'ବିନୀତ ହୁଅ,

ଦୁର୍ବଳହୃଦୟ ହୁଅନା।' ବିନୟୀ ହେବା ମାନେ ଖୋସାମତ କରିବା ନୁହେଁ, ହେଲେ ମଣିଷ attractive ହୁଏ। ବିନୟୀ ହେଲେ ସେ ପୁଣି ମହାନୁଭବ ହୁଏ। କିନ୍ତୁ ଏହା ସହିତ ଦୁର୍ବଳ-ହୃଦୟ ନ ହେବାର କଣ ସମ୍ପର୍କ ?

ସତୀଶ ଭାଇ (ପାଲ) ଆସୁ ଆସୁ ଶ୍ରୀଶ୍ରୀପିତୃଦେବ ତାଙ୍କୁ ସେଇ ଏକ ପ୍ରଶ୍ନ କଲେ।

ସତୀଶ ଭାଇ—ଏଇଟା, 'ସଂଯତ ହୁଅ, କିନ୍ତୁ ନିର୍ଭୀକ ହୁଅ' ସେଇଭଳି।

ଶ୍ରୀଶ୍ରୀପିତୃଦେବ—ସେ ତ ଗତାଲି ଆଲୋଚିତ ହୋଇଛି। ସେଟା ଆଜି ପୁଣି ଆଲୋଚନା କରି ଲାଭ କ'ଣ ?

ଶତୀଶ ଭାଇ କିଛି ଆଲୋଚନା କରିବା ପରେ ଶ୍ରୀଶ୍ରୀପିତୃଦେବ ବ୍ୟାଖ୍ୟା କରି କହିଲେ—ବିନୟ ମାନେ ନମ୍ରତା। କେବଳ ଗୁରୁଜନଙ୍କ ନିକଟରେ ନୁହଁ, ସମସ୍ତଙ୍କ ସହିତ ଏହି ଭାବ ରଖିବା ଦରକାର; ଯଦ୍ୱାରା ସମସ୍ତେ attractive ହୋଇଉଠନ୍ତି। ଏଇ ଯେ ବୈଷ୍ଣବ ଶାସ୍ତ୍ରରେ ଅଛି—

'ତୃଣାଦପି ସୁନୀଚେନ ତରୋରିବ ସହିଷ୍ଣୁନା।
ଆମାନିନା ମାନଦେର୍ନ କୀର୍ତ୍ତନୀୟଃ ସଦା ହରି।'

ଏଇଟା ହେଉଛି ବିନୟର form, ଏଇଟା ହିଁ ବିନୟର ଆଦର୍ଶ। ଆଉ ଏଭଳି ହେଲେ ମଣିଷ କାହାରି ନିକଟରୁ ହେଲେ ପ୍ରତ୍ୟାଖ୍ୟାତ ହୁଏନା। ସେତେବେଳେ ହିଁ ହୁଏ expansion (ବିସ୍ତୃତି)। ଲୋକେ ସେତେବେଳେ ତା'ର କଥାରେ ମୁଗ୍ଧ ହୁଅନ୍ତି, attracted (ଆକୃଷ୍ଟ) ହୁଅନ୍ତି। ଏଥିପାଇଁ ଠାକୁର କହିଛନ୍ତି, ବିନୟପରି ସମ୍ମୋହନକାରୀ ଆଉ କିଛି ନାହିଁ। ଯେ ପ୍ରକୃତରେ ବିନୟୀ, ସେ ସମସ୍ତଙ୍କ ନିକଟରେ ହିଁ ବିନୟୀ। ଠାକୁର ଆମ୍ଭମାନଙ୍କୁ ବିନୟୀ ହେବାକୁ କହିଛନ୍ତି; ତା'ବୋଲି ଦୁର୍ବଳ-ହୃଦୟ ହେବାକୁ କହି ନାହାନ୍ତି କିନ୍ତୁ।

ବିଷୟଟି ଆହୁରି ପରିଷ୍କାର କରିବା ପାଇଁ ସେ କହିଲେ—ଧର, କେହି ହୁଏତ ସତକୁ ସତ ବିନୟୀ। ତାର ପିଲାପିଲି ଅଛନ୍ତି। ଏଇ ପିଲାପିଲି ମଧ୍ୟରୁ କେହି ଯଦି ଔଦ୍ଧତ୍ୟ ପ୍ରକାଶ କରେ, କିମ୍ବା ଦୁଷ୍ଟାମି କରେ, ସେତେବେଳେ ତାର କ'ଣ କରିବା ଉଚିତ—? ସେଠାରେ ଉଚିତ—ସେମାନଙ୍କୁ ପ୍ରତିହତ କରିବା, control (ନିୟନ୍ତ୍ରଣ) କରିବା। ଯଦି ସେ ପିଲାପିଲିଙ୍କର ଔଦ୍ଧତ୍ୟ ବା ଦୁଷ୍ଟାମି ବରଦାସ୍ତ ନ କରେ, ପ୍ରତିହତ କରେ, ଅନ୍ୟାୟ ନିରୋଧ କରେ—ତା'ହେଲେ କଣ ତାର ବିନୟର ଭାବ ନଷ୍ଟ ହୋଇଯିବ ?—ନା, ତା ହେବନି। କିନ୍ତୁ ଯେ ଦୁର୍ବଳ-ହୃଦୟ ସେ ପାରେନା। ତା'ଦ୍ୱାରା ଅନ୍ୟାୟ ପ୍ରତିରୋଧ କରିବା, କିମ୍ବା ନିରୋଧ କରିବା କିଛି ହେଲେ ସମ୍ଭବ ହୁଏ ନା। ଅନେକ କ୍ଷେତ୍ରରେ ସେ ଆସକ୍ତିରେ ଭୋଗେ।

ସତୀଶ ଭାଇ—ଆଜ୍ଞା, ବିନୀତ ହେବା ଭିତରେ ଶକ୍ତି ଅଛି।

ଶ୍ରୀଶ୍ରୀପିତୃଦେବ—ବିନୀତ ହେବା ଭିତରେ ଖୁବ୍ ଶକ୍ତି ଥାଏ। ଆଉ ସେଥିଯୋଗୁ ହିଁ ସେ ସମଗ୍ର ଜଗତକୁ attract (ଆକୃଷ୍ଟ) କରେ।

ଗୁରୁକିଙ୍କର ଭାଇ—ଆଜ୍ଞା, ଏଭଳି ହୋଇହୁଏ କିପରି ?

ଶ୍ରୀଶ୍ରୀପିତୃଦେବ—ସେଇ ଯେ ଠାକୁରଙ୍କ କୁହାଅଛି—

"You are for the Lord
not for others;
You are for the Lord
and so for others."

ଏଭଳି ହେବାକୁ ହୁଏ। Lord (ପ୍ରଭୁ) ଙ୍କ ଲାଗି ହେବାକୁ ହୁଏ। ଏକମାତ୍ର ତାଙ୍କର ହୋଇଉଠିଲେ, ସେତେବେଳେ ଆଉ ସବୁ ଆପେ-ଆପେ ହୁଏ। ଏଥିଲାଗି ହିଁ ଆମର ସାଧନା—ଏକମାତ୍ର ତାଙ୍କର ହୋଇଉଠିବା, ତାଙ୍କର ମନମୁତାବକ ହୋଇଉଠିବା। ଆଉ ସେଥିପାଇଁ ହିଁ ନାମ-ଧ୍ୟାନ, ଯଜନ-ଯାଜନ ଯାହା କିଛି। ଏକମାତ୍ର ତାଙ୍କର ହୋଇ ହୋଇଉଠିଲେ, ସେତେବେଳେ ଯାଇ ସମସ୍ତଙ୍କର ହୋଇ ଉଠିବା ସମ୍ଭବ ହୁଏ। ସମସ୍ତେ ହିଁ ତ ତାଙ୍କର।

ଆଲୋଚନା-ପ୍ରସଙ୍ଗରେ ଶ୍ରୀଶ୍ରୀପିତୃଦେବ କହିଲେ—ଠାକୁରଙ୍କୁ ଦେଖି ଆମ ପ୍ରତ୍ୟେକଙ୍କର ମନେ ହେଉଥିଲା ଠାକୁର ମୋତେ ସବୁଠାରୁ ବେଶି ଭଲ ପାଆନ୍ତି। ପ୍ରତ୍ୟେକେ ହିଁ ଭାବେ। ଆମେ ବି ଠିକ୍ ସେହିପରି ହେବାକୁ ଚାହୁଁ। ଆମ୍ଭମାନଙ୍କୁ ଦେଖି ଯେପରି ସମସ୍ତେ ସେପରି ଭାବନ୍ତି—ସେଭଳି ହେବା ଦରକାର। ଏଥିରେ ହିଁ ଆତ୍ମବିକାଶ ଘଟେ।

ସତୀଶ ଭାଇ—ଆଜ୍ଞା, ତା'ହେଲେ ବିନୟ ମାନେ ସମସ୍ତଙ୍କ ସଙ୍ଗରେ ଏକ ପ୍ରକାର ବ୍ୟବହାର କରିବା ?

ଶ୍ରୀଶ୍ରୀପିତୃଦେବ—ଏକପ୍ରକାର ବ୍ୟବହାର ମାନେ କ'ଣ ? ଜଣକ ପାଖରେ ନମ୍ର ହେଲି, ଅନ୍ୟ ଜଣକ ପାଖରେ ହେଲିନି—ସେ କିନ୍ତୁ ବିନୟ ନୁହଁ। ତାବୋଲି ଯେ ଅସତ୍‌କୁ ପ୍ରଶ୍ରୟ ଦେବାକୁ ହେବ ତା' ବି ନୁହେଁ। ବରଂ, ଯେ ବିନୟୀ ତା ପାଖରେ ଅସତ୍-କାର୍ଯ୍ୟ ସଂଘଟିତ ହୋଇପାରେ ନା। ଏପରି ଅନେକେ ହିଁ ଅଛନ୍ତି ଯେଉଁମାନେ ବଡ଼ ବଡ଼ କଥା କହନ୍ତି, ଆସ୍ଫାଳନ କରନ୍ତି, କିନ୍ତୁ ଅସତ୍ ନିରୋଧ କରିବାର ସାହସ କିମ୍ବା ଶକ୍ତି ନାହିଁ—ଏଇଟା ବିନୟର ଲକ୍ଷଣ ନୁହେଁ। ଯେ ପ୍ରକୃତ ବିନୟୀ ସେ ପୁଣି ପ୍ରକୃତ ଶକ୍ତିମାନ୍। କେଉଁଠି କିଭଳି ଆଚରଣ କରିବାକୁ ହେବ ସେଥିରେ ସେ ଅଭ୍ୟସ୍ତ ହୋଇଥାଏ।

କଥାପ୍ରସଙ୍ଗରେ ସେ ଏଥରକ କହିଲେ—ମହାପ୍ରଭୁ ଥରେ କାଶୀଧାମକୁ ଯାଇଛନ୍ତି। କିଛିଦିନ ପରେ ପ୍ରକାଶାନନ୍ଦ ସରସ୍ୱତୀ ତାଙ୍କ ଶିଷ୍ୟମାନଙ୍କୁ ନେଇ ଦିନେ ମହାପ୍ରଭୁଙ୍କ ନିକଟକୁ ଆସିଲେ ଗୋଟିଏ ବିଷୟ ଆଲୋଚନା କରିବା ପାଇଁ। ମହାପ୍ରଭୁଙ୍କ ପାଇଁ ଉଚ୍ଚାସନ ନିର୍ଦ୍ଦିଷ୍ଟ ଥିଲା। ମହାପ୍ରଭୁ କିନ୍ତୁ ଉଚ୍ଚାସନରେ ବସିଲେନି, ତଳେ ବସିଲେ। ତା' ପରେ ବିଚାର ଆରମ୍ଭ ହେଲା।

ଅନ୍ୟ ଏକ ଘଟଣା—ସେଇ ସାର୍ବଭୌମ ପଣ୍ଡିତଙ୍କର। ସାର୍ବଭୌମ ପଣ୍ଡିତ ଶାସ୍ତ୍ରର କୌଣସି ଗୋଟିଏ ଶ୍ଳୋକ ମହାପ୍ରଭୁଙ୍କୁ ବୁଝାଉଥାନ୍ତି। ମହାପ୍ରଭୁ ସେତେବେଳେ ବୟସରେ ଅନେକ ଛୋଟ। ସାର୍ବଭୌମ ପଣ୍ଡିତ ଉକ୍ତ ଶ୍ଳୋକର ବିଭିନ୍ନ ଅର୍ଥ କରି ବୁଝାଇବାକୁ ଚାହୁଁଥାନ୍ତି। ମହାପ୍ରଭୁ କିନ୍ତୁ କିଭଳି ଯେପରି ଅନ୍ୟମନସ୍କ। ସାର୍ବଭୌମ ପଣ୍ଡିତ ତା' ଲକ୍ଷ୍ୟ କରି

ପଚାରିଲେ—ତୁମେ କ'ଣ ବୁଝି ପାରୁନ ? ମହାପ୍ରଭୁ କହିଲେ—ଆପଣଙ୍କ କଥା ଠିକ୍ ଠିକ୍ ଧରି ପାରୁନି। ସାର୍ବଭୌମ ପଣ୍ଡିତ କହିଲେ—ସେ କି କଥା ? ମୁଁ ସାତ ପ୍ରକାର ବ୍ୟାଖ୍ୟା କଲି, ତେବେ ବି ତୁମେ ବୁଝି ପାରୁନ ? ମହାପ୍ରଭୁଙ୍କର ସେଇ ଗୋଟିଏ ଉତ୍ତର। ସାର୍ବଭୌମ ପଣ୍ଡିତ ଭାବୁଥାନ୍ତି—ଏ ପୁଣି କି ରକମ ଛାତ୍ର! କେଉଁଥିରେ ବି ହଁ କହୁନି। ଅବଶେଷରେ ମହାପ୍ରଭୁ କହିଲେ—ଆଜ୍ଞା, ମୁଁ ଯାହା ବୁଝେ, ଯଦି ଅନୁମତି ଦିଅନ୍ତି ତେବେ କହିପାରେ।

ପଣ୍ଡିତ ସେ କଥା ଶୁଣି କହିଲେ—ହଁ କୁହ। ତା' ପରେ ମହାପ୍ରଭୁ ଉକ୍ତ ଶ୍ଳୋକର ବ୍ୟାଖ୍ୟା କରିବାକୁ ଆରମ୍ଭ କଲେ। ସହଜ-ସରଳ ଭାଷାରେ ସେ ଶ୍ଳୋକଟିର ସତର ରକମର ବ୍ୟାଖ୍ୟା କରିଦେଲେ ମହାପ୍ରଭୁ। ସାର୍ବଭୌମ ପଣ୍ଡିତ ତ ଅବାକ୍! ସେ ନିଜେ ଯାହା ଜାଣି ନ ଥିଲେ ମହାପ୍ରଭୁ ତା' ଧରାଇଦେଲେ। ଅଥଚ ଦେଖ, ମହାପ୍ରଭୁଙ୍କର ମୁହଁ-ଆଖିର ଭାବ ଦେଖି ତା' ବୁଝିବାର ଉପାୟ ନ ଥିଲା। ସାର୍ବଭୌମ ପଣ୍ଡିତ ବୁଝି ବି ପାରିଲେନି। ପ୍ରକୃତ ବିନୟ ଥିଲେ ଏ ରକମ ହିଁ ହୋଇଥାଏ। ସେତେବେଳେ ଅନ୍ୟ ସମସ୍ତେ ବିସ୍ମିତ ହୁଅନ୍ତି।

ଆଲୋଚନା ଶେଷରେ ଶ୍ରୀଶ୍ରୀପିତୃଦେବ କହିଲେ—ପୃଥିବୀରେ ଯେତେ ମହାପୁରୁଷ ଜନ୍ମଗ୍ରହଣ କରିଛନ୍ତି, ସେମାନଙ୍କର ସବୁଠାରୁ ବଡ଼ ଜିନିଷ ହେଉଛି ବିନୟ କିନ୍ତୁ ସେମାନେ ସମସ୍ତେ ନିର୍ଭୀକ। ଆମେ ଅନେକେ ହିଁ ମନେକରୁ, ବିନୟ ଯା'ର ଯେତେ କମ୍ ସେ ସେତେ ନିର୍ଭୀକ। ଗୁରୁଜନଙ୍କୁ ଅମାନ୍ୟ କରିବା, କିମ୍ବା ଇତର ଜୀବ-ଜନ୍ତୁଙ୍କୁ ଲଘୁ ଜ୍ଞାନ କରିବାଟା ହିଁ ବୋଧେ ନିର୍ଭୀକତା। ତା' ନୁହେଁ। ଯେଉଁମାନେ ବିନୟୀ, ସେମାନଙ୍କର ଅସତ୍-ନିରୋଧ ବିନୟ ସଙ୍ଗେ ସଙ୍ଗେ ହିଁ ହୁଏ।

୬ଟା ବାଜି ୩୦ ମିନିଟ। ସତ୍ୟାନୁସରଣ ପାଠ ଶେଷ ହେବା ସଙ୍ଗେ ସଙ୍ଗେ ଏଥରକ ଶ୍ରଦ୍ଧେୟ ପଣ୍ଡିତ ଭାଇ ଶ୍ରୀଶ୍ରୀଠାକୁରଙ୍କ 'ଧୃତି-ବିଧାୟନା' ପାଠ ଆରମ୍ଭ କଲେ—

"ତୁମର ବୈଶିଷ୍ଟ୍ୟ ନିଃସୃତ ଅବଦାନକୁ
ଯଦି ଦୁନିଆର ସମସ୍ତଙ୍କ ପକ୍ଷରେ
ସଭାପୋଷଣୀ କରିତୋଳି ନ ପାର,
ତେବେ ତା' କିନ୍ତୁ ବନ୍ଧ୍ୟା।" ।୨୩୧।

ସତୀଶ ଭାଇ ପ୍ରଶ୍ନ ଉଠାଇଲେ—ଧରାଯାଉ, କେହି ଗୀତ ଜାଣେ। ସେହି ଗୀତ ସାହାଯ୍ୟରେ ସେ ଯଦି ସମସ୍ତଙ୍କୁ ସଭାପୋଷଣୀ କରିତୋଳି ନ ପାରେ ତେବେ ତା' ବନ୍ଧ୍ୟା—ଏହା ହିଁ କ'ଣ ବାଣୀର ଅର୍ଥ ?

ବସନ୍ତ ଭାଇ (ସିଂ)—ଗୀତ ଗାଇବା ତ ଗୋଟାଏ qualification (ଗୁଣ)। ସେଇଟା ବୈଶିଷ୍ଟ୍ୟ ହେଲା କିପରି ?

ସତୀଶ ଭାଇ—ଯେଉଁଭଳି ମୀରାବାଈ ଗୀତ ଗାଉଥିଲେ। ଗୀତ ଗାଇ ଅନେକଙ୍କୁ ଇଷ୍ଟମୁଖୀ କରି ତୋଳିଥିଲେ—ଏଇଟା ହିଁ ତ ସଭାପୋଷଣୀ କରିତୋଳିବା।

ଆଶୁ ଭାଇ (ଗାଙ୍ଗୁଲୀ, ସତୀଶ ଭାଇଙ୍କୁ) ଆପଣ କହିଲେ ଅନେକଙ୍କୁ ଇଷ୍ଟମୁଖୀ କରାଯାଏ। କିନ୍ତୁ ଠାକୁର ତ ଏ ବାଣୀରେ କହୁଛନ୍ତି ସମସ୍ତଙ୍କୁ ସଭାପୋଷଣୀ କରି ତୋଳାଯାଏ।

ପରମେଶ୍ୱର ଭାଇ (ପାଲ)—ହଁ ତା'ହିଁ ତ ହୋଇଥାଏ। ଅନେକଙ୍କୁ ନୁହେଁ, ସମସ୍ତଙ୍କୁ ସଭାପୋଷଣୀ କରି ତୋଳାଯାଏ।

ଆଶୁ ଭାଇ—ମୀରା ଭଜନରେ କ'ଣ ସମସ୍ତଙ୍କୁ ସଭାପୋଷଣୀ କରାଯାଏ ?

ଶ୍ରୀକଣ୍ଠ ଭାଇ (ମାଇତି)—ହଁ ହୁଏ।

ଆଶୁ ଭାଇ—ସଭାପୋଷଣୀ ମାନେ କ'ଣ ?

ସତୀଶ ଭାଇ—ସାଧାରଣ ଅର୍ଥେ ସଭାପୋଷଣୀ ହେଲା ତା'ହିଁ ଯା' ମୋର ଅସ୍ତିତ୍ୱ ପକ୍ଷରେ helpful (ଉପଯୋଗୀ)। ଏଇ ଯେମିତି, କେହି ଦୁଧ ହଜମ କରି ପାରେନା। ଦୁଧ-ଖାଇବା ସହ୍ୟ କରି ପାରେନା। ତା' ବୋଲି କଣ ଦୁଧ ପୁଷ୍ଟିକର ଖାଦ୍ୟ ନୁହଁ।

ଶ୍ରୀଶ୍ରୀପିତୃଦେବ—ଆଗେ 'ବୈଶିଷ୍ଟ୍ୟ'ର କଥା ଶେଷ ହେଉ। ବାଣୀଟି କ'ଣ ଅଛି—ପୁଣି ପଢ଼।

ସତୀଶ ଭାଇ ପୁନରାୟ ବାଣୀଟି ପାଠ କଲେ।

ଶ୍ରୀଶ୍ରୀପିତୃଦେବ—ବୈଶିଷ୍ଟ୍ୟ-ନିଃସୃତ ଅବଦାନର କଥା କୁହା ହୋଇଛି। ଏଇ ବୈଶିଷ୍ଟ୍ୟ-ନିଃସୃତ ଅବଦାନ ମାନେ କ'ଣ ?

ସତୀଶ ଭାଇ—କୌଣସି ବିଶେଷ ଗୁଣର ଅଧିକାରୀ ହେବା ତା'ର ବୈଶିଷ୍ଟ୍ୟ।

ଶ୍ରୀଶ୍ରୀପିତୃଦେବ—ତା' ହେଲେ ବୈଶିଷ୍ଟ୍ୟ-ନିସୃତ ଅବଦାନ କ'ଣ ?

ପରମେଶ୍ୱର ଭାଇ—ବିଶେଷ ପ୍ରତିଭା ନେଇ ଯେ ଜନ୍ମିଛି ତାକୁ ବୈଶିଷ୍ଟ୍ୟବାନ୍ କୁହାଯାଏ। ଆଉ ସେଇ ପ୍ରତିଭା ସାହାଯ୍ୟରେ ଯେଉଁ ସେବା ଦିଆଯାଏ, ତା ହିଁ ତାର (ସେହି ପ୍ରତିଭା-ସଂପନ୍ନ ବ୍ୟକ୍ତିର) ବୈଶିଷ୍ଟ୍ୟ-ନିଃସୃତ ଅବଦାନ।

ସତୀଶ ଭାଇ—ମୁଁ କୁମ୍ଭାର। ମୋର ବୃତ୍ତି ହାଣ୍ଡିଗଢ଼ିବା। ତା' ହେଲେ ଏଇଟା ହିଁ ମୋର ବୈଶିଷ୍ଟ୍ୟ ?

ପରମେଶ୍ୱର ଭାଇ—ହଁ।

ଶ୍ରୀଶ୍ରୀପିତୃଦେବ—କୁମ୍ଭାର ତ ଅନେକ ଅଛନ୍ତି। କିନ୍ତୁ ଅନ୍ୟ ସମସ୍ତଙ୍କୁ ବାଦ୍‌ଦେଇ ଜଣକ ପାଖରୁ ଲୋକେ ବେଶୀ କିଣନ୍ତି। ସମସ୍ତେ ତ କୁମ୍ଭାର। କିନ୍ତୁ ସମସ୍ତଙ୍କ ଜିନିଷ ବିକ୍ରି ହୁଏନା। କୁମ୍ଭାର ଯେତେବେଳେ—ସେତେବେଳେ ଜନ୍ମଗତ ବୈଶିଷ୍ଟ୍ୟ ତ ଅବଶ୍ୟ ଅଛି—ତା ହେଲେ ଏ ପାର୍ଥକ୍ୟ କାହିଁକି ? ପାର୍ଥକ୍ୟର କାରଣ ତାର 'ବୈଶିଷ୍ଟ୍ୟ'। ଅନ୍ୟାନ୍ୟ କୁମ୍ଭାର ଅପେକ୍ଷା ତାର ତିଆରି ଜିନିଷ ନିଶ୍ଚୟ ଅନେକ ଭଲ ହୁଏ।

ପରମେଶ୍ୱର ଭାଇ—କୁମ୍ଭାରର ଜନ୍ମଗତ ବୈଶିଷ୍ଟ୍ୟ ହେଉଛି ହାଣ୍ଡିଗଢ଼ିବା।

ଶ୍ରୀଶ୍ରୀପିତୃଦେବ—ଏଠାରେ ଶ୍ରୀଶ୍ରୀଠାକୁର କିନ୍ତୁ ବର୍ଣ୍ଣଗତ ବୈଶିଷ୍ଟ୍ୟର କଥା କହୁ ନାହାଁନ୍ତି। ସବୁ ବର୍ଣ୍ଣର ଲୋକଙ୍କର କିଛି ନା କିଛି ଗୋଟାଏ ବିଶେଷ ଦିଗରେ ଝୁଙ୍କ୍ ତ ଅଛି—ଏଠାରେ କିନ୍ତୁ ସେ କଥା ହେଉନି। କେହି ଯେ କୌଣସି ବିଶେଷ ଗୁଣର ଅଧିକାରୀ ହେଲେ ହିଁ ସେଇଟାକୁ ତାର ବୈଶିଷ୍ଟ୍ୟ କୁହାଯାଏ। ଏଠାରେ ସେହି ବୈଶିଷ୍ଟ୍ୟର କଥା କୁହା ହେଉଛି। ସେହି ବୈଶିଷ୍ଟ୍ୟ ସାହାଯ୍ୟରେ ମଣିଷକୁ ସଭାପୋଷଣୀ କରିତୋଳିବା କଥା ହେଉଛି।

ଦୁନିଆର ସଭିଙ୍କ ପକ୍ଷରେ ସତ୍ତାପୋଷଣୀ କରି ତୋଳିବା କଥା କହୁଛନ୍ତି ଶ୍ରୀଶ୍ରୀଠାକୁର। (ଟିକିଏ ରହି) ଦୁନିଆର ସମସ୍ତଙ୍କ ପକ୍ଷରେ ମାନେ କ'ଣ ? ମୁଁ ତ ଦୁନିଆସାରା ଘୁରିବୁଲୁନି।

ଗୁରୁକିଙ୍କର ଭାଇ (ପାଣ୍ଡେ)—ଆଜ୍ଞା, ପ୍ରତ୍ୟେକଙ୍କର ତ ଗୋଟାଏ ଦୁନିଆ ଅଛି।

ଶ୍ରୀଶ୍ରୀପିତୃଦେବ—ହଁ, ତା ବି ଠିକ୍। ପୁଣି ଦେଖ, ମୀରାବାଈଙ୍କ ଭଜନ ଯଦି ଇଉରୋପରେ କେହି ଶୁଣେ ତା'ର ବି ଭଲ ଲାଗିବ। ବ୍ୟାଖ୍ୟା କରି ସେ ଏଥରକ କହିଲେ—ବୈଶିଷ୍ଟ୍ୟ ମଧ୍ୟରେ 'ବିଶେଷ' ଅଛି। ସତ୍ତାପୋଷଣୀ କରିତୋଳିବା ମାନେ କଣ ?

ପରମେଶ୍ୱର ଭାଇ—ସତ୍ତାପୋଷଣୀ କରିତୋଳିବା ମାନେ ଉଦ୍ଧମୁଖୀ କରିତୋଳିବା। ମଣିଷ ଉଦ୍ଧମୁଖୀ ହେଲେ ହିଁ ତାର ସତ୍ତା ପୁଷ୍ଟ ହୁଏ—ସେ ଭଲଭାବେ ବଞ୍ଚି ରହିପାରେ।

ଶ୍ରୀଶ୍ରୀପିତୃଦେବ—ହଁ। ଯାର ଯା' ବୈଶିଷ୍ଟ୍ୟ—ସେ ବର୍ଣ୍ଣଗତ ହେଉ, ଜାତିଗତ ହେଉ, ବା ଯାହା କିଛି ହେଉ—ସେଟା ଯଦି ସର୍ବଜନ-କଲ୍ୟାଣମୁଖୀ ନ ହୁଏ ତାହେଲେ ତା' ଇଷ୍ଟସ୍ୱାର୍ଥପ୍ରତିଷ୍ଠା କରେନା—ତା' ମଣିଷକୁ ସେହି ଉଦ୍ଧ ଦିଗରେ ନେଇ ଯାଏନା, ତେଣୁ ତା' ବନ୍ଧ୍ୟା। ସେ ଗାନ୍ ହୋଇପାରେ, ହାଣ୍ଡି ଗଢ଼ିବା ହୋଇପାରେ, ଅନ୍ୟ ଯେ କୌଣସି ଜିନିଷ ହୋଇପାରେ।

ଦୁନିଆର ସମସ୍ତଙ୍କୁ କହିଲେ—ଅଷ୍ଟ୍ରେଲିଆ, ଆମେରିକା ପ୍ରଭୃତି ଦେଶର ସମସ୍ତଙ୍କୁ ଯେ ବୁଲି ବୁଲି ସତ୍ତାପୋଷଣୀ କରିବ ତା' ନୁହେଁ—ଯେ ଆସିବ ତାକୁ ହିଁ କରିବ।

ପରବର୍ତ୍ତୀ ବାଣୀ ପାଠ ହେଲା—

''ତୁମର ଜୀବନଚଳନରେ ଯା' ଯା' ପ୍ରୟୋଜନ
ସେଗୁଡ଼ିକୁ ଯଦି ସୁନ୍ଦର ବ୍ୟବସ୍ଥାରେ
ସୁଷ୍ଠୁ ପରିଚର୍ଯ୍ୟାରେ
ସ୍ୱସ୍ଥ ରଖି ନ ପାର,
ତେବେ କିନ୍ତୁ ଠକିବ।'' ୨୧୪।

ଶ୍ରୀଶ୍ରୀପିତୃଦେବ—ଜୀବନଚଳନା ପାଇଁ କ'ଣ କ'ଣ ଦରକାର ?

ସତୀଶ ଭାଇ—ଆହାର୍ଯ୍ୟ, ପରିଧେୟ ଇତ୍ୟାଦି।

ଶ୍ରୀଶ୍ରୀପିତୃଦେବ—ତୁମର ଏଇ ଘଣ୍ଟାଟି ?

—ଆଜ୍ଞା ହଁ, ଏଇଟା ବି।

ଶ୍ରୀଶ୍ରୀପିତୃଦେବ—ତା' ହେଲେ ତୁମର ବହି, ଘଣ୍ଟା, ଲୁଗା ସବୁ ହିଁ ତୁମର ଜୀବନଚଳନାରେ ପ୍ରୟୋଜନ। ଏ ସବୁକୁ ସ୍ୱସ୍ଥ ରଖି ନ ପାରିଲେ ନିଜେ ହିଁ ଠକିବ। ହୁଏତ ବହିଟାର ଯତ୍ନ କରନା। ଯେ ଲୁଗା ଛ'ମାସ ଯାଇଥା'ନ୍ତା, ତା' ହୁଏତ ଚାରିମାସରେ ହିଁ ଶେଷ। ସବୁକିଛି ସୁନ୍ଦରଭାବରେ ସଜାଇ-ଗୋଛାଇ ରଖିବାକୁ ହୁଏ। ପ୍ରତ୍ୟେକ ବିଷୟରେ ହିଁ ସେବା ଦେବାକୁ ହୁଏ। ସବୁକିଛିର ସତ୍ତା ଅଛି, ଏଇଟା ଭାବି ସବୁ ଜିନିଷର ଯତ୍ନ ନେବା ଦରକାର। ଏଥିରେ ଲାଭବାନ୍ ହେବ ତୁମେ ହିଁ।

ସମ୍ମୁଖକୁ ଚାହିଁ କହିଲେ—କାହାରି ଘରକୁ ଗଲେ ଦେଖେ—ହୁଏ ତ ସତ୍‌ସଙ୍ଗୀର ଘର—ଠାକୁରଙ୍କ ଛବିରେ ମଇଳା ଅଳନ୍ଧୁ, ସବୁ ଅପରିଷ୍କାର, ହୁଏତ ଠାକୁରଙ୍କ ଛବିଟା ବଙ୍କାଇ ଯାଇଛି ଯେ ଝୁଲି ପଡ଼ିଛି। ଏ ଧରଣର ଲୋକ ଆମ୍ଭମାନଙ୍କ ଭିତରେ ହିଁ ଅଛନ୍ତି—ଆମର ଏଇଠି (ଦେଓଘରରେ)। ଏଥିପାଇଁ ମୋର କାହା ଘରକୁ ଯିବାକୁ ଇଚ୍ଛା ହୁଏନା। ପୁଣି, ଏମିତି ବି ଅଛି ଯା'କୁ ଲୋକେ କହନ୍ତି ବଡ଼ ଝଗଡ଼ାପ୍ରିୟ। କିନ୍ତୁ ତା' ଘରକୁ ଯାଇ ଦେଖେ, ଠାକୁର-ଘର କେତେ ପରିଷ୍କାର-ପରିଚ୍ଛନ୍ନ। ଠାକୁରଙ୍କ ଫଟୋ କେତେ ସୁନ୍ଦରଭାବେ ସଜ୍ଜା। ଘର-ଦୁଆର ସବୁ ପରିଷ୍କାର। ଏସବୁ ଦେଖିବାମାତ୍ରେ ଭଲଲାଗେ, ମନ ପ୍ରଫୁଲ୍ଲ ହୁଏ। (ଟିକିଏ ରହି) ମୋର ପୁଣି ଏଭଳି ହୁଏ—କୌଣସି କାମରେ ତ୍ରୁଟି ଦେଖିଲେ ମନରେ କେମିତି ଗୋଟାଏ ଅସ୍ୱସ୍ତିର ଭାବ ଲାଗି ରହିଥାଏ। କେଉଁଥିରେ ହେଲେ ସେ ଭାବ ଯାଏନା, ଯେତେକ୍ଷଣ ସେଟା ନିଖୁଁତ୍ ନ ହେଉଛି। ଥରେ ନିଦରୁ ଉଠି 'ନାମ'ରେ ବସିଛି। କିନ୍ତୁ କୌଣସି ପ୍ରକାରରେ ମନ ଲାଗୁନି। କି ବ୍ୟାପାର ? —ନାମ ହେଉନି କାହିଁକି ? ତା' ପରେ ହଠାତ୍ ମନେପଡ଼ିଲା, ଘରର ବାରଣ୍ଡାରେ ଦେଖିଛି ଖଣ୍ଡେ ଚେୟାର୍ ବଙ୍କା ହୋଇ ରହିଛି। ମୁଁ ସଙ୍ଗେ ସଙ୍ଗେ ସେଟା ଠିକ୍‌ଭାବେ ରଖିଦେଇ ଆସି ନାମରେ ବସିଲି। ସେତେବେଳେ ସବୁ ଠିକ୍‌ଭାବେ ଚାଲିବାକୁ ଲାଗିଲା।

ଅସଲ କଥା ଯା' ଯା' ନେଇ ଆମେ ଅଛୁ, ସବୁକିଛି ଭିତରେ ସତ୍ତା ଅଛି। କୌଣସି କିଛି ତାଙ୍କୁ ଛାଡ଼ି ନାହିଁ। ସବୁ-କିଛି ଭିତରେ ହିଁ ସେ। ତେଣୁ ସବୁକିଛି ମଧ୍ୟରେ ତା'ଭଳି ସତ୍ତା ଥାଏ। ଆସକ୍ତି ହେତୁ କରିବା—ଏକପ୍ରକାର କରିବା ; ଆଉ ସବୁକିଛି ତାଙ୍କର—ସେଥିଲାଗି ପ୍ରତ୍ୟେକ ଜିନିଷର ଯଥାଯଥ ବ୍ୟବହାର କରିବା—ସେଟା ଅନ୍ୟ ପ୍ରକାର।

ଶୀତଳଦା (ଚକ୍ରବର୍ତ୍ତୀ)—ଆପଣ କହିଲେ, ସବୁକିଛି ଭିତରେ ହିଁ ସତ୍ତା ଅଛି। ଗୋଟାଏ ଚେୟାରର କ'ଣ ସତ୍ତା ଅଛି ?

ଶ୍ରୀଶ୍ରୀପିତୃଦେବ—ହଁ, ଅଛି। ତା' ଭଳି ହୋଇ ଅଛି। ଆମେ କହୁ—ସବୁକିଛି ମଧ୍ୟରେ ହିଁ ଈଶ୍ୱର ଅଛନ୍ତି—ତା'ର ମାନେ କ'ଣ ? ତାର ମାନେ—ସବୁକିଛି ନେଇ ହିଁ ସେ। ଯେତେବେଳେ ଏ ବୋଧ ପରିଷ୍କାର ହୁଏ ସେତେବେଳେ— 'ଯାହାଁ ଯାହାଁ ନେତ୍ର ପଡ଼େ—ତାହାଁ ତାହାଁ କୃଷ୍ଣ ସ୍ଫୁରେ'—ଏଭଳି ହୁଏ। ସେଇ ଯେ ଅଛି ନା, ପ୍ରହ୍ଲାଦର କାହାଣୀ ? ପ୍ରହ୍ଲାଦର ପିତା ତାକୁ ପଚାରିଲେ— 'ଏ pillar (ସ୍ତମ୍ଭ) ଭିତରେ କି ତୋର ଈଶ୍ୱର ଅଛି ?' ପ୍ରହ୍ଲାଦ କହିଲା— 'ହିଁ ଅଛନ୍ତି'। ପିତା ତ କେବେହେଲେ ବିଶ୍ୱାସ କରିବନି। ଶେଷରେ ଗୋଇଠା ମାରି pillar ଭାଙ୍ଗିଦେଲା। ତା' ପରେ ଯାହା ହେଲା—ନୃସିଂହ ଅବତାର। ପ୍ରହ୍ଲାଦ ଦେଖାଇଦେଲା ଯେ, ସେ ଅଛନ୍ତି, ........ ସବୁକିଛି ମଧ୍ୟରେ ହିଁ ସେ ଅଛନ୍ତି। ଏଇଭାବ ଜାଣିବା ହିଁ, ବୃହତ୍-ଅହଂର ପରିଚୟ।

୭ଟା ବାଜିଯାଇଛି। ପାଠ ଶେଷ ହେଲା।

## ବୁଧବାର, ଜ୍ୟେଷ୍ଠ-୨୦, ୧୩୮୨ (ଇଂ ୪/୯/୭୫)

ଶ୍ରୀଶ୍ରୀପିତୃଦେବ ଆଜି ଦ୍ୱିପ୍ରହର ୧୨ ଟା ୧୮ ମିନିଟ୍‌ରେ ଦେଓଘରରୁ ମୁର୍ଶିଦାବାଦର ରାମପଡ଼ାସ୍ଥ ଗୁରୁଭାଇ ଶ୍ରଦ୍ଧେୟ ଶ୍ରୀକୃଷ୍ଣ ସିଂ ଙ୍କ ବାସଭବନରେ ଆସି ପଦାର୍ପଣ କଲେ।

ଆଜି ରାମପଡ଼ାରେ 'ଆମ୍ର-ଉତ୍ସବ'ର ଦିନ। ତାଙ୍କ ସଙ୍ଗରେ ଆସିଛନ୍ତି ପୂଜନୀୟା ରାଙ୍ଗାମା, ପୂଜନୀୟ ପଣ୍ଟାଇଦା, ପୂଜନୀୟ ଗୁଣ୍ଟିଦା ଓ ପୂଜନୀୟ ମୁଣ୍ଡିଦା। ଏହାଛଡ଼ା ରହିଛନ୍ତି ଶ୍ରଦ୍ଧେୟ କାର୍ତ୍ତିକ ସରକାର, ଡା: ପ୍ୟାରୀ ନନ୍ଦୀ, ଡା: ପ୍ରଶାନ୍ତ ବରା, ଅଜିତ୍ ଧର, ଶ୍ରୀକଣ୍ଠ ମାଇତୀ, ଲଳିତ ହାଲଦାର, ବିପ୍ଳବ ଗୁପ୍ତ, ଶଙ୍କର ସେନଶର୍ମା, ଧୀରେନ୍ ଭକ୍ତ, ରମେଶ ଦାସ, ନିଖିଳ ଘଟକ, ଅତୁଲ ଗାଙ୍ଗୁଲୀ, ବିରୁପାକ୍ଷ ରାୟ, ରାମାନନ୍ଦ ପରାମାଣିକ, ଗୋବର୍ଦ୍ଧନ ପରିଡ଼ା, ପୂର୍ଣ୍ଣେନ୍ଦୁ ଗୋସ୍ୱାମୀ, ଦିଲୀପ ପାଣ୍ଡେ, ମନୋତୋଷ ରାୟ, ଭାସ୍ୱତସୁନ୍ଦର ଚକ୍ରବର୍ତ୍ତୀ, ସତ୍ୟ ପରାମାଣିକ ପ୍ରଭୃତି। ଆଉ ଆଗରୁ ଆସିଛନ୍ତି– ଭୋଲା କର, ଶଙ୍କର ପାଣ୍ଡେ ଓ ଅନିଲ ଚକ୍ରବର୍ତ୍ତୀ। ମା' ଓ ଭଉଣୀମାନଙ୍କ ଭିତରେ ଆସିଛନ୍ତି ଗୌରୀ ଜାନା, ଲକ୍ଷ୍ମୀରାଣୀ ଗୁହ, ଛବି ଭୌମିକ, ଅଞ୍ଜୁକଣା ଆଚାର୍ଯ୍ୟ ଏବଂ ଆହୁରି ଅନେକେ। ମା' ଓ ଭଉଣୀମାନଙ୍କ ସଂଖ୍ୟା ୮୦ ଏବଂ ଭାଇମାନଙ୍କ ସଂଖ୍ୟା ୭୩। ସମସ୍ତେ ତିନୋଟି କାର ଏବଂ ଦୁଇଟି ବସ୍ ଯୋଗେ ଆସିଛନ୍ତି।

୩୪ ନଂ ଜାତୀୟ ରାଜପଥ ଧରି ରେଜିନଗରଠାରୁ ଗାଡ଼ିଗୁଡ଼ିକୁ ପ୍ରାୟ ଦେଢ଼ ମାଇଲ କଚାରାସ୍ତା ପାର ହେବାକୁ ପଡ଼ିଛି, ସେଥିଲାଗି ଆରୋହୀମାନଙ୍କ ମୁହଁ-ଆଖି-ମୁଣ୍ଡ ଲୁଗାପଟା ରଙ୍ଗୀନ ହୋଇଯାଇଛି ରାସ୍ତାର ଧୂଳିରେ। ଶ୍ରୀଶ୍ରୀପିତୃଦେବ ଆସି କିଛିକ୍ଷଣ ବିଶ୍ରାମ ନେଲେ ଏବଂ ତା'ପରେ ସ୍ନାନ କଲେ ୧ଟା ୩୦ ମିନିଟ୍‌ରେ। ଯା' ଭିତରେ ଶ୍ରୀଶ୍ରୀଠାକୁର-ଭୋଗ ନିବେଦନ କରି ସାରିଛନ୍ତି ଶ୍ରୀ ଅଚିନ୍ତ୍ୟ କୁମାର ଭଟ୍ଟାଚାର୍ଯ୍ୟ। ଶ୍ରୀଶ୍ରୀପିତୃଦେବଙ୍କର ଭୋଗ ହେଲା ଦିନ ୨ଟାରେ।

ଯା'ଢ଼େ ପୂଜନୀୟ ଦାଦା ଏବଂ ଆଶ୍ରମବାସୀଗଣ ସିଂ-ଭବନର ସମ୍ମୁଖସ୍ଥ ଗଙ୍ଗାରେ ସ୍ନାନ ସାରି ଫେରିଲେ। ପୂଜନୀୟ ପଣ୍ଟାଇଦା, ଗୁଣ୍ଟିଦା ଓ ମୁଣ୍ଡିଦା ସମସ୍ତେ ବେଶ୍ କିଛିଟା ପହଁରିଲେ। ଯେଉଁମାନେ ପହଁରା ଜାଣନ୍ତି ନି ସେମାନଙ୍କ ଲାଗି କେତୋଟି କଦଳୀଗଛ କଟା ହୋଇ ରଖା ଯାଇଥିଲା। ମା'ମାନଙ୍କର ସ୍ନାନାର୍ଥେ ଅଦୂରେ ବ୍ୟବସ୍ଥା କରାହୋଇଥିଲା ପରିଷ୍କାର ଘାଟ।

ଶ୍ରୀଶ୍ରୀପତୃଦେବଙ୍କ ଆଗମନ ହେତୁ ସଂ-ବାସଭବନର ସାମ୍ନାରେ ବରାଟ ପ୍ୟାଣ୍ଡେଲ। ସନ୍ଧ୍ୟା ୬ଟା ୧୫ ମିନିଟ୍‌ରେ ସମବେତ ପ୍ରାର୍ଥନା ହେଲା ଏଠାରେ। ପ୍ରାର୍ଥନାନ୍ତେ ଶ୍ରୀଶ୍ରୀପିତୃଦେବ ନଦୀକୂଳକୁ ବୁଲିଯିବାକୁ ଇଚ୍ଛା ପ୍ରକାଶ କଲେ। ସେ ବାହାରିବା ସଙ୍ଗେ ସଙ୍ଗେ ତାଙ୍କର ଅନୁଗମନ କଲେ ବାଳକ ବାଳିକାଙ୍କର ଏକ ବୃହତ୍ ଦଳ–ସଂଖ୍ୟାରେ ପ୍ରାୟ ଦୁଇଶହ। ସଙ୍ଗରେ ପୂଜନୀୟା ରାଙ୍ଗାମା ବି ରହିଛନ୍ତି। ସମସ୍ତେ ଆଗେଇ ଚାଲିଛନ୍ତି ନିକଟସ୍ଥ 'ଅମର ମଇଦାନ' ଆଡ଼କୁ। ଏଇ ମଇଦାନ ଆମ୍ଭମାନଙ୍କ ନିକଟରେ ଅତ୍ୟନ୍ତ ପ୍ରିୟ। ଗତବାର (ଇଂ ୨୧/୧/୧୯୭୪) ଏଠାରେ ଠିଆହୋଇ ସେ କହିଥିଲେ– 'ଏ ସ୍ଥାନ ଦିନେ ମହାତୀର୍ଥରେ ପରିଣତ ହେବ; ଦେଶ-ବିଦେଶର ସହସ୍ର ସହସ୍ର ଲୋକ ଆସି ସମବେତ ହେବେ ଏଠାରେ।'

ନଈକୂଳରେ ସେ ହୁଏତ ବସିପାରନ୍ତି ଭାବି, ଶ୍ରଦ୍ଧେୟ ଭବାନୀ ଭାଇ ସତରଞ୍ଜି ଓ ଟର୍ଚ୍ଚ ଆଣି ରଖିଥିଲେ ଅମର ମଇଦାନରେ। ଶ୍ରୀଶ୍ରୀପିତୃଦେବ ଟିକିଏ ବୁଲାବୁଲି କରି ସତରଞ୍ଜିରେ ଆସି ବସିଲେ ଓ ଉପସ୍ଥିତ ସମସ୍ତଙ୍କୁ ବସିବାକୁ କହିଲେ। କିଛି ସମୟ ବସିବା ପରେ ସନ୍ଧ୍ୟାର

ଅନ୍ଧାରରେ ସମସ୍ତଙ୍କର ଚାଲି ଚାଲି ଯିବାକୁ ଅସୁବିଧା ହୋଇପାରେ ଭାବି ସେ ଉଠିପଡ଼ିଲେ । ଆଚାର୍ଯ୍ୟ ଭବନକୁ ଫେରି ଅତ୍ୟଧିକ ଗରମ ହେତୁ ସେ ଛାତ ଉପରେ ବସିବାର ଇଚ୍ଛା ପ୍ରକାଶ କଲେ । ସେହି ଅନୁସାରେ ବ୍ୟବସ୍ଥା ବି କଲେ ଶ୍ରଦ୍ଧେୟ ଜ୍ୟୋତି ଭାଇ ।

ଶ୍ରୀଶ୍ରୀପିତୃଦେବଙ୍କ ସହ ଛାତ ଉପରକୁ ଉଠି ଆସିଲେ ଭବାନୀ ଭାଇ, ଶିବଦୟାଲ ଭାଇ ଓ ଆଶ୍ରମ ବାଳକ-ବାଳିକାଗଣ । ଇଦାନୀଂ ଏଠାରେ ଆଦୌ ବର୍ଷା ହୋଇନି । ତେଣୁ ବେଶ୍ ଗରମ ପଡ଼ିଛି । ତଥାପି ଗଙ୍ଗାର ଶୀତଳ ପବନ ଛାତ ଉପରେ ବାହିତ ହେବା ସଙ୍ଗେ ସଙ୍ଗେ ସମସ୍ତେ ତୃପ୍ତିବୋଧ କରୁଛନ୍ତି । ହଠାତ୍ ଲାଇଟ୍ ଅଫ୍ ହୋଇଗଲା ।

କିଛିକ୍ଷଣ ପରେ ଶ୍ରୀଶ୍ରୀପିତୃଦେବ ପଚାରିଲେ– 'କ'ଣ ହେଲା, ଆଲୁଅ ଜଳୁ ନାହିଁ ଯେ ?'

ଖବର ନେଇ ଜଣାଗଲା ବୈଦ୍ୟୁତିକ ସରବରାହ ବନ୍ଦ ଥିବା ସମୟରେ, ସେ ଅଭାବ ପୂରଣ ପାଇଁ ଅଣାଯାଇଥିବା generator ଟି ବି ଅଚଳ—ତେଲ ନାହିଁ ବୋଲି । ତେଲ ଶେଷ ହୋଇ ଯାଇଛି । ଆଲୁଅ ଏବଂ ପଙ୍ଖା ବନ୍ଦ ହୋଇଯିବାରୁ ସିଂ-ପରିବାର ଲୋକମାନେ ଖୁବ୍ ବିବ୍ରତ ହୋଇପଡ଼ିଲେ । ତେଲ ଶେଷ ହୋଇଯାଇଛି ଶୁଣି ତ୍ରିଦିବ ଭାଇ ଓ ଖୋକନ୍ (ସ୍ୱସ୍ତିଶିବିରର ଦୁଇଟି ପିଲା) ଅମନି ବାସରେ ଥିବା ୧୦ ଲିଟର ଡିଜେଲ ଡାଇନାମୋର ଚାଳକକୁ ଦେଲେ । ଡାଇନାମୋ ଚାଲିଲା—ଆଲୁଅ ଜଳିଉଠିଲା ଏବଂ ଭରିଉଠିଲା ସିଂ-ଭବନର ପ୍ରାଙ୍ଗଣ ।

ଯା' ଭିତରେ ରାମପଡ଼ା ଓ ଏ ଅଞ୍ଚଳର କତିପୟ ଭାଇ ଆସିଛନ୍ତି ଶ୍ରୀଶ୍ରୀପିତୃଦେବଙ୍କ ଦର୍ଶନ ଅଭିଳାଷରେ । ସେମାନଙ୍କର ନାନାବିଧ ସମସ୍ୟାର ସମାଧାନ କହ୍ନେ । ଜନୈକ ଭାଇଙ୍କର ଝିଅର ଦେହ ରୋଗା ହୋଇଯାଉଛି, ଖାଇଲେ ହଜମ ହୁଏନା । ଏଛଡ଼ା ରାତିବେଳା ଅନେକ ସମୟରେ ନିଦ୍ରାଚ୍ଛନ୍ନ ଅବସ୍ଥାରେ ଏଣୁ-ତେଣୁ କହେ, ମଝିରେ ମଝିରେ ଭୟ ବି ପାଏ । ଉକ୍ତ ଭାଇ କ'ଣ କରିବେ ଭାବି ସ୍ଥିର କରି ପାରୁ ନାହାଁନ୍ତି । ଏଣୁ ଶ୍ରୀଶ୍ରୀପିତୃଦେବଙ୍କ ନିକଟରେ ନିବେଦନ କଲେ ।

ଶ୍ରୀଶ୍ରୀପିତୃଦେବ ସବୁ ଶୁଣି ଡା: ପ୍ରଶାନ୍ତ ଭାଇଙ୍କୁ ଦେଖିବାକୁ ନିର୍ଦ୍ଦେଶ ଦେଲେ । କିଛି ସମୟ ପରେ ପ୍ରଶାନ୍ତ ଭାଇ ଫେରି ଆସି ଜଣାଇଲେ—ଆଜ୍ଞା, ଆପଣଙ୍କର ଯା' ଯା' କୁହାଅଛି ସେ ମୁତାବକ ଔଷଧ ବ୍ୟବହାର କରିବାକୁ କହିଛି ।

ଶ୍ରୀଶ୍ରୀପିତୃଦେବ ଏଥରକ ଉକ୍ତ ଭାଇଟିକୁ ଲକ୍ଷ୍ୟ କରି କହିଲେ—ଯେତେ ରୋଗ ଆସେ ଖାଇବାଠାରୁ । ଖିଆପିଆ ବିଷୟରେ ବିଶେଷ ଲକ୍ଷ୍ୟ ରଖିବାକୁ ପଡ଼େ । ଲୁଣ ଓ ମିଠା ଦୁଇଟିଯାକ କମ୍ ଖାଇବା ଭଲ । ଏଥିରେ ବାତ, ଡାଏବେଟିସ୍, ବ୍ଲଡ୍‌ପ୍ରେସର ସବୁ ଭଲ ହୋଇଯାଏ । କମ୍ କମ୍ ଖାଇବା ଭଲ । ବାରେ ବାରେ ଖାଇବେ । ହଜମ ଭଲ ହେବ । ହଜମ ଭଲ ହେଲେ ହିଁ ପାଇଖାନା ବି ପରିଷ୍କାର ହେବ ।

ଶ୍ରୀଶ୍ରୀପିତୃଦେବ—ଦେହ ଭଲ ରଖିବାକୁ ହେଲେ କିଛି-କିଛି କଞ୍ଚା ଜିନିଷ ପ୍ରତ୍ୟହ ଖାଇବା ଭଲ । କଞ୍ଚା ଭେଣ୍ଡି, କାକୁଡ଼ି, କଦି ଲାଉ ଏସବୁ କଞ୍ଚା ଖାଇହୁଏ । କଦି ପୋଟଳ ମଧ୍ୟ ଖାଇପାର । ଏସବୁ ପ୍ରତ୍ୟହ କିଛି କିଛି ଖାଇବା ଭଲ ।

ଆମେ ଅନେକ ସମୟରେ ଏଇଟା ଭଲ ନୁହେଁ, ସେଟା ଭଲ ନୁହେଁ ଏଭାବେ ବିଚାର କରି ଖାଉ। ଲୁଣ, ରାଗ ଇତ୍ୟାଦି ଅଯଥା ବେଶୀ ଖାଉ। ଏପରି ହେଲେ ଆମେ ସ୍ୱାଦର ଅଧୀନ ହୋଇଯାଇଛୁ ବୁଝିବାକୁ ହେବ। ସ୍ୱାଦକୁ ଆମର ଅଧୀନକୁ ନେଇ ଆସିବାକୁ ହେବ। ସ୍ୱାଦକୁ ଅଧୀନରେ ଆଣି ପାରିଲେ ଆଉ ସେଭଳି ମନେ ହୁଏନା।

ଜଣେ ଭାଇ କହିଲେ—ଆଜ୍ଞା, ଠିକ୍ ମୁତାବକ ଭୋରରୁ ଉଠି ପାରେନା।

ଶ୍ରୀଶ୍ରୀପିତୃଦେବ—ଉଠିଲେ ହିଁ ଉଠାଯାଏ। (ଟିକିଏ ରହି) ତାଙ୍କ (ଇଷ୍ଟ) ପ୍ରତି ଅନୁରାଗ ଥିଲେ ସବୁ ଆପଣାଛାଏଁ ଠିକ୍ ହୋଇଯାଏ। ତାଙ୍କ ପ୍ରତି ଲୋଡ଼ା ସହଜ ଟାଣ, ସହଜ ଅନୁରାଗ।... ଚଲା-ବୁଲାରେ ନାମ କରିବା ପ୍ରୟୋଜନ। ସେତେବେଳେ ଉଠାବସା ସବୁ ଠିକ୍ ହୋଇଯାଏ।

ଉକ୍ତ ଭାଇ—ଆଜ୍ଞା, ଆପଣଙ୍କ ଆଶୀର୍ବାଦ......

ଶ୍ରୀଶ୍ରୀପିତୃଦେବ—ପରମପିତାଙ୍କ ଆଶୀର୍ବାଦ ହେଲେ ସବୁ ହେବ। ତାଙ୍କ ପଥରେ ଚାଲିଲେ ତାଙ୍କର ଆଶୀର୍ବାଦ ମିଳିଥାଏ। ତାଙ୍କରି ନିର୍ଦ୍ଦେଶ ଅନୁଶୀଳନ ଫଳରେ ତାଙ୍କର ଆଶୀର୍ବାଦ ଅନୁଭବ କରିହୁଏ। ସେତେବେଳେ ପ୍ରବୃତ୍ତି-ଫବୃତ୍ତି ସବୁ ଦୂରକୁ ଚାଲିଯାଏ। ପ୍ରବୃତ୍ତି କ'ଣ ଏମିତି ଯାଏ ? ତାଙ୍କ ପ୍ରତି ଟାଣ ହେଲେ ହିଁ ଯାଏ ; ତାଙ୍କ ନିର୍ଦ୍ଦେଶ ମୁତାବକ ଚାଲିଲେ ଯାଏ।

ଏଥରକ ଟାଙ୍ଗରାମାରି (ମୁର୍ଶିଦାବାଦ) ର ସତୀଶ ଘଟକ ଭାଇ କହିଲେ—ଆଜ୍ଞା, ବାଂଲାଦେଶରୁ କିଛିଦିନ ହେଲା ଘୂରି ଆସିଲି, ସେଠାରେ ଅନେକେ ସତ୍‌ସଙ୍ଗ ବିରୁଦ୍ଧରେ ପ୍ରଚାର ଚଳାଉଛନ୍ତି।

ଶ୍ରୀଶ୍ରୀପିତୃଦେବ—ସେଥିରେ କ'ଣ ହୋଇଛି ? ଯେତେ ବିରୋଧିତା, ଯେତେ ବାଧା, ସେତେ ହିଁ ଠାକୁରଙ୍କ କାମ ବଢ଼ିଯାଏ ; ପିଲାବେଳୁ ଦେଖିଆସୁଛି। ଠାକୁରଙ୍କ ସମୟରେ କେତେ ଲୋକ, କେତେ ଦଳ ତାଙ୍କର ବିରୁଦ୍ଧାଚରଣ କଲା କିନ୍ତୁ ଶେଷ ପର୍ଯ୍ୟନ୍ତ କିଛି ବି କରି ପାରିନି। ପରମପିତାଙ୍କର ଅଭିଯାନ ରୋକିବ ସେ ସାଧ୍ୟ କା'ର ?

ଶିବଦୟାଲ ଭାଇ ନିବେଦନ କଲେ—ଆଜ୍ଞା, ଏ ଭାଇ (ରୁକୁନ୍‌ପୁରର ଡାଲିମ ଘୋଷ) କହୁଛନ୍ତି, ସେ ଦୀକ୍ଷା ନେବା ପରେ ଆତ୍ମୀୟସ୍ୱଜନ ଅନେକେ ତାଙ୍କ ସାଙ୍ଗରେ ସମ୍ପର୍କ ଛେଦ କରିଛନ୍ତି।

ଶ୍ରୀଶ୍ରୀପିତୃଦେବ—'ତସ୍ମିନ୍ ତୁଷ୍ଟେ ଜଗତ୍ ତୁଷ୍ଟ'। ସେ ତୁଷ୍ଟ ଥିଲେ ସମସ୍ତେ ତୁଷ୍ଟ ଥାଆନ୍ତି। ପାରିପାର୍ଶ୍ୱିକ ସମସ୍ତେ ତାଙ୍କରି ଲୋକ। ତେଣୁ, ତାଙ୍କୁ ଲକ୍ଷ୍ୟ କରି ସବୁ କରିଯିବାକୁ ହେବ। ଇଷ୍ଟ ହିଁ ଯାହାର ମୁଖ୍ୟ, ପାରିପାର୍ଶ୍ୱିକ ଦିନେ ନା ଦିନେ ତାର ଆପଣାର ହେବ। ଭକ୍ତ ଚାହେଁ କେବଳ ପ୍ରଭୁଙ୍କୁ ନେଇ ଭରପୁର ରହିବାକୁ। ତାଙ୍କଲାଗି ସେ ସବୁପ୍ରକାର ଲାଞ୍ଛନା-ଗଞ୍ଜଣା ସହ୍ୟ କରିବାକୁ ପ୍ରସ୍ତୁତ ଥାଏ।

ବହରମ୍ପୁରର ତ୍ରିପୁରାରି କୁଣ୍ଡୁ ଭାଇ ଜଣାଇଲେ—ଝିଅମାନଙ୍କର ବିବାହ ନେଇ ଚିନ୍ତାରେ ପଡ଼ିଛନ୍ତି। ତିନି ଝିଅ। ବଡ଼ ଝିଅ ବି. ଏ. ପାଶ୍। ଏଥରକ ବି. ଟି. ଦେବ। ତିନିଜଣଯାକ

ବିବାହଯୋଗ୍ୟା । କିନ୍ତୁ କାହାରି ହେଲେ ବିବାହ ଦେଇ ପାରୁ ନାହାଁନ୍ତି । ପାତ୍ର ଠିକ୍ ଜୁଟୁନି ।

ଶ୍ରୀଶ୍ରୀପିତୃଦେବ—ପରମପିତାଙ୍କ ଦିଗରେ ଲକ୍ଷ୍ୟ ରଖି କାମ କରିଯାଅ । ବିବାହ ଯେତେବେଳେ ହେବାର ଠିକ୍ ହେବ । (ଟିକିଏ ରହି) ଏ ଝିଅ କିଛି କରିବାକୁ ଚାହେଁ ?

ତ୍ରିପୁରାରି ଭାଇ—ଝିଅର ଇଚ୍ଛା-ଅନିଚ୍ଛା କିଛି ନାହିଁ ।

ଶ୍ରୀଶ୍ରୀପିତୃଦେବ—ମୁଁ ଯାହା କହିବି କରି ପାରିବ ?

—ଆଜ୍ଞା, ହଁ ପାରିବି ।

—ତାର B. T. ପରୀକ୍ଷା ହୋଇଗଲେ ଆଶ୍ରମକୁ ପଠାଇ ଦେଇପାରିବ ? ତୁମର ମତ ଅଛି ?

—ଆଜ୍ଞା ହଁ, ଅଛି ।

—କିନ୍ତୁ ଝିଅର ତ ମତ ଥିବା ଦରକାର, ଝିଅ ବଡ଼ ହୋଇଛି । ତାର ବି ତ ମତାମତର ବ୍ୟାପାର ଅଛି । ଝିଅର ଯଦି ମତ ଥାଏ ତାହେଲେ ତାକୁ ପଠାଇ ଦେଇପାର । ଆଶ୍ରମରେ କାମ ଅଛି ।

—ଆଜ୍ଞା, ତା'ହିଁ ହେବ ।

—ସେତେବେଳେ ପୁଣି ଚାକିରୀ ପାଇଲେ ଚାଲି ଯିବନି ତ ?

—ଝିଅର ସେ ପ୍ରକାର ଇଚ୍ଛା ନାହିଁ ବୋଲି ତ ମନେହୁଏ ।

ଏଥର ତ୍ରିପୁରାରି ଭାଇ ପ୍ରଥମେ ଟିକିଏ ଭାବିନେଇ ତା ପରେ ପ୍ରଶ୍ନ କରିଲେ— କିନ୍ତୁ ଝିଅର ବିବାହ ?

ଶ୍ରୀଶ୍ରୀପିତୃଦେବ— ବିବାହ ଯେତେବେଳେ ହୁଏ ହେବ । ପରମପିତାଙ୍କ ଇଚ୍ଛା ହେଲେ ହିଁ ହେବ, ତା' ତ ଆଶ୍ରମରେ ଥାଇ ବି ହୋଇପାରେ ।

କିନ୍ତୁ ବଡ଼ ଝିଅର ବିବାହ ନ ହେଲେ ତ ଅପର ଦୁଇ ଝିଅଙ୍କର ବିବାହ ଦେଇ ପାରେନା ।

—କାହିଁକି ପାର ନା ? ପାତ୍ର ଜୁଟାଇ ପାରିଲେ ଦେଇପାର । ଏରକମ ବିଧାନ ବି ଅଛି । ତେବେ ପରାମର୍ଶ କରି ସବୁ କାମ କରିବା ଭଲ । ଝିଅମାନଙ୍କର ମା' ସଙ୍ଗେ ପରାମର୍ଶ କରିବାକୁ ହୁଏ ।

—ତାହେଲେ ଯା'ର ଲାଗି ପାତ୍ର ଜୁଟିବ ତାର ବିବାହ ଦେଇପାରେ ?

—ହଁ ପାର, ତେବେ ପରାମର୍ଶ କରି କରିବା ଭଲ ।

ଶିବଦୟାଲ ଭାଇ—ଆଜ୍ଞା, ପୁଅମାନଙ୍କ କ୍ଷେତ୍ରରେ ମଧ୍ୟ ଅନେକ ସମୟରେ ବଡ଼ଭାଇର ବିବାହ ନ ହୋଇ ଛୋଟ ଭାଇର ବିବାହ ହୁଏ ।

ଶ୍ରୀଶ୍ରୀପିତୃଦେବ—ହଁ, ତା ତ ହୁଏ ହିଁ । ଅନେକ ସମୟରେ ବଡ଼ଭାଇ ବିବାହ ବି କରେ ନା ପୁଣି କରିବାକୁ ଚାହିଁଲେ ବି ହୁଏତ ଅନ୍ୟ କାରଣରୁ ହୁଏ ନା ।

ଆଶ୍ରମର ଛୋଟ-ଛୋଟ ଯେଉଁ ସମସ୍ତ ଝିଅମାନେ ତାଙ୍କ (ଶ୍ରୀଶ୍ରୀପିତୃଦେବଙ୍କ) ସଙ୍ଗେ ଆସିଛନ୍ତି ସେମାନଙ୍କ ଭିତରୁ ଜଣକୁ ପାଖକୁ ଡାକି ଜିଜ୍ଞାସା କରିଲେ—ତୋର ଭଲ ନାମ କ'ଣ ତ ?

ଝିଅଟି ତାର ନାମ କହିବାରୁ ଶ୍ରୀଶ୍ରୀପିତୃଦେବ ଜିଜ୍ଞାସା କଲେ—ସେଟା ଜଣ ଠାକୁରଙ୍କ ଦିଆ ନାମ ?

ଉକ୍ତ ଝିଅଟି—ଆଜ୍ଞା, ହଁ।

ଶ୍ରୀଶ୍ରୀପିତୃଦେବ—ତାହେଲେ ସେଇ ନାମରେ ଡାକିବାକୁ ହୁଏ। ସେଥିରେ କାମ ହୁଏ। ଠାକୁରଙ୍କ ଦିଆ ନାମରେ ମନ୍ତ୍ର ଭଳି କାମ ହୁଏ।

ଜଣେ ଭାଇ ଏଥର ନିବେଦନ କରିଲେ—ଆଜ୍ଞା, ମୋର ଝିଅ ସ୍ୱପ୍ନ ଦେଖିଛି ଯେ ତାର ଜେଜେ ମା (ଉକ୍ତ ଭାଇଙ୍କ ମା) କହିଛି ମୋ ଲାଗି ତୋର ବାପାକୁ କହି ଖଣ୍ଡେ ଲୁଗା ଦେ। ମା (ଉକ୍ତ ଭାଇଙ୍କ ମା) ତ ନାହିଁ ତେଣୁ ଏଇ ଲୁଗାଟା (ଥାନ ଲୁଗା) ଆପଣଙ୍କ ଲାଗି ଆଣିଛି।

ଶ୍ରୀଶ୍ରୀପିତୃଦେବ—ଯାର ସ୍ୱପ୍ନ ଦେଖିଛ ତାକୁ ହିଁ ଦେବାକୁ ହୁଏ।

ଉକ୍ତ ଭାଇ—ମା ତ ନାହିଁ। ଆପଣଙ୍କର ଯା' ଇଚ୍ଛା ହୁଏ କରିବେ।

ଏଥର ଶ୍ରୀଶ୍ରୀପିତୃଦେବ ଅଚିନ୍ତ୍ୟ ଭାଇ (ଭଟ୍ଟାଚାର୍ଯ୍ୟ) ଙ୍କୁ ଡାକି ନିର୍ଦ୍ଦେଶ ଦେଲେ—ଏଇ ଲୁଗାଟ ଦକ୍ଷିଣା ସହ (ଉକ୍ତଭାଇ ୧ ଟଙ୍କା ଦକ୍ଷିଣା ଦେଲେ) ଠାକୁରଙ୍କ ସାମ୍ନାରେ ରଖି ଜେଜେମାର (ଯିଏ ସ୍ୱପ୍ନରେ ନିର୍ଦ୍ଦେଶ ଦେଇଥିଲା) ନାମ, ଗୋତ୍ର ଜାଣି ତାକୁ (ଜେଜେମାକୁ) ନିବେଦନ କରି ସେଟା ରଖିଦେବୁ ଦକ୍ଷିଣା ତୁଇ ନେବୁ।

ତାଙ୍କ ନିର୍ଦ୍ଦେଶରେ ଏଥରକ ରକ୍ ରାଣୀ ଦତ୍ତ (ଆଶ୍ରମ ବାଳିକା) ଦୁଇଟି ଗୀତ ଗାଇ ଶୁଣାଇଲେ।

ରାତି ୧୦ଟା। ଛାତ ଉପରେ ଶ୍ରୀଶ୍ରୀପିତୃଦେବଙ୍କ ବିଛଣାରେ ମଶାରି ଟାଙ୍ଗି ଦିଆହେଲା। ସେ କେବଳ ମାତ୍ର ଏକ ଘଟି ଜଳ ପିଇ ଶୋଇପଡ଼ିଲେ। ପୂଜନୀୟା ରାଙ୍ଗାମାଙ୍କୁ ଡାକି ନିର୍ଦ୍ଦେଶ ଦେଲେ—ସମସ୍ତଙ୍କୁ ଠିକ୍‌ଭାବେ ଖୁଆଇଦିଅ। ଯିଏ ଯାହା ଖାଇବାକୁ ଚାହେ ଦେବାର ବ୍ୟବସ୍ଥା କର। ମିଠା, ଆମ୍ବ ଯା ଅଛି......

ପୂଜନୀୟା ରାଙ୍ଗାମା—ସବୁ ତ ଅଛି।

—ହଁ। ତୁମେ ପାଖରେ ଥାଇ ଖୁଆଇଦେବ।

## ଗୁରୁବାର, ୨୧-ଜ୍ୟେଷ୍ଠ, ୧୩୮୨ (ଇଂ ୫/୬/୭୫)

ସିଂ-ଭବନର ସମ୍ମୁଖ ପ୍ୟାଣ୍ଡେଲରେ ସକାଳ ୪ଟା ୫୫ ମିନିଟ୍‌ରେ ଶ୍ରୀଶ୍ରୀପିତୃଦେବଙ୍କ ସହ ସମସ୍ତେ ବିନତି-ପ୍ରାର୍ଥନାରେ ଯୋଗଦେଲେ। ପ୍ରାର୍ଥନାନ୍ତେ ଆଚାର୍ଯ୍ୟ-ଭବନର (ଶ୍ରୀକୃଷ୍ଣ ସିଂ ଶ୍ରୀଶ୍ରୀପିତୃଦେବଙ୍କ ଲାଗି ଏଇ ଗୃହଟି ନିର୍ଦ୍ଦିଷ୍ଟ କରି ରଖିଛନ୍ତି 'ଆଚାର୍ଯ୍ୟ-ଭବନ' ନାମରେ। ରାମପଡ଼ା ଆସିଲେ ଏଇ ଗୃହରେ ସେ ଉଠନ୍ତି।) ବାରଣ୍ଡାରେ ସେ ଉପବେଶନ କରିଛନ୍ତି। ଆଶ୍ରମବାସୀ ବାଳକମାନଙ୍କୁ (ଯେଉଁମାନେ ତାଙ୍କ ସଙ୍ଗେ ଆସିଛନ୍ତି) ଦେଖି ଜାଣିବାକୁ ଚାହିଁଲେ, ଗତ ରାତିର ପାଟିତୁଣ୍ଡର କାରଣ। ଗଭୀର ରାତ୍ରିରେ ସେ ଯେତେବେଳେ ନାମ-ଧ୍ୟାନରେ ବସିଥିଲେ ସେ-ସମୟରେ କେତେ ଜଣ ବାଳକଙ୍କର କଥାବାର୍ତ୍ତା ଏବଂ ନଳକୂପରୁ ଜଳ

ଉଠାଇବାର ଶବ୍ଦ ଶୁଣିଥିଲେ। ପ୍ରଦୀପ (ପାଲ), ସୁବୀର (ବିଶ୍ୱାସ) ପ୍ରଭୃତି କେଇଜଣ ଜଣାଇଲେ, ସମୟ ନ ବୁଝି ସେମାନେ ମଝିରାତିରେ ଠାକୁରପୂଜା ଓ ପ୍ରାତଃକୃତ୍ୟାଦି ସାରିଛନ୍ତି।

ଶ୍ରୀଶ୍ରୀପିତୃଦେବ ତା ଶୁଣି କହିଲେ—ସେଥିରେ କଣ ହେଲା ? ଏତେ ହଇଚଇ ହୁଏ କାହିଁକି ? ସେତେବେଳେ ପାଖରେ ତ ଅନେକେ ଶୋଇଥିଲେ।

[ସବୁ ସମୟରେ ଅପରର ଯେମିତି ଅସୁବିଧା ନ ହୁଏ, ଦେଖିବାକୁ ହୁଏ। ଯିଏ ଅପରକୁ ଶାନ୍ତି ଦେଇପାରେ ନା, ଅପରର ସୁଖ-ସୁବିଧାର ପ୍ରତି ଲକ୍ଷ୍ୟ ରଖେ ନା—ସେ କେବେହେଲେ ବି ଶାନ୍ତି ପାଏ ନା। ଆମ ପ୍ରତ୍ୟେକଙ୍କର, ଅନ୍ୟ-ସମସ୍ତଙ୍କର ସୁଖ-ସୁବିଧା ଆଡ଼କୁ ଲକ୍ଷ୍ୟ ରଖି ସବୁ ସମୟରେ ଚାଲିବା ଉଚିତ। ]

ଏହାପରେ ଆଶ୍ରମର ବାଳକ-ବାଳିକାମାନଙ୍କୁ ମୀରମଦନଙ୍କ କବରଖାନା ଦେଖେଇ ଆଣିବାକୁ ସେ କାର୍ତ୍ତିକ ଭାଇ (ସରକାର), ଭବାନୀ ଭାଇ ଓ ଶିବଦୟାଲ ଭାଇଙ୍କୁ ନିର୍ଦ୍ଦେଶ ଦେଲେ।

ରାମପଡ଼ାଠାରୁ ଐତିହାସିକ ପଲାଶୀର ପ୍ରାନ୍ତର କେତେ ମାଇଲର ପଥ। ଯୁଦ୍ଧ ଲାଗିଥିଲା ପଲାଶୀର (ନଦୀୟା) ଆମ୍ରକୁଞ୍ଜରେ ; କିନ୍ତୁ ସିରାଜଦ୍ଦୌଲାଙ୍କ ସୈନ୍ୟବାହିନୀର ତମ୍ବୁ ଥିଲା ନଦୀୟା ଅତିକ୍ରମକରି ମୁର୍ଶିଦାବାଦର ପ୍ରାନ୍ତରରେ—ରାମପଡ଼ା ଓ ପାର୍ଶ୍ୱବର୍ତ୍ତୀ ଅଞ୍ଚଳରେ। ପ୍ରଭୁଭକ୍ତ ବୀର ସୈନିକ ମୀରମଦନଙ୍କ କବରଖାନା ରାମପଡ଼ାଠାରୁ ୧୫ ମିନିଟର ରାସ୍ତା। ଗତକାଲିଠାରୁ ବାଳକ-ବାଳିକାଗଣ କବର-ଖାନା ଦେଖିବାଲାଗି ଉଦ୍‌ଗ୍ରୀବ। ତେଣୁ ଆଜି ଶ୍ରୀଶ୍ରୀପିତୃଦେବଙ୍କ ନିର୍ଦ୍ଦେଶ ଜାଣିପାରି ସଭିଏଁ ମହାଖୁସି।

କିଛିକ୍ଷଣ ପରେ ଶ୍ରୀଶ୍ରୀପିତୃଦେବ ଗୃହ ଭିତରୁ ପୁନରାୟ ଗୃହର ବାହାରର ବାରଣ୍ଡାରେ ଆସି ଦକ୍ଷିଣମୁଖୀ ହୋଇ ଖଟ ଉପରେ ବସିଲେ। ତାଙ୍କ ଆସନର ଏକପାର୍ଶ୍ୱରେ ସିଂ-ଭବନର ଅମୃତପିୟାସୀ ମା'ମାନେ, ଅନ୍ୟ ପାର୍ଶ୍ୱରେ ଭାଇମାନେ ତାଙ୍କର ଶ୍ରୀମୁଖ-ନିଃସୃତ ଇଷ୍ଟ-ପ୍ରସଙ୍ଗ ଶୁଣିବାର ଅଭିଳାଷରେ ସମବେତ ହୋଇଛନ୍ତି।

କଥା-ପ୍ରସଙ୍ଗରେ ଶ୍ରୀଶ୍ରୀପିତୃଦେବ ଜଣାଇଲେ—ଏଥର ଆଉ ତିନି ରାତିରୁ ବେଶୀ ରହୁନି। ଆଗାମୀ ପହରିଦିନ ଏଠାରୁ ଚାଲିଯିବି।

ସିଂ-ଭବନର ବଧୂଗଣ ଉତ୍ତର ଦେଲେ—ଆଜ୍ଞା, ତା ହୋଇପାରେ ନା।

ଶ୍ରୀଶ୍ରୀପିତୃଦେବ ଉପସ୍ଥିତ ଭକ୍ତମାନଙ୍କ ଆଡ଼କୁ ଅନାଇ କହିଲେ—ଏମାନଙ୍କର କେତେ କଷ୍ଟ, ସମସ୍ତ ଘର ଛାଡ଼ିଦେଇ ନିଜେ ଗଳିକନ୍ଦିରେ ଅଛନ୍ତି। ଅବଶ୍ୟ ଏମାନେ ଅସୁବିଧାକୁ ଅସୁବିଧା ମନେ କରନ୍ତିନି। ତେଣୁ ଭଲଲାଗେ। ମନରେ ତାପ ରଖି ଅପରକୁ ସୁବିଧା ଦେଲେ କାମ ହୁଏ ନା। ଅପରକୁ ସୁବିଧାଦେଇ ଯଦି ନିଜେ ଆନନ୍ଦ ନ ପାଏ ତାହେଲେ ପରମପିତାଙ୍କ ଆଶୀର୍ବାଦ ମିଳେ ନା। ମନଃକ୍ଷୁଣ୍ଣ ହୋଇ ଅପରକୁ କିଛି ଦେବାରେ କାମ ହୁଏ ନା। ଏଇ ଯେମିତି ଅର୍ଥ-ଫର୍ଥ। ତାହାକୁ ଦେଲି, କିନ୍ତୁ ମନ ଖରାପ ହୋଇଗଲା। ଏଥିରେ ଦୁଇ ଦିଗରୁ କ୍ଷତି। ଅର୍ଥ ବି ଗଲା, କାମ ବି କିଛି ହେଲାନି।

ଖାଦ୍ୟ ସମ୍ପର୍କରେ କଥା ଉଠିଲା। ଶ୍ରୀଶ୍ରୀପିତୃଦେବ କହିଲେ,—କେତେବେଳେ କଣ

ଖାଇବାକୁ ହେବ, କେବେ କଣ କରିବାକୁ ହେବ, କଣ କହିବାକୁ ହେବ—ଯେ ଯେତେ ବେଶି ବୁଝେ ସେ ହିଁ ସେତେବଡ଼ ପଣ୍ଡିତ। କେବଳ ବଡ଼-ବଡ଼ ଡିଗ୍ରି ଥିଲେ ହିଁ ପଣ୍ଡିତ ହୋଇ ହୁଏ ନା। ଅନେକଙ୍କର ଟଙ୍କା-ପଇସା ଅଛି। ଯେତେବେଳେ ଯା' ଖୁସି ଖାଆନ୍ତି। ପରେ ବ୍ଲଡପ୍ରେସର, ଡାୟାବେଟିସ୍, ଗ୍ୟାଷ୍ଟ୍ରିକ୍ ଅଲସର—ନାନା ରୋଗରେ ଭୋଗନ୍ତି।

ଶ୍ରୀକୃଷ୍ଣ ସିଂ—ଆଜ୍ଞା, ଅଳ୍ପ ଖାଇଲେ ମୋର ଦେହ ଭଲ ଥାଏ।

ଶ୍ରୀଶ୍ରୀପିତୃଦେବ—ମୋର ମତ ବି ସେୟା। କମ୍ ଖାଇଲେ ହିଁ ଦେହ ଭଲ ରହେ। ଯେତେ ରୋଗ ସବୁ ଖାଇବାରୁ। ଅଧିକାଂଶ ମଣିଷ ହିଁ କେତେବେଳେ କଣ ଖାଇବାକୁ ହୁଏ ଜାଣନ୍ତିନି। ଲୋଭରେ ପଡ଼ି ଖାଆନ୍ତି।

ହାବଲ ପରାମାଣିକ ତାର ରୋଗର କଥା ଜଣାଇଲା।

ଶ୍ରୀଶ୍ରୀପିତୃଦେବ—ଲୁଣ, ମିଠା ମଝିରେ ମଝିରେ ପୁରାପୁରି ବାଦ୍ ଦେବାକୁ ହୁଏ। ଖାଇବା ପାତ୍ରରେ ଲୁଣ ନେବା ଦରକାର ହୁଏ ନା। ଆଉ ମଝିରେ ମଝିରେ ପୁରାପୁରି ବାଦ୍ ଦେବାକୁ ହୁଏ।

—କେତେଦିନ ପୁରାପୁରି ବାଦ୍ ଦେବାକୁ ହୁଏ ?

ଶ୍ରୀଶ୍ରୀପିତୃଦେବ—ବର୍ଷକରେ କେଇ ସପ୍ତାହ। ଆଉରି ବେଶୀ ପାରିଲେ ଭଲ। ହୁଏତ ଏକ ସପ୍ତାହ କୌଣସି ପ୍ରକାର ଲୁଣ ଥିବା ଜିନିଷ, ଲୁଣ ପଡ଼ିଥିବା ତରକାରି ଖାଇଲନି। ତାପରେ ପରବର୍ତ୍ତୀ ସପ୍ତାହରେ ଟିକେ ଅଧେ ଖାଇବାକୁ ଲାଗିଲ। ପରେ ପୁଣି ପୁରାପୁରି ବାଦ୍ ଦେଲ—ଏ- ଭାବେ।

ଶ୍ରୀକୃଷ୍ଣ ସିଂ—ଆଜ୍ଞା, ଲୁଣ ନ ଦେଲେ ସ୍ୱାଦ ଲାଗେନା ଯେ।

ଶ୍ରୀଶ୍ରୀପିତୃଦେବ—ସେଇ ତ, ଯେତେକ୍ଷଣ ସ୍ୱାଦର ଅଧୀନରେ ଆମେ ଥାଉ, ସେତେକ୍ଷଣ ତା'ହିଁ ମନେହୁଏ। ସ୍ୱାଦକୁ ନିଜର ଅଧୀନ କଲେ ସେଭଳି ଆଉ ମନେ ହୁଏ ନା। ଯେତେବେଳେ ଯା' ଖାଇବି ତା' ଅମୃତ ମନେହେବ। ଯେଉଁମାନେ ସ୍ୱାଦର ଅଧୀନରେ ଥା'ନ୍ତି ସେମାନେ ଏଇଟା ଖାଇବିନି, ସେଇଟା ଖାଇବିନି ଏଭାବେ ଚାଲନ୍ତି। ....ଯେତେବେଳେ ଲୁଣ ବାଦ୍ ଦେବାକୁ ହୁଏ ସେତେବେଳେ କିଛି କିଛି କଞ୍ଚା ଜିନିଷ ଖାଇବା ଭଲ। ଏଇ ଯେମିତି ମଟର, କାକୁଡ଼ି, ବୀଟ୍।

ଶ୍ୟାମସୁନ୍ଦର (ରକ୍ଷିତ)—ଆଜ୍ଞା, ଯେତେବେଳେ ସେଇ କଞ୍ଚା ଜିନିଷ ଖାଏ, ସେତେବେଳେ ରାତିରେ କଣ ଖାଇଲେ ଭଲ ହୁଏ ?

ଶ୍ରୀଶ୍ରୀପିତୃଦେବ—ରାତିରେ ଖଣ୍ଡେ ରୁଟି (ଅଧଛଟାଙ୍କି ଅଟାର) ଓ କପେ କ୍ଷୀର ପିଇବା ଭଲ। ସକାଳେ ଅଳ୍ପ ଘୋଳଦହି ଓ ଦି'ପହରେ କପେ ଦହି।

—Plain ଡାଲି-ଭାତ ଗୋଟିଏ ତରକାରି ଖାଇବା କିଭଳି ?

ଶ୍ରୀଶ୍ରୀପିତୃଦେବ—ଖୁବ୍ ଭଲ। ଭାତ ଏଇ ଚାରିଟି (ଆଙ୍ଗୁଠି ଦ୍ୱାରା ଦେଖେଇ) ଡାଲି ଓ କଞ୍ଚା ସବ୍‌ଜୀ ଏଇ ଯା' କହିଲି ଖାଇବା ଖୁବ୍ ଭଲ। ଅବଶ୍ୟ ସ୍ଥାନ-କାଳ-ପାତ୍ରାନୁଯାୟୀ ଖାଇବାଟା ଯୁକ୍ତିସଙ୍ଗତ ଭାବରେ ଟିକିଏ-ଅଧେ ବଦଳାଇ ଦେବାକୁ ହୁଏ। (କିଛିକ୍ଷଣ ପରେ)

ମଝିରେ ମଝିରେ ମୁଁ ସେଇଭାବେ ଖାଏ। ଦିନରେ ଖଣ୍ଡେ ରୁଟି, ରାତିରେ ବି ସେୟା। ଦିନରେ ଖାଇବାବେଳେ ଟିକିଏ ଦହି, ମଧୁ ଆଉ ରାତିରେ ଟିକିଏ ଦୁଧ। କସି କାକୁଡ଼ି କେତେଖଣ୍ଡ ଏହା ସହିତ ଥାଏ।

ଗତକାଲି ବେଶୀ ଖାଇବାହେତୁ ରାମଗୋପାଳର (ସାହା) ଶରୀର ଅସୁସ୍ଥ, କ୍ଷୁଧା ନାହିଁ। ଶ୍ରୀଶ୍ରୀପିତୃଦେବ ତା' ଶୁଣି ସାତଟା ଗୋଲମରିଚ ଛେଚି ଆଣିବାକୁ ନିର୍ଦ୍ଦେଶ ଦେଲେ। ଜଣେ ଭାଇ ତା' ନେଇ ଆସିବାରୁ ସେ ରାମଗୋପାଳକୁ ସେଗୁଡ଼ିକୁ ଚୋବାଇ ଓ ଲାଳରେ ଭିଜାଇ ଖାଇବାକୁ କହିଲେ। ଏହାପରେ ଏକଗ୍ଲାସ ଜଳ ପିଇବାକୁ ନିର୍ଦ୍ଦେଶ ଦେଲେ। ଆଉ କିଛି ଖାଇବାକୁ ନିଷେଧ କଲେ।

ଏଥରକ ଶ୍ରୀଶ୍ରୀପିତୃଦେବ ସମସ୍ତଙ୍କ ଉଦ୍ଦେଶ୍ୟରେ କହିଲେ, ରୋଗ ହେଲେ ଆମେ ଡାକ୍ତର ଦେଖାଉ। କିନ୍ତୁ ରୋଗ ହେବାକୁ ଦେବା କାହିଁକି ?... ଲୋଭ ସମସ୍ତ ରିପୁର କେନ୍ଦ୍ରସ୍ଥଳ। ଲୋଭ ଜୟ କରିପାରିଲେ ସବୁ ହୁଏ। ସେଇ ଅର୍ଥ, ସ୍ତ୍ରୀଲୋକ ସବୁକିଛି ଆଡ଼କୁ ନଜର—ଲୋଭଠାରୁ। ଯେ ଏଟା ଜୟ କରିପାରେ, ସେ ସବୁପାରେ। ଏକମାତ୍ର ଲୋଭ କରିବାକୁ ହୁଏ ଠାକୁରଙ୍କୁ ପାଇବା ଲାଗି। ତାଙ୍କର ସେବା କରିବା ଲାଗି। ସେତେବେଳେ ଅନ୍ୟ ସମସ୍ତ ଲୋଭ ପଳାଇଯାଏ।

ଶ୍ୟାମସୁନ୍ଦର—ଆଜ୍ଞା, ପ୍ରବୃତ୍ତିର ଊର୍ଦ୍ଧ୍ୱକୁ ଉଠିବାର ପଥ ତ ସେଇ ?

ଶ୍ରୀଶ୍ରୀପିତୃଦେବ—ହଁ, ତା'ହିଁ ତ। ତାଙ୍କପ୍ରତି ଟାଣ ହେଲେ ଅନ୍ୟ ସମସ୍ତ ଟାଣ ଛିଣ୍ଡିଯାଏ। ସେତେବେଳେ କୌଣସି ଭଲ ଜିନିଷ ଦେଖିଲେ ହିଁ ମନେହୁଏ ଠାକୁରଙ୍କ ଲାଗି ନେଇଯାଏ, ଠାକୁର-ଭୋଗରେ ଲାଗିବ। ପୁଣି ସେତେବେଳେ ସୁନ୍ଦରୀ ସ୍ତ୍ରୀଲୋକ ଦେଖି ମା'ହିଁ ମନେହେବ। ମନେହେବ ପରମପିତାଙ୍କର କି ସୁନ୍ଦର ସୃଷ୍ଟି ! ପ୍ରବୃତ୍ତିର ମଧ୍ୟରେ ରହିଲେ ଏସବୁ ମନେ ନ ହୋଇ ଅନ୍ୟ ଭାବ ଆସିବ।

ଠାକୁରଙ୍କ ପ୍ରତି ଟାଣ ଥିଲେ ବିଶ୍ୱକୁ ବଶକୁ ଅଣାଯାଏ। ସେତେବେଳେ ସବୁ ପାରିହୁଏ। ହନୁମାନର ଯେଭଳି ହୋଇଥିଲା। ଏହା ହେଲା ସିଦ୍ଧପୁରୁଷର ଲକ୍ଷଣ। ତା' ନ ହୋଇ ଯଦି ଖୁବ୍ ନାମ-ଧ୍ୟାନ କରୁଛି, ପାହାଡ଼-ଗୁହାରେ କଟାଉଛି କିନ୍ତୁ ଚଳନ-ଚରିତ୍ରର କିଛିମାତ୍ର ପରିବର୍ତ୍ତନ ହେଲା ନାହିଁ, ବୁଝିବାକୁ ହେବ କିଛି ବି ହୋଇନି।

ଧନଞ୍ଜୟ ଭାଇ (ପାଲ, କାଟୋୟା)—ଆଜ୍ଞା, ଇଷ୍ଟ କଣ ଅନ୍ୟ କେହି ହୋଇ ପାରନ୍ତି ?

ଶ୍ରୀଶ୍ରୀପିତୃଦେବ—ହଁ, ହୋଇପାରନ୍ତି। ମା-ବି ହୋଇ ପାରନ୍ତି। ସେତେବେଳେ ସେଇ ମା'ର ପ୍ରତି ଟାଣ ହିଁ ମୁକ୍ତି ଆଡ଼କୁ ନେଇଯିବ। ମା'ର ପ୍ରତି ଅକପଟ ଭଲପାଇବା ଥିଲେ ସେତେବେଳେ ସଦ୍‌ଗୁରୁ ମଧ୍ୟ ଲାଭ ହୋଇଯାଏ। ଠାକୁର ତ କହୁଛନ୍ତି—

"ମାତୃଭକ୍ତି ଅଟୁଟ ଯେତେ
ସେଇ ପୁଅ ହୁଏ କୃତୀ ତେତେ।"

ଧନଞ୍ଜୟ ଭାଇ—ଇଷ୍ଟ ଯଦି କାହାର କାଳୀ ହୁଅନ୍ତି ?

ଶ୍ରୀଶ୍ରୀପିତୃଦେବ—ହଁ, ତା'ହେଲେ ବି ହୁଏ। ଯେ ପ୍ରକୃତ କାଳୀଭକ୍ତ, ସେ ଆଉ ଜୀବବଳି

ଦେବାକୁ ଯାଏ ନା, ସେତେବେଳେ ସେ ଭାବେ, ଏ-ବି ମା'ର ସନ୍ତାନ।

ପ୍ରଶ୍ନ—ବଡ଼ଦା, ରାମାୟଣରେ ପଢ଼ିଛି ଲକ୍ଷ୍ମଣ ଚଉଦ ବର୍ଷ ନ ଖାଇ ରହିଥିଲେ। ଏଟା କ'ଣ ସତ୍ୟ ?

ଶ୍ରୀଶ୍ରୀପିତୃଦେବ—ସତ୍ୟ କି ମିଥ୍ୟା ତୁମେ ହିଁ ଜାଣ। (କ୍ଷଣିକ ରହି) ନ ଖାଇ ରହିଥିଲେ ମାନେ ? ନ ଖାଇ କଣ ମଣିଷ ରହିପାରେ ? ତା' ଯେତେବେଳେ ପାରେ ନା, ସେତେବେଳେ ଯେମିତି କରି ରୁହାଯାଏ ତା' ନିଶ୍ଚୟ କରିଥିଲେ। ଚଉଦ ବର୍ଷ ପରେ ବି ତ ଲକ୍ଷ୍ମଣ ବଞ୍ଚିଥିଲେ। ନା କ'ଣ ନ ଥିଲେ ? ତା' ଯଦି ଥିଲେ, ତାହାଲେ ଯା' କରି ବଞ୍ଚି ରହିହୁଏ, ଯା' ଖାଇଲେ ଶରୀର ରୁହେ ତା' ଖାଉଥିଲେ। ଏଟା ବୁଝିବାରେ ଆଉ କଷ୍ଟ କଣ ? ସେ ନିଶ୍ଚୟ ଏଭଳି ଜିନିଷ କିଛି-ନା-କିଛି ଖାଉଥିଲେ ଯଦ୍ଵାରା ଶରୀର ବି ରୁହେ ଏବଂ ଶକ୍ତି ବି ବଢ଼ିଉଠେ।

ଆଲୋଚନା-ପ୍ରସଙ୍ଗରେ ସେ କହିଲେ, ଥରେ ଏକମାସ ପ୍ରାୟ କିଛି ନ ଖାଇ ଥିଲି। କେବଳ ଲେମ୍ବୁ-ପାଣି ରୋଜ ସକାଳବେଳା ଖାଉଥିଲି। ସେଇ ଏକମାସ ନ ଖାଇବାରୁ ସ୍ମୃତିଶକ୍ତି କମିଗଲା। ଆଖିର ଶକ୍ତି ମଧ୍ୟ କମିଗଲା। ଏ ଭାବରେ ଉପବାସ ଦେଲେ ଶରୀର ନଷ୍ଟ ହୋଇଯାଏ। ବୁଦ୍ଧି କମିଯାଏ।.... ମୋର ତ ବୁଦ୍ଧି ହିଁ ନାହିଁ।

ଶିବଦୟାଲ ଭାଇ—ଆଜ୍ଞା, ମୋଟେ ନୁହେଁ। ଆପଣଙ୍କର ଖୁବ୍ ବୁଦ୍ଧି ଅଛି।

ଶ୍ରୀଶ୍ରୀପିତୃଦେବ—ମୋ ଅପେକ୍ଷା ତୋର ବୁଦ୍ଧି ବେଶୀ।

—ଆଜ୍ଞା କେବେହେଲେ ନୁହେଁ। ଆପଣଙ୍କ ବୁଦ୍ଧିର ତୁଳନା ନାହିଁ।

ଶ୍ରୀଶ୍ରୀପିତୃଦେବ ପୂର୍ବବତ୍ ସ୍ମିତ କଣ୍ଠରେ କହିଲେ—ନା, ନା, ତୋର ବୁଦ୍ଧି ହିଁ ବେଶୀ। ମୁଁ ଖୋସାମୋଦ କରି କହୁନି।

ଶିବଦୟାଲ ଭାଇ ଅପ୍ରସ୍ତୁତ ହୋଇପଡ଼ିଲେ। ପୁନରାୟ ଖାଦ୍ୟ-ଗ୍ରହଣ ପ୍ରସଙ୍ଗରେ ଶ୍ରୀଶ୍ରୀପିତୃଦେବ କହିଲେ—ଖୁବ୍ ବେଶୀ ଖାଇଲି ଅଥଚ ହଜମ ହେଲା ନାହିଁ, ସେତେବେଳେ କଣ ହୁଏ—ଅଜୀର୍ଣ୍ଣ ହୋଇ ସେଇ ଅଂଶ ପାଇଖାନା ସଙ୍ଗେ ବାହାରିଯାଏ। ପାଇଖାନା ନ ହେଲେ କିମ୍ବା ଯେ ଅଂଶ ପାଇଖାନା ସଙ୍ଗେ ବାହାର ହେଲାନି, ତା' ଶରୀର ଭିତରେ ଥାଇ ନାନାପ୍ରକାର ରୋଗ ସୃଷ୍ଟି କରେ। ସେତେବେଳେ ବାତ, ବ୍ଲଡ୍‌ପ୍ରେସର, ଡାଇବେଟିସ୍—ବିଭିନ୍ନ ରୋଗ ସୃଷ୍ଟି ହୁଏ। ....ଲୁଣ-ଫୁଣ ଏକଦମ୍ କମେଇଦେବାକୁ ହୁଏ। ଲୁଣରୁ ମୋହ ଜନ୍ମେ। ମିଠା ଓ ଦୁଧ ଜାତୀୟ ଖାଦ୍ୟରୁ କାମ ଜନ୍ମେ। ତେବେ ଯୌବନରେ ଏସବୁ ଖାଇବାର ପ୍ରୟୋଜନ ବି ଅଛି। ପରମପିତା ଯା' ଯା' ସୃଷ୍ଟି କରିଛନ୍ତି ସବୁକିଛିର ପ୍ରୟୋଜନ ଅଛି। ଆମ୍ଭମାନଙ୍କର ପ୍ରୟୋଜନ ବୁଝି ତା' ଗ୍ରହଣ କରିବାକୁ ହେବ। ଠିକ୍‌ଭାବେ ସବୁକିଛିର ବ୍ୟବହାର ଜାଣିବା ଦରକାର। ଠିକ୍‌ଭାବରେ ବ୍ୟବହାର କରିଲେ ସେତେବେଳେ ଆଉ ଗୋଳମାଳ ହୁଏନା। ଏ ସମସ୍ତ ମୋର ବୋଧରୁ କହୁଛି, ମୁଁ ତ ବେଶୀ ବହି-ଫହି ପଢ଼ିନି। ମୋର ଯା' ବୋଧହୁଏ ତା'ହିଁ କହୁଛି।

ମାଛ-ମାଂସର କଥା ଉଠିଲା। ଶ୍ରୀଶ୍ରୀପିତୃଦେବ କହିଲେ—ଆମେ ମାଛ-ମାଂସ ଖାଉନା କାହିଁକି ? ଆମେ ତ ଠାକୁରଙ୍କୁ ଭଲପାଉଁ। ଆଉ ଠାକୁରଙ୍କୁ ଭଲପାଉଁ ବୋଲି ତାଙ୍କର ସୃଷ୍ଟ

ଜୀବ-ଜଗତକୁ ବି ଭଲପାଉଁ । ତେଣୁ ମାଛ-ମାଂସ ଖାଇବାକୁ ଇଚ୍ଛା କରେନା । ଗୋଟାଏ ଇତର ପ୍ରାଣୀକୁ ବିନାଶ କରିବାକୁ ବି ମନ ଚାହେନା ଏଟା ହେଲା ଗୋଟାଏ ଦିଗ । ଆହୁରି ଅନ୍ୟ ଦିଗ ବି ଅଛି । ମାଛ-ମାଂସ ଖାଇଲେ ଶରୀରରେ toxin (ବିଷ) ତୈରୀ ହୁଏ । ସେତେବେଳେ ଯେତେସବୁ ରୋଗର ସୂତ୍ରପାତ । ଆଜି ନ ହେଉ ଆଗାମୀ କାଲି ସାରାବିଶ୍ୱର ଲୋକେ ଏହା ଅବଶ୍ୟ ବୁଝିପାରିବେ । ଏକ୍ଷଣି ତ ବିଭିନ୍ନ ଦେଶରେ ଖାଦ୍ୟାଖାଦ୍ୟ ନେଇ research (ଗବେଷଣା) ଚାଲିଛି । ପୃଥିବୀର ଅନେକେ ଇଚ୍ଛା କରି ହିଁ ନିରାମିଷ ଖାଦ୍ୟ ଗ୍ରହଣ କରୁଛନ୍ତି ।

ଗତ ରାତ୍ରିରେ ଯେଉଁ ପିଲାମାନେ ଚିତ୍କାର ଆରମ୍ଭ କରିଥିଲେ ସେମାନଙ୍କୁ ସେ ଡାକି ସେଭାବେ ଚିତ୍କାର ନ କରିବା କଥା କହିଲେ । ସେମାନେ ଚାଲିଯିବାରୁ ସେ କହିଲେ,—ଗୋଟାଏ ଶ୍ଳୋକ ପଢ଼ିଥିଲି—

ଅଦାତା ବଂଶଦୋଷେଣ କର୍ମଦୋଷାଦ୍ ଦରିଦ୍ରତା ।
ଉନ୍ମାଦ ମାତୃଦୋଷେଣ ପିତୃଦୋଷେଣ ମୂର୍ଖତା ॥

ଆହୁରି କହିଲେ—ଉନ୍ମାଦ ଅର୍ଥ ଏଠାରେ ପାଗଳ (mad) ନୁହେଁ, ଉନ୍ମାଦର ଅର୍ଥ ହେଲା ଉଚ୍ଛୃଙ୍ଖଳତା ।

ଏଥରକ ଧନଞ୍ଜୟ ଭାଇ ପ୍ରଶ୍ନ କଲେ—ଆଜ୍ଞା, ବୈଷ୍ଣବ-ଶାସ୍ତ୍ରରେ ଯେଉଁ ଶ୍ଳୋକ ଅଛି—

'ତୃଣାଦପି ସୁନୀଚେନ ତରୋରିବ ସହିଷ୍ଣୁଣା ।
ଅମାନିନା ମାନଦେନ କୀର୍ତ୍ତନୀୟଃ ସଦା ହରିଃ ॥'

ଏଠାରେ 'ତୃଣାଦପି ସୁନୀଚେନ' କଥାର ଅର୍ଥ କଣ ?

—ତୋର କ'ଣ ମନେହୁଏ ?

—ମୁଁ ଯଦି ବ୍ରାହ୍ମଣ ହୁଏ କିନ୍ତୁ ଶୂଦ୍ରର ପାଦରେ ମୁଣ୍ଡ ଲଗାଇ ନ ପାରେ, ତାହେଲେ ତ ତୃଣାଦପି ସୁନୀଚେନ ହୋଇ ହୁଏନା ।

—ତୁଇ ବ୍ରାହ୍ମଣ ନା କଣ ?

—ଆଜ୍ଞା, ନା ।

—ତେବେ ଯେ କହିଲୁ ? ତେବେ ସେଇ ଉଦାହାରଣ ଦେଲୁ କାହିଁକି ? ଏଟା ତ ବର୍ଣ୍ଣାଶ୍ରମର ବିରୁଦ୍ଧ କଥା । ଏଟା ଭକ୍ତିର ଅପଳାପ । (ବିରକ୍ତିର ସୁରରେ) ଏ-ପ୍ରକାର କଥା ଶୁଣିବାକୁ ମୋର ମୋଟେ ଭଲ ଲାଗେନା । ଶୂଦ୍ର ଶୂଦ୍ରର ଭଳି ବଡ଼, ବିପ୍ର ବିପ୍ରର ଭଳି ବଡ଼ । କେହି ଛୋଟ ନୁହଁନ୍ତି । ସକଳେ ନିଜ-ନିଜ ଦିଗରୁ ଶ୍ରେଷ୍ଠ । ଏମାନେ କେହି ବ୍ରାହ୍ମଣ ନୁହଁନ୍ତି । କିନ୍ତୁ ସମସ୍ତେ ବ୍ରାହ୍ମଣ ହୋଇ ପାରନ୍ତି ।

....'ତୃଣାଦପି ସୁନୀଚେନ' ମାନେ କଣ ? ତାର ମାନେ ଗୋଟାଏ ତୃଣ ବି ମୋଠାରୁ ଛୋଟ ନୁହେଁ । ସେତେବେଳେ ଯାର ମାନ ନାହିଁ (କେହି ମନେକରେ) ତାକୁ ବି ମାନ ଦେବାକୁ ଇଚ୍ଛା କରେ । ଗୋଟାଏ ରିକ୍ସାବାଲା, ଗୋଟାଏ ପରିବାବାଲା, ଏମାନଙ୍କୁ ଆମେ ସାଧାରଣତଃ 'ତୁଇ-ତୁକାର' କରୁ । ନିତାନ୍ତ ଅବହେଳାର ପାତ୍ର ମନେକରୁ । କିନ୍ତୁ ତା' ଠିକ୍ ନୁହଁ । ଏ

ରକମ ଭାବିବାକୁ ହୁଏନା, ଭାବିବାକୁ ହୁଏ—ମୁଁ ବି ତାର ସେବକ। ସେ ତାର କାମ କରୁଛି। ମୁଁ ମୋର କାମ କରୁଛି। ଏଇ ହେଲା ତୃଣାଦପି ସୁନୀଚେନ ହେବା। ଏଇ ଭାବ ଆସିବା ଦରକାର। ଆଉ ଏଇ ଭାବ ଅନୁଯାୟୀ କାମ ହେଲା ଅମାନୀକୁ ମାନ ଦେବା (ଅମାନୀନା ମାନଦେନ) 'ତୃଣାଦପି ସୁନୀଚେନ'—ଭାବ ଆସିଲେ ଅହଂ ପ୍ରଶ୍ରୟ ପାଏନା ଏଟା କିନ୍ତୁ ହୀନ ଭାବିବାର ବିଷୟ ନୁହଁ।

ଜନୈକ ଭାଇ—ଚୈତନ୍ୟ ଚରିତାମୃତରେ ପଢ଼ିଛି—

'ଆମାରେ ଈଶ୍ୱର ଭାବେ ଆପଣାରେ ହୀନ
ତାର ପ୍ରେମେ ଆମି କଭୁ ନା ହଇ ଅଧୀନ।'

ଶ୍ରୀଶ୍ରୀପିତୃଦେବ—ହଁ, ତା' ହିଁ ତ। ......'ତରୋରିବ ସହିଷ୍ଣୁଣା' ତରୁ ଭଳି ସହିଷ୍ଣୁ ହୋଇଉଠିବା। ତରୁ କଣ କରେ ? ଗୋଟାଏ ପତ୍ର ଛିଣ୍ଡାଇଲେ, କିମ୍ବା ମୂଳରେ କୁରାଢ଼ି ମାରିଲେ କୌଣସି ପ୍ରତିକାର କରେ ନା। ସହ୍ୟ କରେ। ସେହିପରି ଅପରର ସୁଖ-ସୁବିଧା ଲାଗି ସବୁରକମ କଷ୍ଟସ୍ୱୀକାର କରିବାକୁ ରାଜି ରହିବା, ତାହା ହେଲା 'ତରୋରିବ ସହିଷ୍ଣୁଣା'। ଆଉ 'କୀର୍ତ୍ତନୀୟଃ ସଦା ହରିଃ' ହେଲା ସବୁ ସମୟରେ ତାଙ୍କର ଗୁଣକୀର୍ତ୍ତନ କରିବା, ସବୁ ସମୟରେ ତାଙ୍କର ଯାଜନ କରିବା। ଏଗୁଡ଼ିକ ମୁହଁର କଥା ନୁହଁ। ଏସବୁ ଚରିତ୍ରଗତ କରିବାକୁ ହୁଏ। ତାହେଲେ ହିଁ ସିଦ୍ଧି। ଠାକୁର କେତେ ବାଣୀ ଦେଇଛନ୍ତି। ଏସବୁ ବାଣୀର ଯେ-କୌଣସି ଗୋଟାଏ ଚରିତ୍ରଗତ କରି ପାରିଲେ ହିଁ ସିଦ୍ଧି। (ଟିକିଏ ରହିଯାଇ) ସିଦ୍ଧ ହେବା ମାନେ ? ନରମ ହେବା। ସିଦ୍ଧ ହେଲେ ମଣିଷର ego (ଅହଂ) ନରମ ହୁଏ। ସେତେବେଳେ ସବୁପ୍ରବୃତ୍ତିର ବନ୍ଧନ ଢିଲା ହୋଇ ଆସେ। ପୁଣି ଦେଖ ଆଳୁ ଯେମିତି ସିଦ୍ଧ ହେଲେ ନରମ ହୁଏ, ସବୁକିଛି ସାଙ୍ଗରେ ମିଶେ, ସେପରି ମୁଁ ନରମ ହେବି, ନମ୍ର ହେବି। ଯିଏ ବି ହେଉ ନା କାହିଁକି ମୋ ପାଖକୁ ଆସି ତୃପ୍ତ ହେବ, ତାର ଭଲଲାଗିବ— ଏ-ପ୍ରକାର ହୋଇଉଠିବା ଦରକାର।

ପ୍ରଶ୍ନକର୍ତ୍ତାଙ୍କ ଆଡ଼କୁ ଅନାଇ କହିଲେ—ଆମ୍ଭମାନଙ୍କର ଉଦ୍ଦେଶ୍ୟ ହେଲା ଈଶ୍ୱରଲାଭ। ଯା'ର ଈଶ୍ୱରଲାଭ ହୁଏ ସେ ଯେଉଁ ବର୍ଣ୍ଣର ବି ହେଉ, ତାର ପାଦଧୂଳିରେ କେତେଲୋକ ଉଦ୍ଧାର ପାଇଯାଆନ୍ତି।

ଶିବଦୟାଲ ଭାଇ—ଆଜ୍ଞା, ବର୍ଣ୍ଣାଶ୍ରମ ମାନି ଚଳିପାରିଲେ ଅନେକ କିଛି ଠିକ୍ ହୋଇଯାଏ।

ଶ୍ରୀଶ୍ରୀପିତୃଦେବ—ବର୍ଣ୍ଣାଶ୍ରମ ତ ଦୂରର କଥା। ନିଜକୁ ମାନି ଚଳିପାରିଲେ ହିଁ ଯଥେଷ୍ଟ। ନିଜକୁ ବୁଝି ପାରିଲେ ହିଁ ହେଲା। ମଣିଷ ନିଜକୁ ହିଁ ବୁଝେନା, ବର୍ଣ୍ଣାଶ୍ରମ କଣ ବୁଝିବ!

ଯା'ହେ ଘଣ୍ଟାରେ ୯ଟା ବାଜି ୩୦ ମିନିଟ୍। ଶ୍ରୀଶ୍ରୀପିତୃଦେବ ବିଭିନ୍ନ ଲୋକଙ୍କ ପ୍ରଶ୍ନର ଉତ୍ତର ଦେଇ ଚାଲିଛନ୍ତି। ମଝିରେ ମଝିରେ କାଶ ହେଉଛି। ଗଳାରେ ବ୍ୟଥା। ତେବେ ବି ତାଙ୍କର ବିରାମ ନାହିଁ। ଆର୍ତ୍ତ, ପୀଡ଼ିତ ଓ ଜିଜ୍ଞାସୁଙ୍କ ଦଳ ତାଙ୍କୁ ପାଇଲେ ଛାଡ଼ିବାକୁ ଚାହେନା ମୋଟେ। ସେ-ବି ସମସ୍ତଙ୍କ ପ୍ରଶ୍ନର ସମାଧାନ ନ ଦେଇ କ୍ଷାନ୍ତ ହୁଅନ୍ତିନି କେଉଁଦିନ। ଏଭଳି ସର୍ବତ୍ର। ଯେଉଁଠିକି ଯା'ନ୍ତି ସେଠାରେ ହିଁ ଭିଡ଼, ସେଠାରେ ହିଁ ତାଙ୍କୁ ଅନର୍ଗଳ କଥା କହିବାକୁ

ପଡ଼େ। ଗତ ଫେବୃୟାରୀରେ (ଫେବୃୟାରୀ ୮ ତାରିଖରେ ଦେଓଘରରୁ ଯାତ୍ରା କରନ୍ତି) ସେ ଆସାମ ଯାଆନ୍ତି—ଗୌହାଟି ସତ୍‌ସଙ୍ଗ-ବିହାର—ଶ୍ରୀଶ୍ରୀଠାକୁରଙ୍କ ଶ୍ରୀବିଗ୍ରହର ଆବରଣ ଉନ୍ମୋଚନ କରିବାକୁ। ଆସାମର ବିଭିନ୍ନ ଅଞ୍ଚଳରେ ସତ୍‌ସଙ୍ଗ-ବିହାର ଓ ଅଧିବେଶନକେନ୍ଦ୍ର ପରିଦର୍ଶନ କରନ୍ତି—କେଉଁଠି ବା ନୂତନ କେନ୍ଦ୍ରର ଉଦ୍‌ବୋଧନ କରନ୍ତି। ସର୍ବତ୍ର ଲୋକଙ୍କ ଚାପ। ପ୍ରଶ୍ନ ଓ ଆଳାପନ। ଏହା ପରେ ଦେଓଘରରେ ନବବର୍ଷ ଉତ୍ସବ—ଲକ୍ଷ ଲକ୍ଷ ଲୋକଙ୍କ ସମାବେଶ। ନବବର୍ଷ ଉତ୍ସବ ପରେ କିଛିଦିନ ରାଞ୍ଚିରେ ଅବସ୍ଥାନ କରନ୍ତି ବିଶ୍ରାମ ପାଇଁ—ଇଷ୍ଟଭ୍ରାତା ଶୁଭେନ୍ଦୁ ଭାଇ (ପାଲ) ଙ୍କ ଅନୁରୋଧରେ। ଶୁଭେନ୍ଦୁ ଭାଇ ନିଜେ ଖଣ୍ଡେ ଘର ତାଙ୍କପାଇଁ ଭଡ଼ା ନେଇ ରଖିଥିଲେ। ରାଞ୍ଚିରୁ ଦେଓଘର। ତାପରେ ଜ୍ୟେଷ୍ଠ-୨୦ରେ ରାମପଡ଼ା। ରାମପଡ଼ା ତାଙ୍କର ଖୁବ୍ ପ୍ରିୟ। ଗତ ଜାନୁୟାରୀ (୨୦/୧/୧୯୭୫) ରେ ବି ରାମପଡ଼ା ଆସିଥିଲେ—ଏଥରକଠାରୁ ରାମପଡ଼ା ସ୍ୱସ୍ତି-ଶିବିରରେ ତାଙ୍କର ଶୁଭାଗମନକୁ ଚିରସ୍ମରଣୀୟ କରି ରଖିବାଲାଗି ଉଦ୍‌ବୋଧିତ ହୁଏ ଅମର-ମେଳା। ଏ ସମୟକୁ ବି ହଜାର ଲୋକ ଆସନ୍ତି ତାଙ୍କର ଦର୍ଶନ ଅଭିଳାଷରେ। ରାମପଡ଼ା ଆସି ସେ ଅସୁସ୍ଥ ହୋଇ ପଡ଼ନ୍ତି। କଥା ଥିଲା ରାମପଡ଼ାରୁ କୃଷ୍ଣନଗର ଓ ମାଲଦହ ଆସିବାକୁ ; କିନ୍ତୁ ତାଙ୍କର ଶାରୀରିକ ଅସୁସ୍ଥତା ଲାଗି ନଦୀୟାର କର୍ମୀମାନଙ୍କ ଅନୁରୋଧରେ କୃଷ୍ଣନଗର ଯିବା ସ୍ଥଗିତ ରହିଲା। କୃଷ୍ଣନଗର ଗଲେନି ଅବଶ୍ୟ, କିନ୍ତୁ ଫରାକ୍‌କାର କର୍ମୀ ଶ୍ୟାମଳ ସାହା ନଛୋଡ଼ବନ୍ଧା। ତାଙ୍କର ବିଶେଷ ଅନୁରୋଧରେ ଶେଷ ପର୍ଯ୍ୟନ୍ତ ଫରାକ୍‌କା ଯିବାକୁ ହେଲା। ଫରାକ୍‌କା ହୋଇ ଆସିଲେ ମାଲଦହ। ମାଲଦହରୁ ଦେଓଘର। ଏଭଳି ଗୋଟିଏ ସ୍ଥାନରୁ ଅନ୍ୟ ସ୍ଥାନ। ଯେଉଁଠିକୁ ଯା'ନ୍ତି ସେଠାରେ ହିଁ ତାଙ୍କର ସଙ୍ଗ-ସୁଧା ଲାଭ କରିବାକୁ ଉଦ୍‌ଗ୍ରୀବ ଥା'ନ୍ତି ଅଗଣିତ ନର-ନାରୀ।

ଶ୍ରୀକୃଷ୍ଣ ସିଂ କହିଲେ—ଅନେକ ବେଳ ହୋଇଛି, ଏଥରକ ଉଠିଲେ ହେବ।

ମୁରାରୀମୋହନ ସିଂ (ଶ୍ରୀକୃଷ୍ଣ ସିଂଙ୍କ ବଡ଼ଭାଇ)—ଆପଣ ଉଠିଲେ ହିଁ ସମସ୍ତେ ଚାଲିଯିବେ। ତା' ନ ହେଲେ ତ କେହି ଯାଉ ନାହାଁନ୍ତି।

ଉପସ୍ଥିତ ସମସ୍ତେ ଏଥରକ ଉଠିପଡ଼ିଲେ। ଶ୍ରୀଶ୍ରୀପିତୃଦେବ ଆଚାର୍ଯ୍ୟ ଭବନରେ ପ୍ରବେଶ କଲେ।

## ଶୁକ୍ରବାର, ଜ୍ୟେଷ୍ଠ-୨୨, ୧୩୮୨ (ଇଂ ୬/୬/୭୫)

ସକାଳ ୬ଟା ବାଜି ୧୫ ମିନିଟ। ଶ୍ରୀଶ୍ରୀପିତୃଦେବ ଆଚାର୍ଯ୍ୟ-ଭବନର ବାରଣ୍ଡାରେ ତକ୍ତପୋଷ ଉପରେ ସମାସୀନ। ରାମପଡ଼ା ଓ ପାର୍ଶ୍ୱବର୍ତ୍ତୀ ବିଭିନ୍ନ ଗ୍ରାମର ଆଗନ୍ତୁକଗଣ ଦର୍ଶନମାନସରେ ଭିଡ଼ କରିଛନ୍ତି ତାଙ୍କ ସମ୍ମୁଖରେ। ଅଧିକାଂଶ ଲୋକେ ନିବେଦନ କରୁଛନ୍ତି ସେମାନଙ୍କ ଆଧି-ବ୍ୟାଧିର କଥା। ଶ୍ରୀଶ୍ରୀପିତୃଦେବ ସମାଧାନ ଦେଉଦେଉ କଥା-ପ୍ରସଙ୍ଗରେ କହିଲେ—ମାତ୍ରାତିରିକ୍ତ ଲୁଣ, ମିଠା (sweet meats) ଓ ଚିନି ଖାଇବାର ଅଭ୍ୟାସ କିନ୍ତୁ ବେଶୀଭାଗ ରୋଗର ମୂଳ କାରଣ। ତେବେ ଏସବୁର ବି ପ୍ରୟୋଜନ ରହିଛି। ପରମପିତାଙ୍କ ଜଗତରେ ଯା'କିଛି ସୃଷ୍ଟ ସବୁକିଛିର ହିଁ ପ୍ରୟୋଜନ ଅଛି। ସ୍ଥାନ-କାଳ-ପାତ୍ର ଭେଦରେ

ବ୍ୟବହାର କରିବାକୁ ହୁଏ ।

ପ୍ରଶ୍ନ କଲେ ପାଞ୍ଚୁଗୋପାଳ ମୁଖାର୍ଜି ନାମକ ଜନୈକ ଭାଇ—ଆଜ୍ଞା, ଚା' ସାଙ୍ଗରେ ଚିନି ଖାଇବା କଣ ଖରାପ ?

ଶ୍ରୀଶ୍ରୀପିତୃଦେବ—ସବୁ ସମୟରେ ଯେ ଖରାପ ତା, ନୁହେଁ । କିନ୍ତୁ ଯେତେବେଳେ ସ୍ଥିର କରିବି ଖାଇବିନି ବୋଲି, ସେତେବେଳେ ଖାଇବା ଖରାପ । ସଂକଳ୍ପଚ୍ୟୁତ ହେବା ଖୁବ୍ ଖରାପ । ବାରମ୍ବାର ଖାଇବା ଭଲ, ଅଳ୍ପ ଅଳ୍ପ କରି । ଦୁଇଥର ଜାଗାରେ ଚାରି ପାଞ୍ଚ ଥର ଖାଇବା କିନ୍ତୁ କେବେହେଲେ ବେଶୀ ଖାଇବା ଭଲ ନୁହେଁ ।...... ମଧୁ ଖାଇବା ଖୁବ ଭଲ । ପ୍ରତିଦିନ ଭାତଖାଇବା ସମୟରେ ମଧୁ ସ୍ୱାସ୍ଥ୍ୟ ପକ୍ଷରେ ହିତକର ।

ଗତକାଲି ଅପରାହ୍ନ ୫ଟାରେ ଆଚାର୍ଯ୍ୟ-ଭବନ ସାମ୍ନାରେ କୃଷ୍ଣନଗରର ଜଣେ ଗୁରୁଭାଇ ଅରବିନ୍ଦ ଘୋଷ ସାଇକେଲ ଖେଳ ଦେଖାଇଛନ୍ତି । ସାଇକେଲ ଉପରେ ଶୋଇ ଆଖି ସାହାଯ୍ୟରେ ତଳୁ ବ୍ରୁଶ୍ ଓ ବ୍ଲେଡ ଉଠାଇଛନ୍ତି । ସେହି ସମୟରେ ଶ୍ରୀଶ୍ରୀପିତୃଦେବ ଲକ୍ଷ୍ୟ କରନ୍ତି ଯେ, ଉକ୍ତ ଭାଇଟିର ଆଖି ମିଟ୍‌ମିଟ୍ କରୁଛି । କାରଣ ପଚାରି ଜାଣିଲେ ଯେ କିଛିଦିନ ଧରି ଆଖି ଲାଲ ହୋଇଛି, ଆଖିରେ ବ୍ୟଥା ଅଛି । ଶ୍ରୀଶ୍ରୀପିତୃଦେବ ସଙ୍ଗେସଙ୍ଗେ ଖେଳ ବନ୍ଦ କରିବାକୁ ନିର୍ଦ୍ଦେଶ ଦେଲେ ଏବଂ ଆଖିରେ ଲଗାଇବାର ଔଷଧ କହିଦେଲେ—ସ୍ୱାସ୍ଥ୍ୟବତୀ କୌଣସି ମା'ର କ୍ଷୀର ସହିତ 'ରସଦ' ମାରି ଆଖିରେ ଲଗାଇବାକୁ ହେବ ଦିନକୁ ପାଞ୍ଚଥର । ଦୁଇ-ତିନି ଦିନ ଲଗାଇଲେ ହିଁ ଭଲ ହୋଇଯିବ; 'ଅରିଓ ମାଇସିନ୍' ମଲମ ବ୍ୟବହାର କରିବା ବି ଭଲ ।

ଆଜି ଉକ୍ତ ଭାଇକୁ ଦେଖି ଶ୍ରୀଶ୍ରୀପିତୃଦେବ କହିଲେ—ଏଭଳି ଖେଳ ଆଉ ଦେଖାଇବନି । ଆଖି ସାହାଯ୍ୟରେ କିଛି ଉଠାଇବାକୁ ଯିବନି ।

କେତେଜଣ ଦୁସ୍ଥ ସ୍ତ୍ରୀଲୋକ ଓ ଝିଅପିଲା ଘରର ଦରଜା ସାମ୍ନାରେ ଠିଆ ହୋଇଛନ୍ତି । ଶ୍ରୀଶ୍ରୀପିତୃଦେବଙ୍କ ଦୃଷ୍ଟି ପଡ଼ିବା ସଙ୍ଗେ ସଙ୍ଗେ ସେ ଆଦେଶ ଦେଲେ ସେମାନଙ୍କୁ ଖୁଆଇଦେବାକୁ । ଏଠାକୁ ଆସିବା ପରଠାରୁ ସମସ୍ତଙ୍କର ଖିଆ ପିଆର ଦେଖାଶୁଣା କରୁଛନ୍ତି ପୂଜନୀୟା ରାଙ୍ଗାମା । ତାଙ୍କର ଆଦେଶ ପାଇ ପୂଜନୀୟା ରାଙ୍ଗାମା ସଙ୍ଗେ ସଙ୍ଗେ ଘର ଭିତରୁ ଚୂଡ଼ା, ଦହି, ମିଠା ଓ ଆମ୍ବ ଅଣାଇଲେ । ପତ୍ରରେ ଚୂଡ଼ା ଓ ମିଠା ଦିଆଗଲା । କିନ୍ତୁ ଦହି ଦେବା ସମୟରେ ସେମାନେ ଅନିଚ୍ଛା ପ୍ରକାଶ କଲେ । କହିଲେ—ଆମେ ଦହି ଖାଉନା ।

ଶ୍ରୀଶ୍ରୀପିତୃଦେବ—ତା' ଶୁଣି କହିଲେ—ଖାଏନା କାହିଁକି ପଚାର ତ !

ବିଜୟ ଭାଇ (ସରକାର) ଜଣାଇଲେ— ଏମାନେ ମୁସଲମାନ, ସେଇଥିପାଇଁ ।

ଶ୍ରୀଶ୍ରୀପିତୃଦେବ—ମୁସଲମାନ—ସେଥିରେ କ'ଣ ହୋଇଛି ? ଆମଆଡ଼େ ତ ସମସ୍ତେ (ମୁସଲମାନ) ଦହି ଖାଆନ୍ତି ।

ଅମୃତ ଭାଇ (ସିଂ) ପୁଣି ସେମାନଙ୍କ ପତ୍ରରେ ଦହି ଦେବାକୁ ଆଗେଇଗଲେ । ସେମାନେ ତ ଆଦୌ ନେବେନି । ବରଂ ପତ୍ର ଗୋଟେଇ ନେବାର ଉପକ୍ରମ କରିଲେ, କହିଲେ—ନେବୁନି ।

ଶ୍ରୀଶ୍ରୀପିତୃଦେବ ଘରର ବାରଣ୍ଡା ଉପରୁ କହିଲେ—ନା, ନା, ଠିକ୍ ନେବେ। ତୁମେ ଦିଅ, ଖାଇବେ ନି କାହିଁକି ? ନିଶ୍ଚୟ ଖାଇବେ।

ମନେହେଲା, ସେମାନେ କେହି କେବେ ଆମ୍ବ, ଦହି ଇତ୍ୟାଦି ଜିନିଷ ଖାଇ ନାହାଁନ୍ତି। ଆମ୍ବ ନେବା ସମୟରେ ବି ଆପତ୍ତି ଥିଲା। ସେ ଆପତ୍ତି ଟେକିନି। ବର୍ତ୍ତମାନ ତାଙ୍କ କଥାରେ (ଶ୍ରୀଶ୍ରୀପିତୃଦେବଙ୍କ କଥାରେ) ଆମ୍ବ, ଦହି ଆଦି ସବୁ ଦିଆଗଲା। ସେମାନେ ସମସ୍ତେ ପେଟଭରି ପରିତୃପ୍ତି ସହକାରେ ଖାଇଲେ।

ଏହି ପ୍ରସଙ୍ଗ ଧରି ଶ୍ରୀଶ୍ରୀପିତୃଦେବ ପୁରୁଣା ଦିନର ଗୋଟିଏ ଘଟଣା କହିଲେ—ଥରେ ଟ୍ରେନରେ କଲିକତା ଯାଉଥାଏ। ଆମ ପାଖରେ କେତେଜଣ ସାହେବ ଓ ମେମ୍ ବି ବସିଥା'ନ୍ତି। ପାଖରେ ଜଣେ young ମାରୱାଡ଼ୀ ଥିଲେ। ଗାଡ଼ି ଚାଲୁଚାଲୁ ହଠାତ୍ ଦେଖେ, ଆମ ସିଟ୍ (seat) ପଛରେ ଭୀମନାଗର ସନ୍ଦେଶ ଏକବାକ୍ସ। ଯାତ୍ରୀମାନଙ୍କୁ ପଚାରିଲି—କେହି ନିଶ୍ଚିତ କିଛି କହି ପାରିଲେନି। ବୁଝିଲି, କେହିଜଣେ ଭୁଲକରି ସନ୍ଦେଶ ବାକ୍ସଟି ଛାଡ଼ିଦେଇ ତାର ଗନ୍ତବ୍ୟ ସ୍ଥଳରେ ଓହ୍ଲାଇ ଯାଇଛି। ଖୋଲି ଦେଖେ, ବେଶ୍ ବଡ଼ ବଡ଼ size ର କଡ଼ାପାଗର ସନ୍ଦେଶ। ମୁଁ ସମସ୍ତଙ୍କୁ ସନ୍ଦେଶଗୁଡ଼ିକ ବାଣ୍ଟିକରି ଦେବାକୁ ଲାଗିଲି। ସେହି ଇୟଂ ମାରୱାଡ଼ୀ ଭାଇଟି କିନ୍ତୁ ମୋଟେ ନେବାକୁ ରାଜି ହେଲେନି। ମୁଁ ନେବାଲାଗି ବାରମ୍ବାର କହିବାରୁ ସେ କହିଲେ—'ଆପଣ କଣ ଜୋର୍‌କରି ଖୁଆଇବେ'? ମୁଁ କହିଲି—'ହଁ, ଖୁଆଇବି'। ସେ କହିଲେ—'ନା' ଖାଇବିନି'। ମୁଁ କହିଲି—'କାହିଁକି ଖାଇବେନି ? ମୁଁ ଦେଉଛି, ଆପଣ ଖାଇବେନି କାହିଁକି ? ମୋର ଲୁଗାପଟା ପରିଷ୍କାର-ପରିଚ୍ଛନ୍ନ, ବର୍ଣ୍ଣଦିଗରୁ ବି ନୀଚ ନୁହେଁ। ତାଛଡ଼ା ଆପଣଙ୍କୁ ତ କିଛି ଖରାପ ଜିନିଷ ଖାଇବାକୁ ଦେଉନି।' ସେ ଯେତେ ଖାଇବିନି ବୋଲି ଏଡ଼ାଇଯାଏ ମୁଁ ସେତେ ଜୋର୍‌କରେ। ଏଭାବେ ପ୍ରାୟ ଅଧଘଣ୍ଟା ଟଣାଓଟରା ପରେ ସେ ଗୋଟିଏ ସନ୍ଦେଶ ଖାଇଲେ। ଆଉ ଗୋଟିଏ ତାଙ୍କ ହାତରେ ଦେଇ କହିଲି—ଏଟା ବି ଖାଆନ୍ତୁ, ଏଭାବେ ଦୁଇତିନିଟି ମିଠା ଖୁଆଇଲି। ଆମ କାମରାରେ ଅନ୍ୟସମସ୍ତେ ଚାହିଁ ଚାହିଁ ଦେଖିଲେ। ସମସ୍ତେ ଖୁବ୍ enjoy (ଉପଭୋଗ) କଲେ ଘଟଣାଟି।

ଉପସ୍ଥିତ ସମସ୍ତେ ଶ୍ରୀଶ୍ରୀପିତୃଦେବଙ୍କ ଶ୍ରୀମୁଖ ନିଃସୃତ କଥାମୃତ ପାନକରି ଚାଲିଛନ୍ତି। ସେ ପ୍ରତ୍ୟେକଙ୍କୁ ଜଳଯୋଗ କରିଛନ୍ତି କି ନାହିଁ ବୋଲି ଜିଜ୍ଞାସା କରୁଛନ୍ତି। କେତେଜଣ ଭାଇ ଦୂରଗ୍ରାମରୁ ଆସିଛନ୍ତି। ସେମାନେ ପ୍ରଣାମ କରି ତାଙ୍କ ନିକଟରୁ ବିଦାୟ ମାଗନ୍ତେ, ସେ ପଚାରିଲେ—ଖାଇଛନ୍ତି ?

ଭାଇମାନଙ୍କ ଭିତରୁ ଜଣେ ଉତ୍ତର ଦେଲେ—ଆଜ୍ଞା, ହଁ।

—କ'ଣ ଖାଇଛ ?

—ଚା' ଖାଇଛୁ।

—ଚୂଡ଼ା-ମୁଢ଼ି ଖାଇଯା'ନ୍ତୁ। ହେ ଶିବଦୟାଲ (ଶିବଦୟାଲ ସିଂ), ଏମାନଙ୍କର ଖାଇବାର ବ୍ୟବସ୍ଥା କର।

ଶିବଦୟାଲ ଭାଇ ଭାଇମାନଙ୍କୁ ଘର ଭିତରକୁ ନେଇଗଲେ।

ବାଦଲ ଭାଇ (ବିମଳାକ୍ଷ ସରକାର, ଭିଲାଇ)ଙ୍କୁ ଦେଖି ପଚାରିଲେ—କିରେ, ତୋର ଖିଆ ହୋଇଛି ?

ବାଦଲ ଭାଇ—ଆଜ୍ଞା, ନା।

—ନା କାହିଁକି ? ମାଗି ଖାଇପାରୁନା ? ଯା, ଖାଇ ଆ।

ବାଦଲ ଭାଇ ଖାଇବାକୁ ଗଲେ।

ନନ୍ଦଦୁଲାଳ ଦାସ (ସାଲାର, ମୁର୍ଶିଦାବାଦ୍) ଭାଇ ତାଙ୍କ ନିକଟକୁ ଆସି ନିବେଦନ କଲେ—ବଡ଼ଦା, ବର୍ତ୍ତମାନ ଘରକୁ ଯାଉଛି।

ଶ୍ରୀଶ୍ରୀପିତୃଦେବ—ଖିଆପିଆ ହୋଇଛି ?

—ଆଜ୍ଞା, ଏଇମାତ୍ର ଖାଇଲି।

—କ'ଣ ଖାଇଲେ ?

—ଦହି, ଚୂଡ଼ା, ମିଠା ଓ ଆମ୍ବ।

—ଆଉ କିଛି ?

—ଆଜ୍ଞା, ସୋଲା ଓ ମୁଢ଼ି ଥିଲା, ମୁଁ ଖାଇଲିନି।

ଶ୍ରୀଶ୍ରୀପିତୃଦେବ ଖୁବ୍ ଖୁସି ହୋଇ ତାଙ୍କୁ ଘରକୁ ଯିବାର ଅନୁମତି ଦେଲେ।

ଉପସ୍ଥିତ ସମସ୍ତଙ୍କୁ ଶୀଘ୍ର ଶୀଘ୍ର ଖାଇନେବାକୁ ନିର୍ଦ୍ଦେଶ ଦେଉଛନ୍ତି ଦେଖି କହିଲି—ଆଜ୍ଞା, ଏ ଘରେ ଯେ-କୌଣସି ସମୟରେ ଖାଇ ବସିଲେ ହିଁ ହେଲା, କୌଣସି ଅସୁବିଧା ନାହିଁ।

ଶ୍ରୀଶ୍ରୀପିତୃଦେବ ତା'ଶୁଣି କହିଲେ—ଯେ କୌଣସି ସମୟରେ ବସିଲେ ହେଲା ମାନେ ? ତୁମର କୌଣସି ଅସୁବିଧା ନ ହୋଇପାରେ କିନ୍ତୁ ଯେଉଁମାନେ ଦେବେ, ସେମାନଙ୍କର ତ ହୋଇପାରେ। ଘରର ସ୍ତ୍ରୀଲୋକମାନଙ୍କର ଆହୁରି ଅନେକ କାମ। ଏଟା ତ ଖାଇବାର ପ୍ରଥମ ପର୍ବ, ଏହାପରେ ଦ୍ୱିତୀୟ ପର୍ବ, ତା' ପରେ ତୃତୀୟ ପର୍ବ। ପ୍ରଥମ ପର୍ବର କାମ ଯଦି ଏତେବେଳ ପର୍ଯ୍ୟନ୍ତ ଚାଲେ, ତା'ହେଲେ ଆଉସବୁ ହେବ କେତେବେଳେ ? ସବୁସମୟରେ ଅନ୍ୟର ସୁବିଧା-ଅସୁବିଧା ପ୍ରତି ଦୃଷ୍ଟି ଦେବାକୁ ହୁଏ। ଯେପରି କାହାରି କୌଣସି ଅସୁବିଧା ନ ହୁଏ, ସେ ଦିଗରେ ଲକ୍ଷ୍ୟ ରଖିବାକୁ ପଡ଼େ।

ଏଭାବେ କଥାବାର୍ତ୍ତା ଚାଲିଥାଏ। ସେ ମଝିରେ ରହସ୍ୟ କରି କହିଲେ—ଏ (ଜନୈକ ସ୍ୱସ୍ତିସେବକ ଭାଇଙ୍କୁ ଲକ୍ଷ୍ୟକରି) ତ ବେଶ୍ ଗୋଡ଼ ହଲାଉଛି। ଖାଇବାର ନାଁ ନାହିଁ। ସେଆଡ଼େ ତ ଜଣେ (ସଲୀଳ ମୈତ୍ର) ବାହାହୋଇ ସ୍ତ୍ରୀକୁ ଛାଡ଼ି ଘୂରିବୁଲୁଛି। ଆଉ ଏର ତ ବାହାଘର ହେଲେ, ସ୍ତ୍ରୀ ସହିତ divorce (ଛାଡ଼ପତ୍ର) ହୋଇଯିବ,—ସ୍ତ୍ରୀ କୋର୍ଟରେ ଯାଇ କହିବ—ଏ ସ୍ୱାମୀକୁ ନେଇ ଘର କରାଯାଏନା ହଜୁର୍। ଦିନସାରା ବାହାରେ ବାହାରେ ବୁଲିବ, ନ ଖାଇ ନ ପିଇ କଟାଇବ ; ତେଣୁ ମୋର ବି ଖାଇବାର ଉପାୟ ନାହିଁ। ବାସ୍, ବିବାହ-ବିଚ୍ଛେଦ!

ଉପସ୍ଥିତ ସମସ୍ତେ ତାଙ୍କର ହାସ୍ୟ ପରିହାସ ପ୍ରାଣଭରି ଉପଭୋଗ କରୁ'ଥାନ୍ତି।

ଜଣେ ଭାଇଙ୍କର high blood pressure (ଉଚ୍ଚ ରକ୍ତଚାପ), ବୟସ ୫୦ରୁ ବେଶି। ଶ୍ରୀଶ୍ରୀପିତୃଦେବଙ୍କୁ ରୋଗର ବିବରଣ ଦେଇ ନିବେଦନ କରନ୍ତେ, ସେ ଉକ୍ତ ଭାଇଟିକୁ

ରୋଗ ନିରାମୟର ବିଧାନ ଦେଲେ। କିଛିଦିନ ଲୁଣ, ମିଠା (ଯେ-କୌଣସି ମିଠାଜାତୀୟ ଜିନିଷ) ଖାଇବା ସମ୍ପୂର୍ଣ୍ଣ ବାଦ୍ ଦେବାକୁ କହିଲେ।

ଉକ୍ତ ଭାଇ—ଲୁଣ ଯା' ଖାଉଥିଲି, ତାର ପ୍ରାୟ ଅଧା ଖାଏ।

—ଅଧା ଖାଇଲେ ହେବନି, ବିଲ୍‌କୁଲ ଛାଡ଼ିଦେବାକୁ ହେବ।

—କେତେଦିନ ଏଭାବେ ନ ଖାଇ ରହିବାକୁ ପଡ଼ିବ ?

—ଆପଣଙ୍କର ଏ ବୟସରେ ଏକେବାରେ ଛାଡ଼ିଦେଇ ପାରିଲେ ହିଁ ଖୁବ୍ ଭଲ ହେବ। ତା' ନ ହେଲେ ସାତଦିନ ସମ୍ପୂର୍ଣ୍ଣ ବାଦ୍‌ଦେଲେ, ତା' ପର ସାତଦିନ ଅଳ୍ପ ଅଳ୍ପ ଖାଇଲେ, ତା' ପରେ ପୁଣି ବାଦ୍‌ଦେଲେ—ଏଭାବରେ ଚଳିବେ।

ଆଉ ପଥ୍ୟ ହେଲା—୧୦ ଆଉନ୍‌ସ ପାଣିରେ ୫୦୦ ଗ୍ରାମ କଞ୍ଚା ଅମୃତଭଣ୍ଡା, ଗୋଟିଏ ୫୦ ଗ୍ରାମ ଓଜନର ଆଳୁ ଓ ଗୋଟିଏ ପୋଟଳ ସିଝାଇ ଟିକିଏ ଗୋଲମରିଚ ଗୁଣ୍ଡ ଓ ଟିକେ ଘିଅ-ଫୁଟଣ ଦେଇ ଓହ୍ଲାଇ ଖାଇବାକୁ ହେବ। ଆଳୁ ଚୋପା ସହ ଖାଇବା ଭଲ।

ଅନ୍ୟ ଜଣେ ଭାଇ କଠିନ diarrhoea ର ସତ୍ୱର ନିରାମୟର ଉପାୟ ଜାଣିବାକୁ ଚାହିଁଲେ। ଶ୍ରୀଶ୍ରୀପିତୃଦେବ ଉକ୍ତ ଭାଇଙ୍କୁ ଔଷଧ ଲେଖିନେବାକୁ କହିଲେ।

ଏଭାବେ ରୋଗ-ବ୍ୟାଧି ଆଦି ବିବିଧ ପ୍ରସଙ୍ଗରେ ଆଲୋଚନା ଚାଲିଥାଏ। ଦୂରଦୂରାନ୍ତରୁ ଯେଉଁମାନେ ଆସିଛନ୍ତି—(ନଦୀୟା, ବର୍ଦ୍ଧମାନ, ହୁଗୁଳୀ, ହାଓଡ଼ା, କଲିକତା, ପ୍ରଭୃତି) ସମସ୍ତେ ତାଙ୍କର ସଙ୍ଗ-ସୁଧାରସ ପାନରେ ପରିତୃପ୍ତ।

ଆଜି ସକାଳ ୯-୧୫ ମିନିଟରେ କାର୍ତ୍ତିକଦା (ସରକାର) ଶ୍ରୀଶ୍ରୀପିତୃଦେବଙ୍କ ନିର୍ଦ୍ଦେଶରେ ତିନିଖଣ୍ଡ ବସ୍ ଯୋଗେ (ସତ୍‌ସଙ୍ଗ ଆଶ୍ରମରୁ ଆଗତ) ଆଶ୍ରମବାସୀ ବାଳକ-ବାଳିକା, ଭାଇ ଓ ମା'ମାନଙ୍କୁ ନେଇ ମୁର୍ଶିଦାବାଦ୍‌ର 'ଐତିହାସିକ ହଜାର-ଦୁଆରୀ' ପରିଦର୍ଶନ ଉଦ୍ଦେଶ୍ୟରେ ଯାତ୍ରା କରନ୍ତି। ରାମପଡ଼ାଠାରୁ ରେଜିନଗର ହୋଇ ୩୪ ନଂ ନ୍ୟାସନାଲ ହାଇୱେ ଧରି ହଜାରଦୁଆରୀ ପ୍ରାୟ ୪୦ ମାଇଲ୍ ରାସ୍ତା। ଶ୍ରୀଶ୍ରୀପିତୃଦେବ ଯେଉଁଠିକି ଯାଆନ୍ତି ସେଠାରେ ହିଁ ତାଙ୍କର ସହଗାମୀମାନଙ୍କୁ ନିକଟବର୍ତ୍ତୀ ଦର୍ଶନୀୟ ସ୍ଥାନ ଦେଖିବାକୁ ସୁଯୋଗ କରି ଦେଇଥା'ନ୍ତି। ସେ ନିଜେ ମଧ୍ୟ ଏସବୁ ସ୍ଥାନ ପରିଦର୍ଶନ କରିବାକୁ ବିଶେଷ ଆଗ୍ରହୀ। ଇତିପୂର୍ବେ ରାମପଡ଼ା ଆସିଥିବାବେଳେ ସଙ୍ଗୀମାନଙ୍କୁ ନେଇ ସେ ହଜାରଦୁଆରୀ ଦେଖି ଆସିଛନ୍ତି।

ଏଥରକ ଦେଓଘରରୁ ଯେଉଁମାନେ ଏଇ ପ୍ରଥମ ରାମପଡ଼ା ଆସିଲେ, ସେମାନଙ୍କ ନିକଟରେ ଐତିହାସିକ ପଲାସୀ ଯୁଦ୍ଧକ୍ଷେତ୍ର, ବୀର ଶହୀଦ୍ ମୀରମଦନର କବରଖାନା, ମୁର୍ଶିଦାବାଦ୍‌ର ହଜାରଦୁଆରୀ ଗୋଟିଏ ବିଶେଷ ଆକର୍ଷଣ। ସେଥିପାଇଁ ଆଜି ସେସବୁ ସ୍ଥାନ ପରିଦର୍ଶନ କରିବାକୁ ଶ୍ରୀଶ୍ରୀପିତୃଦେବଙ୍କର ଅନୁମତି ପ୍ରଦାନରେ ସମସ୍ତଙ୍କର ମନପ୍ରାଣ ଆନନ୍ଦରେ ଉଦ୍‌ବେଳିତ ହୋଇଉଠିଲା ; ବାଳକ-ବାଳିକାମାନଙ୍କର ଦୌଡ଼ାଦୌଡ଼ି ଦ୍ୱିଗୁଣ ବଢ଼ିଗଲା। ଯଥାସତ୍ୱର ଜଳଯୋଗ କରି ସମସ୍ତେ ଚାହାନ୍ତି ଏକାସଙ୍ଗରେ ପ୍ରସ୍ତୁତ ହେବାକୁ। ଏହାପରେ ଅନେକଟା ସମୟ ଅତିକ୍ରାନ୍ତ ହେଲା ; ମଧ୍ୟାହ୍ନ ପାର ହୋଇଯାଇଛି—କାର୍ତ୍ତିକଦା

ସମସ୍ତଙ୍କୁ ନେଇ ଫେରିଲେ। ଶ୍ରୀଶ୍ରୀପିତୃଦେବ ସେତେବେଳେ ଘରେ ବିଶ୍ରାମ କରୁଥା'ନ୍ତି। ଘରଭିତରୁ ସମସ୍ତଙ୍କର ଖୋଜଖବର ନେଲେ।

## ବୁଧବାର, ଭାଦ୍ର-୧୬, ୧୩୮୨ (ଇଂ ୩/୯/୭୫)

ଗତକାଲି ସେପ୍‌ଟେମ୍ବର ଦୁଇ ତାରିଖ। ପରମପ୍ରେମମୟ ଶ୍ରୀଶ୍ରୀଠାକୁର ଅନୁକୂଳଚନ୍ଦ୍ରଙ୍କର ଶ୍ରୀବୈଦ୍ୟନାଥଧାମକୁ ଶୁଭାଗମନ ସ୍ମରଣୋତ୍ସବ ଉଦ୍‌ଯାପିତ ହୋଇଗଲା। ଇଂ-୧୯୪୬ ମସିହାର ଏଇ ଦିନ (ସେପ୍‌ଟେମ୍ବର-୨) ପରମଦୟାଲ ଶ୍ରୀଶ୍ରୀଠାକୁର ପାବନା (ଅଧୁନା ବାଂଲାଦେଶ) ଛାଡ଼ି ଦେଓଘର ଆସନ୍ତି। ତାଙ୍କର ଏହି ଶୁଭାଗମନ ଦିବସକୁ ସୁଚିହ୍ନିତ ଓ ସ୍ମରଣୀୟ କରି ରଖିବା ଉଦ୍ଦେଶ୍ୟରେ ଶ୍ରୀଶ୍ରୀପିତୃଦେବ ସ୍ୱୀୟ ପ୍ରଚେଷ୍ଟାରେ ଗତବର୍ଷ (ଇଂ-୧୯୭୪) ଏହି ଦିବସଟିକୁ ପ୍ରଥମ ସାଡ଼ମ୍ବରେ ଉତ୍ସବାକାରରେ ପାଳନକଲେ। ପ୍ରବର୍ତ୍ତନ କଲେ ନୂତନ ଅବ୍ଦ—'ଅନୁକୂଳାବ୍ଦ'। ୧୯୪୬ ମସିହାର ସେପ୍‌ଟେମ୍ବର-୨ ତାରିଖଟି ସୂଚିତ ହେଲା—ପ୍ରଥମ ଅନୁକୂଳାବ୍ଦର ପ୍ରଥମ ଦିବସ ହିସାବରେ। ୩୦ତମ ଅନୁକୂଳାବ୍ଦର ସୁପ୍ରଭାତରେ ଗତବର୍ଷଭଳି ଏବର୍ଷ ବି ବିନତି-ପ୍ରର୍ଥନା ଓ ପାଠ ପରେ ଠାକୁରବଙ୍ଗଳାରୁ ଗୋଟିଏ ସୁଦୀର୍ଘ ଶୋଭାଯାତ୍ରା ବାହାରେ—ପୁରୋଭାଗରେ ଥିଲେ ଶ୍ରୀଶ୍ରୀପିତୃଦେବ ସ୍ୱୟଂ। ଶୋଭାଯାତ୍ରାରେ ଯୋଗଦାନ ଉଦ୍ଦେଶ୍ୟରେ ଦେଶର ବିଭିନ୍ନ ପ୍ରାନ୍ତରୁ ଅନେକେ ହିଁ ଆଶ୍ରମ ଆସୁଛନ୍ତି।

ଆଜି ସକାଳ ୫/୨୮ ମିନିଟରେ ଠାକୁରବଙ୍ଗଳାରେ ଆଶ୍ରମସ୍ଥିତ ଓ ବହିରାଗତ ଅନେକଙ୍କର ଉପସ୍ଥିତିରେ ସମବେତ ବିନତି-ପ୍ରାର୍ଥନା ହେଲା। ପ୍ରାର୍ଥନାନ୍ତେ ଶ୍ରୀଶ୍ରୀପିତୃଦେବ ଯଥାରୀତି ପ୍ରଣାମାଦି ସାରି ବଡ଼ ନାଟମଣ୍ଡପରେ ବସିଛନ୍ତି। ପ୍ରାର୍ଥନା ପରେ ମଧ୍ୟ ବହୁଭକ୍ତ ଆସି ତାଙ୍କୁ ପ୍ରଣାମ କରି ବସୁଛନ୍ତି। 'ସତ୍ୟାନୁସରଣ' ପାଠ ଏବେ ଆରମ୍ଭ ହେବ। ତାଙ୍କର ନିକଟବର୍ତ୍ତୀ ହୋଇ ବସିଛନ୍ତି—ଶ୍ରୀ ନନୀଗୋପାଳ ଚକ୍ରବର୍ତ୍ତୀ, ଜିତେନ୍ଦ୍ର ନାଥ ଦେବବର୍ମ୍ମନ, ନନ୍ଦଦୁଲାଳ ଭଟ୍ଟାଚାର୍ଯ୍ୟ, ଅଜିତ କୁମାର ଗାଙ୍ଗୁଲୀ, ପରେଶ ଚନ୍ଦ୍ର ଭୋରା, ଚନ୍ଦ୍ରେଶ୍ୱର ଶର୍ମ୍ମା, ରତିରଞ୍ଜନ ଦତ୍ତ, ମଣିଲାଲ ଚକ୍ରବର୍ତ୍ତୀ, ନୀରଦ ସରକାର, ହରିପଦ କର, ନିତ୍ୟାନନ୍ଦ ମଣ୍ଡଳ, ନିତ୍ୟଗୋପାଳ ମଣ୍ଡଳ, ସଲୀଳ ମୈତ୍ର, ଦଶରଥ କର୍ମକାର, ଡା: ପ୍ୟାରୀଚରଣ ନନ୍ଦୀ, ଅମୂଲ୍ୟରତନ ରାୟ, ଭବାନୀ ଚରଣ ରାୟ, ନିଖିଳ ଘଟକ, ଶିଶୁରଞ୍ଜନ ବିଶ୍ୱାସ, ଜ୍ୟୋତିର୍ମୟ ଚୌଧୁରୀ ପ୍ରଭୃତି ଭାଇମାନେ। ଏହାଛଡ଼ା ଅଛନ୍ତି ଛୋଟ ଛୋଟ ବାଳକ-ବାଳିକା ଓ ମା'ମାନେ।

୬ଟା ବାଜିବା ସଙ୍ଗେ ସଙ୍ଗେ ପାଠ ଆରମ୍ଭ ହେଲା—

''ସଦ୍‌ଗୁରୁଙ୍କର ଶରଣାପନ୍ନ ହୁଅ, ସତ୍-ନାମ ମନନ କର, ଆଉ, ସତ୍‌ସଙ୍ଗର ଆଶ୍ରୟ ଗ୍ରହଣ କର—ମୁଁ ନିଶ୍ଚୟ କରି କହୁଛି, ତୁମକୁ ଆଉ ତୁମର ଉନ୍ନୟନ ଲାଗି ଭାବିବାକୁ ପଡ଼ିବନି।''

ଜଣକ ପରେ ଜଣେ ବାଣୀଟି ପାଠ କରିଲେ। ବଙ୍ଗଳାରେ ଶ୍ରୀକଣ୍ଠ ଭାଇ, ହିନ୍ଦୀରେ ଲାଲ ଭାଇ, ଓଡ଼ିଆରେ ବଂଶୀଧର ହାତୀ, ଅସମୀୟାରେ ଡା: ପ୍ରଶାନ୍ତଦା, ମରାଠୀରେ ଯଶୋବନ୍ତଦା ଏବଂ ଇଂରାଜୀରେ ପଣ୍ଡିତଦା।

ସତୀଶ ଭାଇ (ପାଲ) ପ୍ରଶ୍ନ କଲେ—ସଦ୍‌ଗୁରୁ ତ ଏକ ସମୟରେ ଅନେକ ଥାଇ

ପାରନ୍ତି। କେହି ଯଦି ସେମାନଙ୍କ ଭିତରୁ କୌଣସି ଜଣଙ୍କ ନିକଟରୁ ନାମ ନିଏ, ଜଣଙ୍କର ଶରଣାପନ୍ନ ହୁଏ, ତା ହେଲେ ସେଇ ନାମ ହିଁ ତ ହେବ ସତ୍-ନାମ, ତାଙ୍କର ସଙ୍ଗ ହିଁ ତ ହେବ ସତ୍‌ସଙ୍ଗ ?

ନିତ୍ୟାନନ୍ଦ ଭାଇ (ମଣ୍ଡଳ)—ସଦ୍‌ଗୁରୁ ଯଦି ଅନେକ ହିଁ ଥାଆନ୍ତି, ସେଥିରେ ଅସୁବିଧା କଣ ?

ସତୀଶ ଭାଇ—ମୁଁ ଯଦି ଅନ୍ୟକୁ (ଯେ ଅନ୍ୟ ସଦ୍‌ଗୁରୁଙ୍କର ଆଶ୍ରିତ) କୁହେ, ମୁଁ ସଦ୍‌ଗୁରୁ ପାଇଛି, ମୋର ଗୁରୁଙ୍କର ଶରଣ ନିଅ,—ତା' ହେଲେ କଣ ଭୁଲ କରାହେବ ?

ଶ୍ରୀଶ୍ରୀପିତୃଦେବ ସତୀଶ ଭାଇଙ୍କ କଥାରେ ଅସନ୍ତୁଷ୍ଟି ବୋଧ କରୁଥିଲେ ପ୍ରଥମରୁ। ସମସ୍ତେ ଚୁପ କରି ଅଛନ୍ତି ଦେଖି ସେ କହିଲେ—ଯାଜନ କରିବ ମାନେ କଣ ଅନ୍ୟକୁ କହିବା—ସବୁ ଛାଡ଼ିଛୁଡ଼ି ଆମ ପଟକୁ ଚାଲିଆସ ? ଅନ୍ୟକୁ କହିବାକୁ ଯିବ ବା କାହିଁକି ? ଏହା ଯାଜନ ବି ନୁହେଁ କି ଭାଜନ ବି ନୁହେଁ।

ସତୀଶ ଭାଇ—ଆମେ ଠାକୁରଙ୍କୁ ତ କହୁ ପୁରୁଷୋତ୍ତମ। ତା' ହେଲେ ଅନ୍ୟକୁ ଠାକୁରଙ୍କୁ ଧରିବା କଥା କହିବୁନି ?

ଶ୍ରୀଶ୍ରୀପିତୃଦେବ—ସେ ତୁମର ଯା' ବିଶ୍ୱାସ ତା'ହିଁ କହିବ। ଠାକୁରଙ୍କ ସମ୍ବନ୍ଧରେ ଯା' ଧାରଣା ତା'ହିଁ କହିବ। ତା'ବୋଲି ଅନ୍ୟ ଗୁରୁଙ୍କର ନିନ୍ଦା, ତାଙ୍କୁ ଛୋଟ କରିବାର ପ୍ରଶ୍ନ ନାହିଁ।

ଅମୂଲ୍ୟ ଭାଇ (ରାୟ)—ମୋର ମନେହୁଏ, ଠାକୁରଙ୍କ ଏହି ବାଣୀଦ୍ୱାରା ପ୍ରତ୍ୟେକଙ୍କର ନିଜ ନିଜ ଗୁରୁଙ୍କ ପ୍ରତି ଟାଣ ବଢ଼ିଯିବ। ଆଉ ଠାକୁର ତା'ହିଁ ଚାହିଛନ୍ତ।

ଶ୍ରୀଶ୍ରୀପିତୃଦେବ—ହଁ, ସେଇଆ ତ। ସେ (ସତୀଶ ଭାଇ) କହିବାକୁ ଚାହେ ଅନ୍ୟର ଗୁରୁ କିଛି ନୁହେଁ, ମୋର ଗୁରୁ ହିଁ ସବୁ। ଏସବୁ କହିବା ଅନୁଚିତ। ତୁମର ଗୁରୁ ସମ୍ବନ୍ଧରେ ତୁମର ଯା' ବିଶ୍ୱାସ ତା'ହିଁ କହିବ, ତା'ହିଁ କରିବ। ଅନ୍ୟଗୁରୁଙ୍କୁ ଛୋଟ କରିବାକୁ ଯିବ କାହିଁକି ? ସେମାନେ (ଯେଉଁମାନେ ସେବକ) ନିଜେ ନିଜେ ହିଁ ବୁଝି ନେବେ। ତୁମେ ଅଯଥା ଖରାପ କଥା କହିବାକୁ ଯିବ କାହିଁକି ?

ଲାଲ ଭାଇ—ଅନେକେ ଆମ୍ଭମାନଙ୍କର ଗୁରୁନିଷ୍ଠା ଦେଖି ପୁଣି ଏଠାରେ ଦୀକ୍ଷା ନେଇଥାନ୍ତି।

ଶ୍ରୀଶ୍ରୀପିତୃଦେବ—ହଁ, ତା ହିଁ ହୁଏ। (ସତୀଶ ଭାଇଙ୍କୁ) ତୁମେ ଯେତେବେଳେ ଅନ୍ୟଜଣଙ୍କର (ଗୁରୁ) ସମ୍ପର୍କରେ କହୁଛ ସେତେବେଳେ ତା ମନରେ ବ୍ୟଥା ଲାଗିପାରେ, ମୋର ବାପା ତୁମ ବାପା ଅପେକ୍ଷା ଢେର ବେଶି ପଣ୍ଡିତ—ଏସବୁ କଥାରେ ଅହଙ୍କାର ପ୍ରକାଶ ପାଏ। ଏ ସବୁ କହିବା ଆଦୌ ଠିକ୍ ନୁହେଁ।

ଲାଲ ଭାଇ—ଆମେ କହୁ, 'ଇଷ୍ଟ ନାହିଁ ନେତା ଯେ, ଯମର ଦଲାଲ କିନ୍ତୁ ସେ।' ଅନେକ ନେତା ଭାବନ୍ତି, ଆମର ତ ଇଷ୍ଟ ଅଛନ୍ତି—ଗାନ୍ଧିଜୀ ଅଛନ୍ତି, କେହି ଭାବନ୍ତି ମାର୍କସ୍ ଅଛନ୍ତି,—ଠାକୁର ତାହେଲେ ଠିକ୍ ହିଁ କହିଛନ୍ତି। ସେମାନେ ଠାକୁରଙ୍କର ଏ ବାଣୀ ଶୁଣି ଆଦୌ

ରୁଷ୍ଟ ହୁଅନ୍ତି ନି।

ଶ୍ରୀଶ୍ରୀପିତୃଦେବ—ହଁ ଠିକ୍। ଯେଉଁମାନଙ୍କର ଇଷ୍ଟ ନାହିଁ, ସେମାନେ ରୁଷ୍ଟ ହୋଇ ପାରନ୍ତି।

ସତୀଶ ଭାଇ—ଆଜ୍ଞା, ଯେ ଗୁରୁ ଗ୍ରହଣ କରିଛି ସେ ତ ଅନ୍ୟଗୁରୁଙ୍କ କଥା ଶୁଣି ଭାବିପାରେ ଜଣେ ବଡ଼, ଆଉ ଜଣେ ଛୋଟ।

ଶ୍ରୀଶ୍ରୀପିତୃଦେବ—ଆରେ ଭାଇ ଶୁଣ୍ ଶୁଣ୍। ଭକ୍ତି-ବିଶ୍ୱାସର ପଥ ହିଁ ଅଲଗା। ବିଶ୍ୱାସରେ ହଁ-ନାହିଁ ପୁଣି ଅଛି ନା କ'ଣ ? ବିଶ୍ୱାସରେ ହଁ-ନାହିଁ ନାହିଁ। ସନ୍ଦେହ ନାହିଁ।

ଜଣେ ସାହେବ-ସନ୍ୟାସୀ କଥା ଉଲ୍ଲେଖ କଲେ ଶ୍ରୀଶ୍ରୀପିତୃଦେବ—ସାହେବଟି ଏମ୍.ଏ., ପି.-ଏଇଚ୍.ଡି.। ଲକ୍ଷ୍ନୌରେ ରହୁଥାଏ। ରହୁ ରହୁ ଏଠାକାର ଭାଷା ବି ଶିଖିଲା। ତା'ପରେ ଦୀକ୍ଷା ବି ହୋଇଗଲା। ତାର ଶ୍ରଦ୍ଧା, ବିଶ୍ୱାସ ଓ ଭକ୍ତି ଦେଖିଲେ ଅବାକ୍ ହେବାକୁ ପଡ଼େ। ରାସ୍ତାରେ ଯାଉ ଯାଉ ଥରେ ତାର ଦେଖାହେଲା ଜଣେ ମେମ୍ (European Lady) ସହିତ। ମେମ୍ କହିଲା—'ତୁମେ ଏଠାରେ ଆସି କ'ଣ ପାଇଛ ?' ସାହେବ ଖାଲି ଦେଖେ, କିଛି କୁହେ ନା। ମେମ୍‌ଟି ବାରମ୍ବାର ଏକା ପ୍ରଶ୍ନ କରେ। ସାହେବ ଚୁପ୍‌କରି ଥାଏ। ପରେ ଷ୍ଟେସନରେ ଆସି ହସି ହସି ଖାଲି କୁହେ—'କୃଷ୍ଣ'। ଯୀଶୁ ବଡ଼ କି କୃଷ୍ଣ ବଡ଼ ଏ ସବୁ କୁହେନା—ଖାଲି କହିଲା, 'କୃଷ୍ଣ'।

ଏଥରକ ଶ୍ରୀଶ୍ରୀପିତୃଦେବ ଉପସ୍ଥିତ ସମସ୍ତଙ୍କ ଆଡ଼େ ଚାହିଁ କହିଲେ—ଇଷ୍ଟଙ୍କ ଚରଣରେ surrender (ଆତ୍ମସମର୍ପଣ) କରିବାକୁ ପଡ଼େ। ସବୁକିଛି ତାଙ୍କ ପଦରେ ସମର୍ପଣ। ସେତେବେଳେ ଯେ ଦୃଷ୍ଟି ହୁଏ ତା-ହିଁ ଅସଲ ଦୃଷ୍ଟି, ସେତେବେଳେ ଯେ କଥା ମୁହଁଦେଇ ବାହାରେ ତା'ହିଁ ଅସଲ କଥା। ତା'ଛଡ଼ା ଆଉ ଯା'କଥା ସବୁ ମେକୀ। ତାଙ୍କ ଚରଣରେ ଆତ୍ମସମର୍ପଣ ଲାଗି ଯଜନ, ଯାଜନ, ଇଷ୍ଟଭୃତି କରିଯିବାକୁ ହୁଏ। ଯଜନ, ଯାଜନ, ଇଷ୍ଟଭୃତି ଯଦି sincerely (ଅକପଟଭାବେ) କରାଯାଏ, ତାହେଲେ ସେହି ଭାବ (ଆତ୍ମସମର୍ପଣର) ଠିକ୍ ଆସିଯାଏ।

ସଂସାରରେ ରହି ତାଙ୍କ ଚରଣରେ ଯିଏ ଆତ୍ମସମର୍ପଣ କରିପାରେ ତାର ତୁଳନା ହୁଏନା। ତୁମେ, ବିବାହ କର—ଗୋଟାଏ କର ବା ପାଞ୍ଚଟା କର, ପୁଅ ହେଉ ବା ଝିଅ ହେଉ କିଛି ଅଟକାଇ ପାରେନା—ଯଦି ଆତ୍ମସମର୍ପଣ କର ଇଷ୍ଟଙ୍କ ଚରଣରେ। (ଟିକିଏ ରହି) ମୁଁ ତ ଗୋଛାଇ କହି ପାରେନା, ତୁମେ ସବୁ ତ ଆହୁରି ଭଲଭାବରେ କହିପାର।

ଗୁରୁକିଙ୍କର ଭାଇ (ପାଣ୍ଡେ)—ଆଜ୍ଞା, ଆପଣ ପରିଷ୍କାର କରି ହିଁ କହିଛନ୍ତି, ଆମର ବୁଝିବାରେ କୌଣସି ଅସୁବିଧା ହେଉନି।

ଶ୍ରୀଶ୍ରୀପିତୃଦେବ—ତାଙ୍କ ଚରଣରେ ଆତ୍ମସମର୍ପଣ କଲେ କିଛି ବି ପ୍ରତିବନ୍ଧକ ହୁଏ ନା। ସେତେବେଳେ ଅଭିଶାପ ବି ଆଶୀର୍ବାଦ ହୋଇ ଠିଆହୁଏ। ରାଜା ଦଶରଥଙ୍କୁ ଅଭିଶାପ ଦେଲେ ଅନ୍ଧମୁନି। ଆଉ ସେ ଅଭିଶାପ ହିଁ ଆଶୀର୍ବାଦ ହୋଇ ଆସିଲା ଦଶରଥଙ୍କ ନିକଟରେ। ସନକାଦି ଋଷିଗଣ ଅଭିସମ୍ପାତ ଦେଲେ ଜୟ-ବିଜୟଙ୍କୁ। ସେଥିରୁ ବି ମଙ୍ଗଳ ଆସି ଉଭା

ହେଲା । ସବୁଥିରେହିଁ ମଙ୍ଗଳ ।

ନନୀଦା—ଆଜ୍ଞା, ଠାକୁରଙ୍କର ବି ଠିକ୍ ଏ ପ୍ରକାରର କଥା ଅଛି । ଗୁରୁଜନ ବା ବୟୋଜ୍ୟେଷ୍ଠଙ୍କର ଅଭିଶାପ ସବୁବେଳେ ଆଶୀର୍ବାଦ ହୋଇ ଆସେ ।

ଶ୍ରୀଶ୍ରୀପିତୃଦେବ—ଏଇ ଯେ କହିଲି ! ଜୟ-ବିଜୟ ଦୁଇଭାଇ ଥିଲେ ସ୍ୱର୍ଗରେ ବିଷ୍ଣୁଙ୍କର ଦ୍ୱାରରକ୍ଷକ । ଦ୍ୱାର ରକ୍ଷାକାଳରେ ଦିନେ ସନକାଦି ଋଷିଗଣ ବିଷ୍ଣୁ-ଦର୍ଶନରେ ଆସିଲେ । ଜୟ-ବିଜୟ ଋଷିମାନଙ୍କୁ ପ୍ରବେଶ କରିବାକୁ ନ ଦେବାରୁ ଋଷିଗଣ ଅଭିଶାପ ଦେଲେ—ତୁମର ମର୍ତ୍ତ୍ୟରେ ଜନ୍ମ ହେଉ । ସେମାନେ ସେତେବେଳେ ବିଷ୍ଣୁଙ୍କର ଶରଣ ନେଲେ ; ଅନେକ ସ୍ତବ-ସ୍ତୁତି କଲେ । ବିଷ୍ଣୁ ପ୍ରୀତହୋଇ କହିଲେ—ଋଷିବାକ୍ୟ ଲଙ୍ଘନ ହେବାର ନୁହେଁ । ତୁମକୁ ମର୍ତ୍ତ୍ୟଲୋକରେ ଜନ୍ମ ନେବାକୁ ହିଁ ହେବ । ତେବେ ପୁଣି ସ୍ୱର୍ଗକୁ ପ୍ରତ୍ୟାବର୍ତ୍ତନ କରିବ । ଯଦି ମିତ୍ରଭାବେ ଭଜନା କର, ତେବେ ସାତଜନ୍ମ ପରେ, ଯଦି ଶତ୍ରୁଭାବେ ଭଜନା କର ତେବେ ତିନିଜନ୍ମ ପରେ । ଜୟ-ବିଜୟ ମର୍ତ୍ତ୍ୟକୁ ଆସି ଶତ୍ରୁଭାବରେ ଭଜନା କରି ମୁକ୍ତିଲାଭ କଲେ । ଏମାନେ ବିଷ୍ଣୁଙ୍କ ହାତରେ ନିହତ ହୋଇ ପୁନରାୟ ସ୍ୱର୍ଗ ଗମନ କରନ୍ତି ।

ସତ୍ୟାନୁସରଣ ପାଠ ଓ ଆଲୋଚନା ଶେଷ ହେଲା । ଏଥରକ 'ଧୃତି-ବିଧାୟନା' (୨ୟ ଖଣ୍ଡ) ଗ୍ରନ୍ଥର ୩୧୯ ନଂ ବାଣୀଟି ପାଠକଲେ ଶ୍ରଦ୍ଧେୟ ପଣ୍ଡିତ ଭାଇ ।

''ନିଜେ ହିସାବ କରି ଦେଖ ନା—
କରିଛ ବା କ'ଣ !
ହେବ ହିଁ ବା କ'ଣ !
ନିଷ୍ପାଦନୀ ତାତ୍ପର୍ଯ୍ୟରେ—
ନିଷ୍ଠାନନ୍ଦିତ ରାଗଦୀପନୀ
ଆନୁଗତ୍ୟ ଓ କୃତିସମ୍ବେଗ ନେଇ
ଶ୍ରମପ୍ରିୟ ତତ୍ପରତାରେ
ଉଲ୍ଲାସନନ୍ଦିନୀ
ପ୍ରୀତି-ଅନୁକମ୍ପା ନେଇ
ନିଖୁଣଭାବରେ
ଯେପରି ଯାହା କରିବାକୁ ହୁଏ
ସେପରି କରି କ'ଣ କିଛି କରିଛ—
ଯେ ହେବ ?

....................

ମୁହଁରେ
ଭଗବାନ୍ ଭଗବାନ୍ କରିଲ—
କିଛି କରିଲ ନାହିଁ—
ଆଉ ସବୁ ହୋଇଗଲା !

ଆଉ, କହୁଛ—
ଭଗବାନ୍‌ଙ୍କୁ କେତେ ଡାକିଲି
ମୋର କିଛି ହିଁ ହେଲା ନାହିଁ ;
.................
ବିହିତଭାବରେ କରି ଦେଖ,
ଭଜନ ବାଦ୍‌ଦେଇ
ଭଗବାନ,
ମାଂସ ବାଦ୍‌ଦେଇ
ମଣିଷ ଯେପରି
ସେପରି ନୁହେଁ କି ?
.................
ଭାଗ୍ୟ ମାନେ କିନ୍ତୁ
ଭଜନ,
ଭଜନ ଯେପରି
ଭାଗ୍ୟ ମଧ୍ୟ ସେପରି ।''

ପଣ୍ଡିତ ଭାଇ ପାଠ କରିବା ପରେ ସତୀଶ ଭାଇ ବି ଉକ୍ତ ବାଣୀଟି ପାଠ କରି ଶୁଣାଇଲେ । କାହାରି ମନରେ କୌଣସି ପ୍ରଶ୍ନ ନ ଥିବାରୁ ଏଥରକ ପରବର୍ତ୍ତୀ ବାଣୀଟି ପାଠ କରାହେଲା—

''ଇଷ୍ଟନିଷ୍ଠାରେ
ଅଟୁଟ ଥାଅ,
ଅସ୍ଖଳିତ ଥାଅ,
ନିଟୋଳଭାବରେ
ତାଙ୍କ ନିଦେ୍ଦଶ
ପାଳନ କରିଚାଲ—
ତାଡ଼ନା-ପୀଡ଼ନ ଭର୍ତ୍ସନା
ଯାହା ଆସୁନା କାହିଁକି
ସବୁ
ପ୍ରୀତି-ଉଦ୍ୟମରେ ସହ୍ୟ କର,
କୃତି-ଉଦ୍ଧାରଣା ନେଇ,
ଇଷ୍ଟନିଷ୍ଠାରେ ଅଟୁଟ ରହି ;
......................
ଇଷ୍ଟତ୍ୟାଗ—
ମହାପାପର,
ତାହା ଗୋଟାଏ

ଆତ୍ମଘାତୀ
ଉଦ୍ଦାମ ଅଭିସାର,–
ଯାହା ମଣିଷର
ନିଷ୍ଠାନନ୍ଦିତ ଧୃତି-ଉତ୍ସାରଣାକୁ
ନଷ୍ଟ କରିଦେଇ
ତାକୁ
ବିକୃତ ବ୍ୟଭିଚାରଦୁଷ୍ଟ କରିତୋଳେ ;
.....................
ଯିଏ ଇଷ୍ଟପୁରୁଷ–
ସିଏ ଯେତେବେଳେ ଆସନ୍ତି,
ସେତେବେଳେ କିନ୍ତୁ
ସମସ୍ତଙ୍କର ହିଁ ସେ ଇଷ୍ଟ–
ମଙ୍ଗଳ ଉତ୍ସର୍ଜ୍ଜନା,
ନନ୍ଦନାର
ସନ୍ଦୀପନୀ ସୁପ୍ରଭା,
କାଳ ତାହାଙ୍କୁ
କ୍ଷୁଣ୍ଣ କରିପାରେ ନା,
ବିଚ୍ଛିନ୍ନ କରିପାରେ ନା।''

ପାଠ ଶେଷ ହେବା ପରେ ଶ୍ରୀଶ୍ରୀପିତୃଦେବଙ୍କ ଦାଢ଼ି କାଟିଦେଲେ ସତ୍ୟ ଭାଇ। ଏହା ଭିତରେ କେତୋଟି ନବଜାତକଙ୍କର ନାମକରଣ ମଧ୍ୟ ହେଲା। ଏହାପରେ କିଛିକ୍ଷଣ ବିଭିନ୍ନ ଲୋକଙ୍କ ସାଥିରେ ପ୍ରୟୋଜନୀୟ କଥାବାର୍ତ୍ତା ଶେଷ କରି ଶ୍ରୀଶ୍ରୀପିତୃଦେବ ଉଠିଲେ,–ସେତେବେଳକୁ ଦିନ ୮ଟା।

## ବୁଧବାର, ଭାଦ୍ର-୨୪, ୧୩୮୨ (ଇଂ ୧୦/୯/୭୫)

ସକାଳ ୫ ବାଜି ୧୬ ମିନିଟ୍। ଶ୍ରୀଶ୍ରୀପିତୃଦେବ ଅନ୍ୟ ଦିନ ଭଳି ଭକ୍ତଜନ ପରିବେଷ୍ଟିତ ହୋଇ ଷୋଡ଼ଶୀଭବନ ଛାଡ଼ି ଠାକୁରବଙ୍ଗଳା ଅଭିମୁଖେ ଚାଲିଛନ୍ତି। ଠାକୁରବଙ୍ଗଳାରେ ପହଞ୍ଚି ପ୍ରଥମେ କିଛି ସମୟ ଶ୍ରୀଶ୍ରୀବଡ଼ମା'ଙ୍କ ଘରର ପୂର୍ବ ଦିଗର ବାରଣ୍ଡାର ବେଞ୍ଚରେ ବସିଲେ। ସତ୍ୟ ଭାଇ (ପରମାଣିକ) ଦଶରଥ ଭାଇ (କର୍ମକାର) ମାଛି ତଡ଼ିଦେବାକୁ ଲଗିଲେ। ସାମ୍ନାରେ ଠିଆ ହୋଇଛନ୍ତ ରାଜେନ୍ ଭାଇ (ବାନାର୍ଜୀ), ସଲୀଳ ଭାଇ (ମୈତ୍ର) ଓ କେତେଜଣ ମା'।

ପ୍ରାର୍ଥନା ସମୟ ଆଗେଇ ଆସିବାରୁ ସେ ନିତ୍ୟଦିନ ଭଳି ଉଠିଲେ ଶ୍ରୀଶ୍ରୀବଡ଼ମା'ଙ୍କ ଘରକୁ ପ୍ରଣାମ ଉଦ୍ଦେଶ୍ୟରେ। ତା'ପରେ ଶ୍ରୀଶ୍ରୀଠାକୁର ପ୍ରଣାମ ସାରି ପ୍ରାର୍ଥନାରେ ବସିଲେ।

ପ୍ରାର୍ଥନାନ୍ତେ ପୁନରାୟ ଶ୍ରୀଶ୍ରୀଠାକୁର ଓ ଶ୍ରୀଶ୍ରୀବଡ଼ମା'ଙ୍କୁ ପ୍ରଣାମ କରି ଆସି ବଡ଼

ନାଟମଣ୍ଡପରେ ବସିଲେ। ଆଜି ଆକାଶ ମେଘାଚ୍ଛନ୍ନ, ସୂର୍ଯ୍ୟଙ୍କ ମୁହଁ ଦେଖାଯାଉନି, ଥଣ୍ଡା ପବନ ବହୁଛି, ତେଣୁ ବଡ଼ ନାଟମଣ୍ଡପର ପର୍ଦାଗୁଡ଼ିକ ସବୁ ପକେଇ ଦିଆ ହୋଇଛି।

ଶ୍ରୀଶ୍ରୀପିତୃଦେବ କହିଲେ—ଏଭଳି ଝଡ଼-ପବନ ଦେଉଛି—

ଗୁରୁକିଙ୍କର ଭାଇ—ବଙ୍ଗୋପସାଗରରେ ନିମ୍ନଚାପ ସୃଷ୍ଟି ହୋଇଛି।

ଆଜି ଝଡ଼-ପବନ ହେଲେ ବି ନାଟମଣ୍ଡପରେ ଉପସ୍ଥିତ ଲୋକଙ୍କ ସଂଖ୍ୟା କମ ନୁହେଁ। ଉପସ୍ଥିତ ଅଛନ୍ତି—ନନୀଗୋପାଳ ଚକ୍ରବର୍ତ୍ତୀ, ଜିତେନ୍ଦ୍ରନାଥ ଦେବବର୍ମନ, ଡା: ପ୍ରଶାନ୍ତ ବେରା, ନନ୍ଦଦୁଲାଳ ଭଟ୍ଟାଚାର୍ଯ୍ୟ, ଗୁରୁପ୍ରସନ୍ନ ଭଟ୍ଟାଚାର୍ଯ୍ୟ, ଶ୍ରୀକଣ୍ଠ ମାଇତି, ସତୀଶ ଚନ୍ଦ୍ର ପାଲ, ରାମନନ୍ଦନ ପ୍ରସାଦ, ଯଶୋବନ୍ତ ପ୍ରଧାନ, ବଂଶୀଧର ହାତୀ, ନିଖିଳ ଘଟକ, ନିତ୍ୟାନନ୍ଦ ମଣ୍ଡଳ, ବିପ୍ଳବ କୁମାର ଗୁପ୍ତ, ପ୍ରଭାତ ଚନ୍ଦ୍ର ଚକ୍ରବର୍ତ୍ତୀ, ଅମୂଲ୍ୟରତନ ରାୟ, ପ୍ରଫୁଲ୍ଲ ବକ୍‌ସୀ, ମଥୁର ଚନ୍ଦ୍ର ସରକାର, ଶିଶୁରଞ୍ଜନ ବିଶ୍ବାସ, ବଙ୍କିମଚନ୍ଦ୍ର ମାହାତୋ, ଦଶରଥ କର୍ମକାର, କୃପାସିନ୍ଧୁ ରକ୍ଷିତ, ସୁରଜିତ୍ ଚାଟାର୍ଜୀ, ସନତ୍ କୋଲୋ, ସତ୍ୟ ପରମାଣିକ ଏବଂ ଆହୁରି ଅନେକେ। ଏହା ଛଡ଼ା ମା' ଓ ଛୋଟ ଛୋଟ ଭାଇ ଭଉଣୀଙ୍କ ଭିତରୁ ମଧ୍ୟ ଅନେକେ ହିଁ ଅଛନ୍ତି।

୬ଟା ବାଜିବା ସଙ୍ଗେ ସଙ୍ଗେ ସତ୍ୟାନୁସରଣ ପାଠ ଆରମ୍ଭ ହେଲା—

''ଅହଂକାର ତ୍ୟାଗ କର, ସତ୍-ସ୍ୱରୂପେ ଅବସ୍ଥାନ କରିପାରିବ।''

ବାଣୀଟି ପାଠ କଲେ ଯଥାକ୍ରମେ ଶ୍ରୀକଣ୍ଠ ଭାଇ (ବଙ୍ଗଳା) ଲାଲ ଭାଇ (ହିନ୍ଦୀ) ବଂଶୀଧର ଭାଇ (ଓଡ଼ିଆ), ଡା: ପ୍ରଶାନ୍ତ ବେରା (ଅସମୀୟା), ଯଶୋବନ୍ତ ଭାଇ (ମରାଠି) ଓ ପଣ୍ଡିତ ଭାଇ (ଇଂରାଜୀ)।

ଶ୍ରୀଶ୍ରୀପିତୃଦେବ କହିଲେ—ପ୍ରଫୁଲ୍ଲ କହ।

ପ୍ରଫୁଲ୍ଲ ଭାଇ (ବକ୍‌ସି)—ଆମେ ଯେତେଟା ଅହଂକାର ତ୍ୟାଗ କରି ପାରିବା ସେତେଟା....।

ଶ୍ରୀଶ୍ରୀପିତୃଦେବ—ବାଣୀ ଭିତରେ ଯେତେଟାର କଥା ନାହିଁ।

ପ୍ରଫୁଲ୍ଲ ଭାଇ ପୁଣି ଇତସ୍ତତଃ କରି କହିବାକୁ ଆରମ୍ଭ କଲେ—ଅହଂକାର ପତଳା ହେଲେ....।

ଶ୍ରୀଶ୍ରୀପିତୃଦେବ—ଅହଂକାର ପତଳା ହେବାର କଥା ବି ନାହିଁ।

ପ୍ରଫୁଲ୍ଲ ଭାଇ—ମୁଁ କର୍ତ୍ତା, ମୋର ନିଜ ଆଡ଼କୁ ଟାଣ—ଏଟା ହିଁ ହେଲା ଅହଂକାରର ଭାବ।

ଶ୍ରୀଶ୍ରୀପିତୃଦେବ—ଅହଂକାର ବୁଝିଲି, ଏଥରକ ସତ୍‌ସ୍ୱରୂପ କାହାକୁ କହନ୍ତି କହ।

ପ୍ରଫୁଲ୍ଲ ଭାଇ—ସତ୍ ଆସିଛି ଅସ୍-ଧାତୁରୁ। ସତ୍ ମାନେ ସତ୍ତା। ତା'ହେଲେ ସତ୍ତା ଯେଉଁଠାରୁ ଆସୁଛି ତା'ହିଁ ସତ୍‌ସ୍ୱରୂପ।

ଶ୍ରୀଶ୍ରୀପିତୃଦେବ—ସତ୍ତା ଯେଉଁଠୁ ଆସୁଛି, ସେ ତ ବହୁଦୂରର କଥା। ଏଠାରେ ଥାଇ କିଭାବେ ହୋଇହୁଏ ତାହା କହ। ବାଣୀର ଅର୍ଥ ସହଜ କରି ବୁଝିବାକୁ ହୁଏ। ......ବାଣୀଟିରେ

ମୋତେ କୁହା ଯାଉଛି, 'ଅହଂକାର ତ୍ୟାଗ କର', ଆଉ ସତ୍‌ସ୍ୱରୂପ ତାଙ୍କର ହେବ କିପରି ?

ଶ୍ରୀଶ୍ରୀପିତୃଦେବ ଏଥରକ ବାଣୀଟିର ପ୍ରକୃତ ଅର୍ଥ ବୁଝାଇ କହିଲେ—ମୋର ଯେ ବିଦ୍ୟମାନତା ତାର ଦୁଇଟି ରୂପ ସତ୍ ଓ ଅସତ୍ । ଅହଂକାର ଯଦି ତ୍ୟାଗ କର ତେବେ ଅସତ୍‌ଭାବ ଚାଲିଯିବ, ସତ୍‌ଭାବ ରହିବ । ପ୍ରକୃତ ଭାବ ଫୁଟିଉଠିବ, ମୋର ପ୍ରକୃତ ରୂପ prominent (ମୁଖ୍ୟ) ହେବ । 'ମୁଁ କର୍ତ୍ତା'—ଏହି ଭାବ ଲାଗି ହିଁ ମୋର ଅଶାନ୍ତି । ମୁଁ ଅଷ୍ଟପାଶ ମଧ୍ୟରେ ହିଁ ଆବଦ୍ଧ ହୋଇ ଅଛି । ସତ୍-ରୂପ ହିଁ ସତ୍ତାର ପ୍ରକୃତ ରୂପ,—ସେଥିରେ ହିଁ ମୁଁ ବିଦ୍ୟମାନ ରହିପାରେ । ବାଣୀର ଅର୍ଥ ସହଜଭାବେ କରିପାର, ପୁଣି ଧାତୁଗତ ଅର୍ଥ ଧରି ବି କରିପାର—ଦୁଇ ବାଟରେ ହିଁ ମେଳ ହେବ । ତେବେ ଧାତୁଗତ ଅର୍ଥ ଧରି କରିବାକୁ ଗଲେ ଅସ୍ ଧାତୁ ଓ ରୂପ୍ ଧାତୁ ଦୁଇଟିକୁ ଧରିବାକୁ ହେବ । (ସତ୍ ଆସିଛି ଅସ୍-ଧାତୁରୁ, ସ୍ୱରୂପରେ 'ରୂପ'—ଧାତୁ ଅଛି) ।

୬ଟା ୩୦ ମିନିଟ । ସତ୍ୟାନୁସରଣ ପାଠ ଶେଷ ହେଲା ।

ଶ୍ରୀଶ୍ରୀପିତୃଦେବ—ଥରେ ବାଥ୍‌ରୁମ୍ ଯିବି ନା କ'ଣ ?

ସମସ୍ତେ 'ଆଜ୍ଞା' କହି ସମ୍ମତି ଜଣାଇଲେ ।

ନନ୍ଦଦୁଲାଳ ଭାଇ (ଭଟ୍ଟାଚାର୍ଯ୍ୟ) ଙ୍କ ଆଡ଼େ ଚାହିଁ ଶ୍ରୀଶ୍ରୀପିତୃଦେବ କହିଲେ— ବାଥରୁମ୍ ଗଲିରେ ।

ସେ ଉଠିବାକୁ ଯିବା ସଙ୍ଗେ ସଙ୍ଗେ ସମସ୍ତେ ଉଠି ଠିଆହେଲେ ।

ବାଥରୁମ୍‌ରୁ ଫେରି ଆସିବା ପରେ ଆରମ୍ଭ ହେଲା 'ତପୋବିଧାୟନା' (୧ମ ଖଣ୍ଡ) ଗ୍ରନ୍ଥ ପାଠ । ପାଠ କଲେ ପଣ୍ଡିତ ଭାଇ—

"ଈଶ୍ୱର ବା ଇଷ୍ଟଙ୍କୁ ବସ୍ତୁ ନିରପେକ୍ଷ ନିବେଦନ ମଣିଷର ସୁକେନ୍ଦ୍ରିକ ସଂହିତିକୁ ବ୍ୟାହତ କରି ମିଥ୍ୟାଚାରରେ ହିଁ ପର୍ଯ୍ୟବସିତ କରିତୋଳେ ।" ୫

ବାଣୀଟି ସମ୍ବନ୍ଧରେ ପ୍ରଶ୍ନ ଉଠିବାରୁ ଶ୍ରୀଶ୍ରୀପିତୃଦେବ କହିଲେ—ଇଷ୍ଟଙ୍କୁ ଯେତେବେଳେ ମୋର ଯା' ପସନ୍ଦ ତା ଦିଏ, ତାଙ୍କର ପସନ୍ଦ ଅପସନ୍ଦର କୌଣସି ଅପେକ୍ଷା ନ ରଖି—ମାଛ ଖାଏ, ମାଛ ଦେଲି, ଅଣ୍ଡା ଖାଏ, ଅଣ୍ଡା ଦେଲି, ମାଂସ ଖାଏ, ମାଂସ ଦେଲି,—ସେଟା ହିଁ ହେଲା ଇଷ୍ଟଙ୍କୁ ବସ୍ତୁ ନିରପେକ୍ଷ ନିବେଦନ ।

ଏହି ସମୟରେ ଜଣେ ଭାଇ କହିଲେ—ବାଣୀରେ 'ମିଥ୍ୟାଚାର' କଥା ଅଛି ।

ଶ୍ରୀଶ୍ରୀପିତୃଦେବ—ଇଷ୍ଟଙ୍କର ପସନ୍ଦମୁତାବକ ଦେଉନି, ମୋର ନିଜର ଖେୟାଲ ମୁତାବକ ଦେଉଛି, ସେଟା ମିଥ୍ୟାଚାର ହେଲାନି ?

ଏହାପରେ 'ତପୋବିଧାୟନା' ର ପରବର୍ତ୍ତୀ ବାଣୀ (ନଂ ୬) ଟି ପାଠହେଲା । ବାଣୀଟି ସମ୍ବନ୍ଧରେ କାହାରି କୌଣସି ପ୍ରଶ୍ନ ନ ଥିବାରୁ, ବାଣୀ ପାଠ ଶେଷ ହେଲା ।

ଶୈଳେନଦାଙ୍କୁ (ଭଟ୍ଟାଚାର୍ଯ୍ୟ) ଦେଖି ଶ୍ରୀଶ୍ରୀପିତୃଦେବ କହିଲେ—କେତେବେଳେ ଆସିଲୁ ?

ଶୈଳେନ୍ଦା ପ୍ରଣାମ କରି କହିଲେ—ଆଜ୍ଞା, ଗତକାଲି ରାତ୍ରିରେ ଜନତାରେ ।

ବଡ଼ବୌଦି, ବାବୁ ଆଜି ଆସୁଛନ୍ତି।

ଶୈଳେନ୍‌ଦା ଶ୍ରୀଶ୍ରୀପିତୃଦେବଙ୍କ ପାଖରେ ବସି କଲିକତାର ସମସ୍ତ ଘଟଣା କହିଚାଲିଲେ—ସେ ମଧ୍ୟ ସବୁ ଶୁଣି ଚାଲିଥାନ୍ତି। ସତ୍ୟ ଭାଇ ଦାଢ଼ି କାଟି ଦେଉଛନ୍ତି।

......ଶ୍ରୀଶ୍ରୀପିତୃଦେବଙ୍କ ସମ୍ମୁଖରେ ବସି ରହିଛନ୍ତି ଠାକୁରବଙ୍ଗଳାର ପୂର୍ବଦିଗର Gateର ଦରୁଆନ୍ ଦୁଇଜଣ ଓ ଆଶ୍ରମର ଜନୈକ କାଠ-ମିସ୍ତ୍ରୀ। କାଠ-ମିସ୍ତ୍ରୀଙ୍କ ଅଭିଯୋଗ ଗେଟ୍‌ର ଦରୁଆନ୍‌ମାନେ ତାକୁ ପଶିବାକୁ ଦିଅନ୍ତି ନାହିଁ। କାମବେଳେ ବି ସେଇଆ. ଆସି ପାରେ ନା। ଦିନେ ତ ଅଧଘଣ୍ଟା ଠିଆହୋଇ ବର୍ଷାରେ ତିନ୍ତିବାକୁ ପଡ଼ିଲା। ଦରୁଆନ ଦୁଇଜଣ ଉତ୍ତରରେ କହିଲେ—ସେ ତ ଯେତେବେଳେ ସେତେବେଳେ ଆସି କହେ ଭିତରେ ଯିବାକୁ ଦେବାକୁ ପଡ଼ିବ। ଆମେ ଏମିତି ତ ଗେଟ୍ ବନ୍ଦ କରିବା ପରେ ବି କୋଡ଼ିଏ ମିନିଟ୍ ପର୍ଯ୍ୟନ୍ତ ଯିବା-ଆସିବା କରିବାକୁ ଦେଇଥାଉ। ସେ ତ ଅଯଥା ଆଇନ ଉପରେ ଚାପ ଦିଏ।

ଶ୍ରୀଶ୍ରୀପିତୃଦେବ—ଆଇନ ଭାଙ୍ଗିବାର ଇଚ୍ଛା କାହିଁକି ? ଆଇନର ବ୍ୟତିକ୍ରମ ହେବ କାହିଁକି ? ଥରେ ମୁଁ ଯାଇ କହିବି ଯିବି, ତିନି ମିନିଟ୍ ପରେ ଆଉ ଜଣେ ଆସିବ, ଏଭଳି କଲେ କୌଣସି ନିୟମ ଟେକିବନି। ତା' ହେଲେ ତ ସବୁବେଳେ ଖୋଲି ରଖିବାକୁ ହେବ। ଠିକ୍ ସମୟରେ ଆସି ନ ପାର ତ ବୁଲିକରି ଆସିବ।

ଉକ୍ତ ମିସ୍ତ୍ରୀଟି କହିଲା—ଆଜ୍ଞା, ଅନ୍ୟମାନଙ୍କ ବେଳକୁ ଖୋଲିଦିଏ, କିନ୍ତୁ ମୋ ବେଳକୁ ଖୋଲେନା।

ଶ୍ରୀଶ୍ରୀପିତୃଦେବ—ଖୋଲିବ କାହିଁକି ? ତୁମେ ଏଭଳି ବ୍ୟବହାର କର ଯା' ଫଳରେ ସେମାନେ ଖୋଲିବାକୁ ଚାହାନ୍ତି ନି। ମୋର ତ ମନେହୁଏ ଆମେ ସମସ୍ତେ ମିଳି ଯେତେବେଳେ ନିୟମ ତିଆରି କରିଥାଉଁ, ସମସ୍ତଙ୍କର ସେ ନିୟମ ମାନିଚାଲିବା ଦରକାର। ଯେତେବେଳେ ସେତେବେଳେ ଖୋଲିବା ଠିକ୍ ନୁହେଁ। ଅବଶ୍ୟ ଦରୁଆନ୍‌ମାନଙ୍କର ବି ଯଥେଷ୍ଟ ବୁଦ୍ଧି ଶୁଦ୍ଧି ଥିବା ଦରକାର। କେହି ହୁଏତ ନିୟମ ଜାଣେନା ; ଠାକୁର-ଭୋଗର ଜିନିଷପତ୍ର ନେଇ ଠିଆହୋଇ ରହିଛି। ଥରେ ସାବଧାନ କରିଦେଇ ତାକୁ ଛାଡ଼ିଦେବା ଦରକାର, ଆଶ୍ରମର ଯେଉଁମାନେ କର୍ମୀ ସେମାନଙ୍କ ଲାଗି ବି ଭାବିବା ଦରକାର। ହୁଏତ ମିନିଟିଏ କି ଦୁଇମିନିଟ୍ ଡେରି କରିଛି, ସେ ଇଚ୍ଛାକଲେ ବୁଝି-ଶୁଝି ଛାଡ଼ି ଦେଇପାରେ। ତେବେ କଥା ହେଲା ନିୟମ ଯେତେବେଳେ ତୈରି ହୋଇଛି, ସମସ୍ତଙ୍କର ହିଁ କର୍ତ୍ତବ୍ୟ ତାକୁ ରକ୍ଷା କରିବା।

ଏହି ପରିପ୍ରେକ୍ଷିନେ ସେ ଗୋଟିଏ ଘଟଣାର ଉଲ୍ଲେଖ କଲେ—

'ଥରେ ଜବାହରଲାଲ ନେହେରୁ ଗୋଟିଏ ରେଲୱେ ଲେଭେଲକ୍ରସିଂ ପାର ହେବେ, ଗେଟ୍ ବନ୍ଦ, ତାଙ୍କର ଗାଡ଼ି ଅଟକିଗଲା। ଏଭଳି ବହୁଗାଡ଼ି ଧାଡ଼ି ପର ପର ଠିଆ ହୋଇଗଲା। ଲେଭେଲକ୍ରସିଂର ଦରୁଆନ୍ କିନ୍ତୁ ମୋଟେ ଗେଟ୍ ଖୋଲେନା। ବହୁ କ୍ଷଣ ପରେ ଯେତେବେଳେ ସମୟ ହେଲା, ସେତେବେଳେ ଯାଇ ଖୋଲିଲା। ପରେ ଲେଭେଲ କ୍ରସିଂର ଗେଟ୍‌ମ୍ୟାନ୍‌ର କର୍ତ୍ତବ୍ୟନିଷ୍ଠା ଦେଖି ସେ ତାକୁ କୁଣ୍ଢାଇ ପକାଇଲେ।'

ଏହାପରେ ମିସ୍ତ୍ରୀ ଓ ଦରୁଆନ୍‌ମାନେ ଶ୍ରୀଶ୍ରୀପିତୃଦେବଙ୍କୁ ପ୍ରଣାମ କରି ଚାଲିଗଲେ।

## ଗୁରୁବାର, ଭାଦ୍ର-୨୫, ୧୩୮୨ (ଇଂ ୧୧/୯/୭୫)

ପ୍ରାତଃକାଳୀନ ବିନତି-ପ୍ରାର୍ଥନା ପରେ ଶ୍ରୀଶ୍ରୀପିତୃଦେବ ବଡ଼ ନାଟମଣ୍ଡପରେ ଆସି ବସିଲେ। ସେତେବେଳକୁ ୬ଟା ବାଜିନି। ପ୍ରଣାମ କରୁଛନ୍ତି ଉପସ୍ଥିତ ଭାଇ ଓ ମା'ମାନେ। ନନ୍ଦଦୁଲାଲଦା ଶ୍ରୀଶ୍ରୀପିତୃଦେବଙ୍କ ପାଦରେ ବୋରୋଲିନ୍ ମାଲିଶ୍ କରି ଦେଉଛନ୍ତି।

ନିତ୍ୟଦିନ ଭଳି ଠିକ୍ ୬ଟାରେ ସତ୍ୟାନୁସରଣ ପାଠ ଆରମ୍ଭ ହେଲା।

''ପତିତକୁ ଉଦ୍ଧାରର କଥା ଶୁଣାଅ, ଆଶା ଦିଅ, ଛଳେ ବଳେ କୌଶଳେ ତାର ଉନ୍ନୟନରେ ସାହାଯ୍ୟ କର, ସାହସ ଦିଅ,—କିନ୍ତୁ ଉଚ୍ଛୃଙ୍ଖଳ ହେବାକୁ ନିଅ ନା।''

ବିଭିନ୍ନ ଭାଷାରେ ପାଠ ହୋଇଯିବା ପରେ ଆଲୋଚନା ଆରମ୍ଭ ହେଲା। ନୀରଦ (ସରକାର) ଭାଇ କହିଲେ—ଜୀବନବୃଦ୍ଧିର ପଥ ଯିଏ ପାଇନି ସେ-ହିଁ ପତିତ।

ଶ୍ରୀଶ୍ରୀପିତୃଦେବ—ଜୀବନ-ବୃଦ୍ଧିର ପଥ ଯେ ଅବଲମ୍ବନ କରେନା ସେ ପତିତ ; ଠିକ୍ ଅଛି ନା କଣ ? ପତିତ ହେବାକୁ ହେଲେ କୌଣସି-କିଛିରୁ ପଡ଼ିବାକୁ ହେବ ତ ? ଜୀବନ-ବୃଦ୍ଧିର ପଥ ଅବଲମ୍ବନ ନ କରିଲେ ଜୀବନ-ବୃଦ୍ଧିର ପଥ କଣ ଛାଡ଼ିପାରେ ?

ବାଣୀଟିର ଶେଷାଂଶରେ 'ଉଚ୍ଛୃଙ୍ଖଳ ହେବାକୁ ଦିଅନା' ଅଛି। ତେଣୁ ପ୍ରଶ୍ନ ଉଠିଲା ଉଚ୍ଛୃଙ୍ଖଳ ହେବାକୁ ଦିଅନା—ଏଇଟା କି ରକମ ?

ପ୍ରଫୁଲ୍ଲ (ବକ୍‌ସି) ଭାଇ—ଜଣେ ଲୋକ ହୁଏତ ପାଣିରେ ବୁଡ଼ିଯାଉଛି, ଯେତେବେଳେ ତାକୁ ସାହସ ଦେବାକୁ ହେବ, ଯେପରି ଉଚ୍ଛୃଙ୍ଖଳ ନ ହୁଏ ତାର ଚେଷ୍ଟା କରିବାକୁ ହେବ।

ଶ୍ରୀଶ୍ରୀପିତୃଦେବ—ଯେତେବେଳେ ପାଣିରେ ବୁଡ଼ିଯାଉଛି ସେତେବେଳେ ତାର ଉଚ୍ଛୃଙ୍ଖଳ ହେବାର କ'ଣ କୌଣସି chance ଅଛି ? ସାହସ ଦେଇ ବା ଲାଭ କଣ ? ସେ ତ ବୁଡ଼ିଯିବ। ସେସବୁ ଚିନ୍ତା nervousness (ସ୍ନାୟୁଦୌର୍ବଲ୍ୟ)ରୁ ଆସେ।

ପ୍ରଫୁଲ୍ଲ ଭାଇ—ମୋର ଯଦି ସେପରି ସାମର୍ଥ୍ୟ ଥାଏ, ତା'ହେଲେ ତ ଯେ ବୁଡ଼ିଯାଉଛି, ତାକୁ ଟାଣି ଉଠାଇପାରେ, ନ ହେଲେ ସେ ତ ମୋତେ ବି ଟାଣି ବୁଡ଼ାଇବ। ସେ କ୍ଷେତ୍ରରେ ତ ମୋର କରଣୀୟ କିଛି ନାହିଁ।

ଶ୍ରୀଶ୍ରୀପିତୃଦେବ—ଯେଉଁମାନେ ନିର୍ଭୀକ ସେମାନେ ସେପରି ଭାବନ୍ତି ନାହିଁ। ସେମାନେ ଯଦି ଦେଖନ୍ତି ଟାଣି ଉଠାଇ ପାରିବି, ତା'ହେଲେ ଝାମ୍ପ ଦିଅନ୍ତି। ଯଦି ଦେଖନ୍ତି ପାରିହେବନି, ତା'ହେଲେ ପିନ୍ଧାଲୁଗାଟା ପକାଇଦେଇ ବି ଉଠାଏ ; ତା' ନ ହେଲେ ଚିତ୍କାର କରି ଡକାଡକି କରି ସମସ୍ତଙ୍କୁ ଜଣାଇଦିଏ।

ଦୁର୍ବଳଲୋକ କି ପ୍ରକାରର ଆଚରଣ କରେ ସେ ସମ୍ପର୍କରେ ଶ୍ରୀଶ୍ରୀପିତୃଦେବ କହିଲେ—ଅନେକ ଲୋକ ଅଛନ୍ତି, ଦେଖାଯାଏ ଯା'କୁ ଗାଳିଦେଉଛି, ତାକୁ ଗାଳିଦେଉଛି, କେତେବେଳେ ବା ପିଲାକୁ ଧରି ଦେଲା ବସାଇ ଚାପୁଡ଼ାଟାଏ—ଏସବୁ ହିଁ weakness (ଦୁର୍ବଳତା) ଠାରୁ ଆସେ।

ବାଣୀଟିର ଅର୍ଥ ପରିଷ୍କାର ହେବା ପୂର୍ବରୁ ସାଢ଼େ ଛ'ଟା ବାଜିଗଲା। ତେଣୁ ସ୍ଥିର

ହେଲା, ଆଗାମୀ କାଲି ବାଣୀଟି ନେଇ ପୁନରାୟ ଆଲୋଚନା ହେବ।

ଏହାପରେ 'ତପୋ-ବିଧାୟନା' ଗ୍ରନ୍ଥ ପାଠ ହେଲା।

ବାଣୀ ପାଠ ହେବା ପରେ କଥାପ୍ରସଙ୍ଗରେ କାଞ୍ଜି ନେଇ କଥା ଉଠିଲା। କିଭାବେ କାଞ୍ଜି କରାଯାଏ, କାଞ୍ଜି କିଭାବେ ରଖିବାକୁ ହୁଏ, କେଉଁ ପରିମାଣରେ ଖାଇବାକୁ ହୁଏ ସବୁକିଛି ସବିସ୍ତାର ବିବୃତ କରି ଶ୍ରୀଶ୍ରୀପିତୃଦେବ କହିଲେ—ଏଥିରେ ହଜମ ଭଲ ହୁଏ, ନିଦ ଭଲ ହୁଏ, ପିଲାପିଲିଙ୍କ ପକ୍ଷରେ ଖୁବ୍ ଭଲ। ଖୁବ୍ cheap (ଶସ୍ତା)। ଏଟା ହେଲା Natural B-Complex। ଆଉ କାପ୍‌ସୁଲରେ ଅଛି Chemical B-Complex.

ଆଜି ସନ୍ଧ୍ୟା ପ୍ରାର୍ଥନା ପରେ ଯଥାରୀତି ଶ୍ରୀଶ୍ରୀବଡ଼ମା'ଙ୍କ ପ୍ରଣାମ ସାରି ଆସି ଶ୍ରୀଶ୍ରୀପିତୃଦେବ ବଡ଼ ନାଟମଣ୍ଡପରେ ବସିଲେ। ଉପସ୍ଥିତ ସମସ୍ତେ ତାଙ୍କୁ ପ୍ରଣାମ କରିଲେ।

ମାଇକ୍‌ଯୋଗେ ଘୋଷଣା କରାହେଲା—ଆଜି ସନ୍ଧ୍ୟା ସାଢ଼େ ସାତଟା ସମୟରେ ଆଶୁ ଭଟ୍ଟାଚାର୍ଯ୍ୟ ସତ୍‌ସଙ୍ଗ ଦେଉଛନ୍ତି।

ବଡ଼ ନାଟମଣ୍ଡପରେ ଉପସ୍ଥିତ ଅଛନ୍ତି—ନନୀଗୋପାଳ ଚକ୍ରବର୍ତ୍ତୀ, ଗୁରୁକିଙ୍କର ପାଣ୍ଡେ, ନିତ୍ୟାନନ୍ଦ ମଣ୍ଡଳ, ଜିତେନ୍ଦ୍ର ନାଥ ଦେବବର୍ମ୍ମନ, ଗୁରୁପ୍ରସନ୍ନ ଭଟ୍ଟାଚାର୍ଯ୍ୟ, କ୍ଷିତୀଶ ସେନ୍‌ଗୁପ୍ତ, ଶିଶୁରଞ୍ଜନ ବିଶ୍ୱାସ, ନିତ୍ୟଗୋପାଳ ମଣ୍ଡଳ, ଅଜିତ୍ କର, ପ୍ରଶାନ୍ତ ବେରା, ସୁଧୀର ବକ୍‌ସି, ଯଶୋବନ୍ତ ପ୍ରଧାନ, ବଂଶୀଧର ହାତୀ, ଦଶରଥ କର୍ମକାର, ଭବାନୀଚରଣ ରାୟ, ରାଜେନ୍ ମଜୁମଦାର, ବିପ୍ଳବ ଗୁପ୍ତ, ହରିପଦ ଦାସ, ତରୁଣ ବ୍ରହ୍ମ, ସାରଦାଚରଣ ପାଲ, ନଗେନ୍ ହାଲଦାର, ଶ୍ରୀକଣ୍ଠ ମାଇତି, ନୀରଦ ସରକାର ପ୍ରଭୃତି। ମା'ମାନେ ବି ଅନେକେ ଅଛନ୍ତି।

ରାଜେନ୍‌ଦା (ବାନାର୍ଜୀ) ତପୋବନ ସ୍କୁଲ ବୋର୍ଡିଂର ଛାତ୍ରମାନଙ୍କୁ ନେଇ ପ୍ରଣାମ କରିଗଲେ।

ନନୀ (ଦେ) ଭାଇ—ବସନ୍ତଲାଲ ଭାଇ (ସିଂ) ଯିବାଲାଗି ଚିତ୍ତରଞ୍ଜନରୁ ଚିଠି ଆସିଛି। ଚିତ୍ତରଞ୍ଜନରେ ମିଟିଂ ହେବ, ମିହିଜାମରେ ବି ହେବ।

ଶ୍ରୀଶ୍ରୀପିତୃଦେବ—ରାମନନ୍ଦନ ଯିବ ନି ? ସେ ତ ମିହିଜାମ ଯାଏ।

—ଆଜ୍ଞା, ଯିବେ।

ଜଣେ ଭାଇ ତାଙ୍କର ଦେହ ଖରାପ କଥା ଜଣାଇଲେ। ଶ୍ରୀଶ୍ରୀପିତୃଦେବ ଔଷଧ କହିଦେଲେ—ଦେହପା'ର ବ୍ୟଥା କମାଇବା ଲାଗି ୧ ପାଆ ଥଣ୍ଡାପାଣିରେ ୧ ଆଉନ୍‌ସ ମଧୁ (୧ ବର୍ଷର ପୁରୁଣା) ଲେମ୍ବୁ ସହ ସକାଳେ ଖାଲିପେଟରେ ସେବନ କରିବା କଥା ବି କହିଲେ।

ମଣି (କର) ଭାଇଙ୍କର ସ୍ତ୍ରୀଙ୍କୁ ତାଙ୍କର ଅସୁସ୍ଥତା ଲାଗି ଔଷଧ ବତାଇଦେଲେ,—ଆଉ କହିଲେ,—ଲୁଣ ଯେତେ କମ୍ ଖିଆଯାଏ ସେତେ ଭଲ।

କୀର୍ତ୍ତନଦଳ ଠାକୁର-ବଙ୍ଗଳାରେ କୀର୍ତ୍ତନ କରି କରି ବଡ଼ ନାଟଣ୍ଡପରେ ଶ୍ରୀଶ୍ରୀବଡ଼ଦାଙ୍କୁ ପ୍ରଣାମ କରିଗଲେ। ଶ୍ରୀଶ୍ରୀପିତୃଦେବ ବହୁକ୍ଷଣଧରି ହାତଯୋଡ଼ କରି ମୁଣ୍ଡରେ ଲଗାଇ ପ୍ରଣାମ କଲେ। ପରିବେଷ୍ଟିତ ଭକ୍ତବୃନ୍ଦ ବି ତଦନୁରୂପ ପ୍ରଣାମ କଲେ।

ତପୋବନ ବିଦ୍ୟାଳୟର ଶିକ୍ଷକ ରଞ୍ଜିତ୍ ଭାଇ (ମଣ୍ଡଳ) ଙ୍କୁ ଶ୍ରୀଶ୍ରୀପିତୃଦେବ ପଚାରିଲେ—ତୋର କୁଣ୍ଡିଆ କେମିତି ରେ ?

ରଞ୍ଜିତ୍ ଭାଇ—ଆଜ୍ଞା, ଭଲ ହୋଇନି।

ଶ୍ରୀଶ୍ରୀପିତୃଦେବ—ଚିରେଇତାର ପାଣି କିଛିଦିନ ସକାଳେ ଖାଲିପେଟରେ ଖାଇ ଦେଖ୍। ଲୁଣ ଏକଦମ୍ ନ ଖାଇବା ହିଁ ଭଲ। (ଟିକିଏ ରହି) ଏଠାକୁ ରୋଗଗ୍ରସ୍ତ ଯେଉଁମାନେ ଆସନ୍ତି, ସେମାନଙ୍କୁ ଭିତରୁ ଅଧିକାଂଶ ହିଁ ଡାୟବେଟିସ୍, ବ୍ଲଡ୍‌ପ୍ରେସର, ଅଲସାର କିମ୍ବା ସୋରିଆସିସ୍—ଗୋଟାଏ ନା ଗୋଟାଏ ରୋଗ ଲାଗିରହିଛି। ଯା' ଇଚ୍ଛା ତା' ଖାଇବ, ଆଉ ରୋଗ ବି ଭଲ ହୋଇଯିବ! ଯାର ପଇସା ଅଛି, ସେ ପୁଣି ଏଣ୍ଡୁ-ତେଣ୍ଡୁ ବେଶୀ ଖାଏ। ଦେହଟାକୁ ଭଲ ରଖିପାରେ ନା।

ଶଙ୍କର ଭାଇ (ରାୟ) ଆଖି ବୁଜି ମୁହଁ ତଳକୁ କରି ଢୁଳାଉଥିଲେ। ଶ୍ରୀଶ୍ରୀପିତୃଦେବ ତାଙ୍କୁ ଦେଖି କହିଲେ—ଶଙ୍କର ଶୋଇପଡ଼ିଲୁ ନା କଣ ?

ଶଙ୍କର ଭାଇ—ଆଜ୍ଞା, ନା।

ଶ୍ରୀଶ୍ରୀପିତୃଦେବ—ଢୁଳେଇବା ଭଲ ନା ଖରାପ ? (ଟିକିଏ ରହି) କୌଣସି-କୌଣସି ଦିନ ମୋର ଦିନ ୩ଟା ସାଢ଼େ ୩ଟା ସମୟରେ ଟିକିଏ ନିଦ ଆସେ, ତା'ପରେ ପୁଣି ୪ଟା ସମୟରେ ଭାଙ୍ଗିଯାଏ।

ନନୀଦା—ଆପଣ ତ ରାତି ୧ଟା ସମୟରେ ନିଦରୁ ଉଠନ୍ତି।

ଶ୍ରୀଶ୍ରୀପିତୃଦେବ—୧ଟାରୁ ୧ଟା ୨୦ ମିନିଟ୍ ଭିତରେ ନିଦ ଭାଙ୍ଗିଯାଏ। ଠାକୁରଙ୍କ ଦୟାରୁ ମୁଁ ଯାହା ମନେକରେ ତା'ହିଁ ହୁଏ।

ଶ୍ରୀଶ୍ରୀପିତୃଦେବ ପୁନରାୟ କହିଲେ—ଯେ ରାସ୍ତା ଦେଇ ଯାଏ, ସେ ରାସ୍ତା ଛାଡ଼ି ଅନ୍ୟ ଦିଗରେ ପାହୁଣ୍ଡେ ଦି-ପାହୁଣ୍ଡ ବଢ଼ାଇଛି କି ନାହିଁ, ପୁଣି ମୂଳ ରାସ୍ତାକୁ ଫେରିଆସେ। ପ୍ରକୃତି ଯେମିତି ବ୍ରେକ୍ କଷିଦିଏ।

ନନୀଦା—ଶ୍ରୀଶ୍ରୀଠାକୁରଙ୍କର ବି ଏଭଳି ଦେଖିଛି।

ଶ୍ରୀଶ୍ରୀପିତୃଦେବ—ଠାକୁର ଓ ମା' (ଶ୍ରୀଶ୍ରୀବଡ଼ମା) ସମସ୍ତଙ୍କର ଭୋରୁ ଉଠିବା ଅଭ୍ୟାସ। ଥରେ ରାତିରେ ଠାକୁର ଆସୁଛନ୍ତି, ତାଙ୍କର ପଦଧ୍ୱନି ଶୁଭୁଛି, ସାଙ୍ଗରେ ଲୋକବାକ—ନିଦରୁ ଉଠିପଡ଼ିଛି। ଯେତେବେଳେ ଶୁଏ ନା କାହିଁକି ଠିକ୍ ଗୋଟାଏ ଭିତରେ ଉଠିପଡ଼େ—ପିଲାବେଳରୁ ହିଁ ଏହି ଅଭ୍ୟାସ। ଶ୍ରୀଶ୍ରୀଠାକୁରଙ୍କର ଯାତ୍ରା ଦେଖିବା ନେଇ କଥା ଉଠିଲା।

ଶ୍ରୀଶ୍ରୀପିତୃଦେବ କହିଲେ—ଠାକୁର ଯାତ୍ରା ପସନ୍ଦ କରୁଥିଲେ, ମୂଳରୁ ଶେଷପର୍ଯ୍ୟନ୍ତ ଦେଖୁଥିଲେ। ସେତେବେଳେ ମୁଁ ଟିକିଏ ଖାଲି ଦେଖି ଚାଲି ଯାଉଥିଲି ଭୋରରୁ ଉଠିବାଲାଗି। ଭୋରରୁ ଉଠିଆସି ଦେଖେ ତ ଠାକୁର ଠିକ୍ ବସିଛନ୍ତି।

ଆଶ୍ରମର ପିଲାଟିଏ ବଜାରକୁ ଯିବ, ଶ୍ରୀଶ୍ରୀପିତୃଦେବଙ୍କୁ ପ୍ରଣାମ କରି ବାହାରିବ। ସଙ୍ଗୀମାନେ ଅପେକ୍ଷା କରୁଛନ୍ତି ତା' ଲାଗି।

ଶ୍ରୀଶ୍ରୀପିତୃଦେବ—କେଉଁଥି ପାଇଁ ବଜାରକୁ ଯିବୁ ?

ଉକ୍ତ ପିଲାଟି—ଏମିତି ଯିବି, କିଛି କାମ ନାହିଁ।

—ଏମିତି ଯିବୁ କାହିଁକି ? ମରାମରି କରିବାକୁ ଯାଉନାହୁଁ ତ ?

—ଆଜ୍ଞା ନା।

—ବିଡ଼ିପିଡ଼ି ଖାଇବାକୁ ଯିବୁ ନା କଣ ?

—ଆଜ୍ଞା ନା।

ଶ୍ରୀଶ୍ରୀପିତୃଦେବ ପିଲାଟିକୁ ଯଥାଶୀଘ୍ର ଫେରି ଆସିବାକୁ ନିର୍ଦ୍ଦେଶ ଦେଲେ।

ନନୀଦା—ଆଜ୍ଞା, ବର୍ତ୍ତମାନ ଆଶ୍ରମରେ ଧୂମପାୟୀ ଲୋକଙ୍କ ସଂଖ୍ୟା ଖୁବ୍ କମିଯାଇଛି।

ଏ ଖବର ଶୁଣି ଶ୍ରୀଶ୍ରୀପିତୃଦେବ ସ୍ୱସ୍ତି ବୋଧ କଲେ।

ଗୁରୁକିଙ୍କର ଭାଇ—୩୦ ବର୍ଷ ଧରି ଯା' ଖାଇଛି, ତା' ଏତେଦିନେ ଛାଡ଼ିଲି। ପ୍ରଶାନ୍ତଦା (ବେରା) ପାଖରୁ ଥରେ ସିଗାରେଟ୍ ମାଗିବାରୁ ସେ କହିଲେ— ମୁଁ ତ ଛାଡ଼ିଦେଇଛି। ସେ କଥା ଶୁଣି ମୋର ମନେହେଲା—ଏତେ ବଡ଼ ନିଶାଖୋର ଛାଡ଼ି ପାରିଲା, ମୁଁ ସତରେ କେଡ଼େ ଆହାମ୍ମକ, ଛାଡ଼ି ପାରୁନି !— ତା'ପରଠାରୁ ଆଉ ଖାଇନି।

ଶ୍ରୀଶ୍ରୀପିତୃଦେବ—ମୁଁ ଯେବେ କହିଛି, ସଙ୍ଗେ ସଙ୍ଗେ ତ ଛାଡ଼ି ଦେଇଛୁ।

ଗୁରୁକିଙ୍କରଦା—ଆଜ୍ଞା, ବିଡ଼ି ଛାଡ଼ିଥିଲି, କିନ୍ତୁ ସିଗାରେଟ୍ ଖାଉଥାଏ।

ଟିକିଏ ରହି ଶ୍ରୀଶ୍ରୀପିତୃଦେବ କହିଲେ—ସମସ୍ତେ ପାରିଲେ, ବଙ୍କିମ ଦାସ ପାରିଲାନି। ମଣିଷ ପାରେନା କିପରି ଭାବି ପାରେ ନା। ଇଚ୍ଛା କରିଲେ ହିଁ ପାରେ। ମନେକଲି ଖାଇବି ତ ଖାଇବି। ପୁଣି, ମନେକଲି ଖାଇବିନି ତ ଖାଇବିନି।

ପ୍ରସଙ୍ଗକ୍ରମେ ଶ୍ରୀଶ୍ରୀଠାକୁରଙ୍କର ତମାଖୁ ଖାଇବା ନେଇ କଥା ଉଠିଲା।

ଶ୍ରୀଶ୍ରୀପିତୃଦେବ କହିଲେ—ଠାକୁରଙ୍କ ସଙ୍ଗରେ ଏକାସନରେ ବସି ଏକା ଗଡ଼ଗଡ଼ାରେ ମହାରାଜ (ଅନନ୍ତ ନାଥ ରାୟ), ଗୋସାଁଇଦା (ସତୀଶ ଚନ୍ଦ୍ର ଗୋସ୍ୱାମୀ) ତମାଖୁ ଖାଉଥିଲେ। ନନୀ ଭାଇ ଏକାସନରେ ବସି ଖାଉଥିଲେ— କିନ୍ତୁ ଏକା ଗଡ଼ଗଡ଼ାରେ ଖାଉ ନ ଥିଲେ। ଦିନେ କୁମାରଖାଲିର ମା' (ଦେବୁ ବାଗଚୀର ପ୍ରପିତାମହୀ) ମହାରାଜଙ୍କୁ ଏକୁଟିଆ ପାଇ କହିଲେ—ତୁମେ ତ ମହାରାଜ, ଭକ୍ତ କ'ଣ ଗୁରୁ ସଙ୍ଗରେ ଏକାସନରେ ବସି ତମାଖୁ ଖାଏ ? ଲୋକଙ୍କୁ ଏତେ ଉପଦେଶ ଦିଅ ଆଉ ଏଇଟା ବୁଝନା ? —ତା' ପରେ ଆଉ କୌଣସି ଦିନ ଦେଖିନି।

ଗୁରୁକିଙ୍କରଦା—ଜୀବନୀ ଭିତରେ ତ ଏ ଘଟଣା ନାହିଁ।

ଶ୍ରୀଶ୍ରୀପିତୃଦେବ—ଜୀବନୀରେ ତ ଅନେକ ଘଟଣା ହିଁ ନାହିଁ।

ଅସବର୍ଣ୍ଣ ବିବାହ ନେଇ କଥା ଉଠିଲା। ଉପସ୍ଥିତ ଭାଇମାନେ ଆଲୋଚନା କରିବାକୁ ଲାଗିଲେ—ସରକାର କିଭାବେ ଅର୍ଥ ଅନୁଦାନ ଦେଇ ଅସବର୍ଣ୍ଣ ବିବାହକୁ ଉତ୍ସାହିତ କରି ଚାଲିଛନ୍ତି ; ଅସବର୍ଣ୍ଣ ବିବାହ ମଧ୍ୟରେ ଅନୁଲୋମ-ପ୍ରତିଲୋମ ଉଭୟଟା ହିଁ ପଡ଼େ। ବିବାହର ତ୍ରୁଟି ଫଳରେ ଦେଶର ଲୋକ କେତେ ନିମ୍ନକୁ ଚାଲିଯାଉଛନ୍ତି, divorce (ବିବାହ ବିଚ୍ଛେଦ)

ପ୍ରଭୃତି ହେଉଛି, ଇତ୍ୟାଦି।

ଶ୍ରୀଶ୍ରୀପିତୃଦେବ—Divorce (ବିବାହ-ବିଚ୍ଛେଦ) ର ଅସଲ cause (କାରଣ) ହେଲା false education (ମିଥ୍ୟାଶିକ୍ଷା)।

କଥା ଚାଲୁ ଚାଲୁ ଶ୍ରୀଶ୍ରୀପିତୃଦେବଙ୍କର ଉଠିବା ସମୟ ହୋଇଗଲା। ସେ ଶ୍ରୀଶ୍ରୀଠାକୁର ଓ ଶ୍ରୀଶ୍ରୀବଡ଼ମାଙ୍କ ପ୍ରଣାମ ସାରି ଠାକୁରବଙ୍ଗଳାରୁ ବାସଗୃହ ଦିଗରେ ଚାଲିଲେ।

## ଶୁକ୍ରବାର, ୨୬-ଭାଦ୍ରବ, ୧୩୮୨ (ଇଂ ୧୨/୯/୭୫)

ପ୍ରାତଃକାଳୀନ ବିନତି-ପ୍ରାର୍ଥନା ପରେ ଶ୍ରୀଶ୍ରୀପିତୃଦେବ ଯଥାରୀତି ବଡ଼ ନାଟମଣ୍ଡପରେ ଆସି ବସିଲେ। ଉପସ୍ଥିତ ଥା'ନ୍ତି—ନନୀଗୋପାଳ ଚକ୍ରବର୍ତ୍ତୀ, ଗୁରୁପ୍ରସନ୍ନ ଭଟ୍ଟାଚାର୍ଯ୍ୟ, ଗୁରୁକିଙ୍କର ପାଣ୍ଡେ, ଶିଶୁରଞ୍ଜନ ବିଶ୍ୱାସ, ଅଜିତ କର, ଭବାନୀ ଚରଣ ରାୟ, ନିତ୍ୟାନନ୍ଦ ମଣ୍ଡଳ, ଦଶରଥ କର୍ମକାର, ନିତ୍ୟଗୋପାଳ ମଣ୍ଡଳ, ଜିତେନ୍ଦ୍ର ନାଥ ଦେବବର୍ମ୍ମନ, ବିପ୍ଳବ ଗୁପ୍ତ, ବଙ୍କିମ ମାହାତୋ, ସଲିଳ ମୈତ୍ର, ସତୀଶ ଚନ୍ଦ୍ର ପାଲ, ଶ୍ରୀଧର ବାନାର୍ଜୀ, କ୍ଷିତୀଶ ଚନ୍ଦ୍ର ସେନଗୁପ୍ତ, ସୁଧୀର ବକ୍‌ସି, ଶ୍ରୀକଣ୍ଠ ମାଇତି, ଡାଃ ପ୍ରଶାନ୍ତ କୁମାର ବେରା, ବ୍ରଜେନ୍ ସିଂ, ପ୍ରଫୁଲ୍ଲ କୁମାର ବକ୍‌ସି, ହରିପଦ ଦାସ ଓ ଆହୁରି ଅନେକେ। ମା'ମାନେ ବି ଉପସ୍ଥିତ ଅଛନ୍ତି ଅନେକେ।

ଗତକାଲି ସତ୍ୟାନୁସରଣର ପଠିତ ବାଣୀଟିର ଅର୍ଥ ସମୟାଭାବରୁ ସମ୍ପୂର୍ଣ୍ଣ ନ ହୋଇଥିବାରୁ, ପୁନରାୟ ତା'ର ଆଲୋଚନା ଆରମ୍ଭ ହେଲା। ଗତକାଲି ନୀରଦ ଭାଇ (ସରକାର) ଓ ପ୍ରଫୁଲ୍ଲଦା (ବକ୍‌ସି) ବାଣୀଟିର କି ବାଖ୍ୟା କରିଛନ୍ତି, ତା' ସଂକ୍ଷେପରେ କହି, ଶ୍ରୀଶ୍ରୀପିତୃଦେବ ହରିପଦ (ଦାସ) ଭାଇଙ୍କୁ ଏ ବିଷୟରେ କହିବାକୁ କହିଲେ।

ହରିପଦ ଭାଇ—ଜୀବନବୃଦ୍ଧିର ପଥରୁ ଯେଉଁମାନେ ବିଚ୍ୟୁତ, ସେମାନେ ପତିତ। ସେମାନଙ୍କୁ ଜୀବନବୃଦ୍ଧିର କଥା ଶୁଣାଇବାକୁ ହେବ, ସେ ପଥରେ ନେଇ ଆସିବାକୁ ହେବ।

ଶ୍ରୀଶ୍ରୀପିତୃଦେବ—ଯା'କୁ ପତିତ ବୋଲି କହୁଛ, ସେ ପତିତ ହେଲା କିପରି? ଆଉ ଯେ ଉଦ୍ଧାରର କଥା ଶୁଣାଉଛ ଯେ ନିଜେ ହିଁ ଯେ ପତିତ ନୁହେଁ ତା ବା ବୁଝିବି କେମିତି?

ନୀରଦ ଭାଇ—ଯେଉଁମାନେ ସତ୍‌ସଙ୍ଗୀ ନୁହଁନ୍ତି, ଠାକୁରଙ୍କ ଅନୁଶାସନ ମାନି ଚାଲନ୍ତି ନାହିଁ, ସେମାନେ ସକଳେ ହିଁ ପତିତ।

ଶ୍ରୀଶ୍ରୀପିତୃଦେବ—ଜଣେ ହୁଏତ ମଦ ଖାଏ, କାହାର ଅନିଷ୍ଟ କରେ ନା, ଦାନଧ୍ୟାନ କରେ ; ତାକୁ ମନେ କରୁଛ ପତିତ, କିନ୍ତୁ ସେ ତ ପତିତ ନୁହେଁ। ଯେମିତି ଦଶନାମୀ ସମ୍ପ୍ରଦାୟର ଲୋକେ ଗଞ୍ଜେଇ ଫଞ୍ଜେଇ ଖା'ନ୍ତି, ସେମାନେ ଶ୍ରୀଶ୍ରୀଠାକୁରଙ୍କ ନିର୍ଦ୍ଦେଶ ମାନି ଚାଲନ୍ତି ନି ; କିମ୍ବା ଯେଉଁମାନେ ତାନ୍ତ୍ରିକ, ସେମାନଙ୍କ ସଙ୍ଗରେ ବି ଆମର ମେଳେ ନା ; ସେମାନେ କ'ଣ ତା'ହେଲେ ପତିତ?

ସମସ୍ତେ ନୀରବ।

ଏହାପରେ ଶ୍ରୀଶ୍ରୀପିତୃଦେବ ବାଣୀଟିର ପ୍ରକୃତ ଅର୍ଥ ବୁଝାଇ କହିଲେ,—କେହି ଯଦି ଜୀବନବୃଦ୍ଧିର ନୀତି, ଆତ୍ମିକ ବା ଆଧ୍ୟାତ୍ମିକ ନୀତିବିଧି-ସମୂହଠାରୁ ବାରମ୍ବାର ଚ୍ୟୁତ ହୁଏ

ତାକୁ ଶେଷ ପର୍ଯ୍ୟନ୍ତ ସମାଜରୁ ବିତାଡ଼ିତ କରାହୁଏ,—ସେତେବେଳେ ତାକୁ ବାସ୍ତବରେ ପତିତଭାବରେ ଦେଖିବାକୁ ମିଳେ। ସାଧାରଣତଃ ଯେଉଁମାନେ ଭ୍ରୁଣହତ୍ୟା, ବ୍ରହ୍ମହତ୍ୟା, ସ୍ତ୍ରୀ-ହତ୍ୟା ଓ ଗୋ-ହତ୍ୟା ଇତ୍ୟାଦି କରିଥା'ନ୍ତି ସେମାନେ ହିଁ ପତିତ। ସେମାନେ ଯେଭଳି ପଥ ପା'ନ୍ତି, ସେଥିଲାଗି ସେମାନଙ୍କୁ ସତ୍‌ସଙ୍ଗ ଦେବାକୁ ହେବ, ତାପରେ ଏଇ ଯେଉଁ ସତ୍‌ସଙ୍ଗ ଦେଲି, ସେଥିରୁ ଯେଭଳି ବିଚ୍ୟୁତ ନ ହୁଏ, ଲକ୍ଷ୍ୟ ରଖିବାକୁ ହେବ। ଆଗକାଳରେ ଏସବୁ ଲୋକଙ୍କୁ କେହି ନିମନ୍ତ୍ରଣ କରୁ ନ ଥିଲେ, ଧୋବା-ଭଣ୍ଡାରୀ ବନ୍ଦ କରା ହେଉଥିଲା। ଏସବୁ କରିବା ପରେ ତାକୁ ଯଦି ସତ୍‌ସଙ୍ଗ ଦିଆଯାଏ ଏବଂ ସେ ଯଦି ନିଜର ଭୁଲ ସ୍ୱୀକାର କରେ, ଅନୁତପ୍ତ ହୁଏ ତାହେଲେ ସେ ପଥ ପାଇଯାଏ।

ଏହି ପ୍ରସଙ୍ଗରେ ଦସ୍ୟୁ ରତ୍ନାକର ଓ ଜଗାଇ-ମାଧାଇଙ୍କ କାହାଣୀଟି କହିଲେ। —ନାରଦଙ୍କ ସହିତ ବଣ ମଧ୍ୟରେ ରତ୍ନାକରରଂ ଦେଖା ହେଲା। ନାରଦ ତାକୁ କହିଲେ— ତୁମର ପାପ ଲାଗି ଦାୟୀ ତୁମେ, ଏହାର ଅଂଶୀଦାର କେହି ନାହିଁ। ରତ୍ନାକର ଘରେ ପଚାରିବାକୁ ଗଲା କେହି ଅଂଶୀଦାର ହୁଅନ୍ତି କି ନା। କିନ୍ତୁ ଘରର ସମସ୍ତେ କହିଲେ—ଆମର ପ୍ରତିପାଳନ କରିବା ତୁମର କର୍ତ୍ତବ୍ୟ। ତୁମେ କିପରି ତା' କରୁଛ ସେଥିରେ ଆମର କଣ ଅଛି? ତୁମର ପାପର ଭାଗୀ ହେବାକୁ ଯିବୁ କାହିଁକି? ଫେରି ଆସି ରତ୍ନାକର ଜାଣିବାକୁ ଚାହିଁଲା କିପରି ଉଦ୍ଧାର ହେବ। ରାମ-ନାମ ଉଚ୍ଚାରଣ ବି ହୁଏ ନା। ତେଣୁ ନାରଦ 'ମରା'-'ମରା' ଜପ କରିବାକୁ କହିଲେ। ଏହା କରି ହିଁ ଶେଷରେ ଉଦ୍ଧାର ପାଇଗଲା ରତ୍ନାକର।

ଜଗାଇ-ମାଧାଇ ସହିତ ନତ୍ୟାନନ୍ଦଙ୍କର ଦେଖା। ନାମ ଶୁଣିବାକୁ ଚାହେନା। ନିତ୍ୟାନନ୍ଦଙ୍କୁ ଭଙ୍ଗୀ କଳସିର ଫଙ୍ଗ ଫୋପାଡ଼ି ମାରିଲେ ତେବେ ବି ନିତ୍ୟାନନ୍ଦ ଛାଡ଼ନ୍ତିନି। ସ୍ତ୍ରୀ-ହତ୍ୟା, ବ୍ରହ୍ମହତ୍ୟା ପ୍ରଭୃତି ଏମିତି ପାପ ନାହିଁ ଯାହା ସେମାନେ କରି ନାହାନ୍ତି। ଶେଷରେ ଦୁଇଭାଇ ପଥ ପାଇଗଲେ—ନିତ୍ୟାନନ୍ଦ ସାଧୁସଙ୍ଗ ଦେଲେ, ସବୁବେଳେ ପାଖେ ପାଖେ ରଖିଥା'ନ୍ତି, ବହୁଦିନର ଖରାପ ଅଭ୍ୟାସ ଠିକ୍ କରିବା ଲାଗି।

ତୁମେ ସବୁ (ନୀରଦଦା, ପ୍ରଫୁଲ୍ଲଦା) ତ କହୁଛ ଜୀବନବୃଦ୍ଧିର ପଥରୁ ବିଚ୍ୟୁତ ହେବାରେ ପତିତ ହୋଇଯାଏ। କିନ୍ତୁ ଜୀବନବୃଦ୍ଧିର ପଥରୁ ବିଚ୍ୟୁତ ହେଲା କିପରି? ଏଇ ରକମ କୁକର୍ମରେ ଅଭ୍ୟସ୍ତ ହୋଇଗଲେ ପତିତ ହୋଇଯାଏ। ତେଣୁ ପୁଣି ସେଇ cultureରେ (ଜୀବନବୃଦ୍ଧିର ସଂସ୍କୃତିରେ) ନେଇ ଆସିବାକୁ ପଡ଼େ। ସେଥିଲାଗି ତ ଯେ ପତିତ ତାକୁ ଇଷ୍ଟଙ୍କ ସହିତ ଯୁକ୍ତ କରି ସେଇ ଭାବରେ ଆଚରଣଶୀଳ କରାଇ ଛାଡ଼ିବା ଉଚିତ।

ଶ୍ରୀଶ୍ରୀପିତୃଦେବ ପୁନରାୟ କହିଲେ—କିନ୍ତୁ ସେବକ ଯଦି ନ ହେଲି, ଯା'କୁ ଉପଦେଶ ଦେଉଛି, ତା ଉପରେ ଯଦି ପ୍ରେମ-ପ୍ରୀତି ନ ଥାଏ, ତାହେଲେ କହିବାଟା କାର୍ଯ୍ୟକାରୀ ହୁଏ ନା; ସେ ଉପଦେଶ ଶୁଣିବ ହିଁ ନାହିଁ, କହିବ, ତୁମେ କିଏ ହେ,—ଉପଦେଶ ଦେବାକୁ ଆସିଛ? ସେଥିଲାଗି ଆଗେ 'You are for the Lord' (ତୁମେ ଇଷ୍ଟଙ୍କ ଲାଗି) ହେବାକୁ ହୁଏ। ତାଙ୍କର ସେବକ ହେବାକୁ ହୁଏ। ଉଦ୍ଧାରର କଥା ଶୁଣାଇବାର ଅଧିକାର ପାଇବାକୁ ହୁଏ। —ସଭା ପ୍ରତି ଚିରନ୍ତନ regard (ଶ୍ରଦ୍ଧା) ଓ ଭଲପାଇବା ଥିଲେ ପତିତକୁ ଉଦ୍ଧାରର କଥା

ଶୁଣାଣ ଯାଏ ।

## ରବିବାର, ଭାଦ୍ରବ-୨୮, ୧୩୮୨ (ଇଂ ୧୪/୯/୭୫)

ଗତକାଲି ଥିଲା ଶୁଭ ତାଳନବମୀ ତିଥି—ପୁରୁଷୋତ୍ତମ ଶ୍ରୀଶ୍ରୀଠାକୁର ଅନୁକୂଳଚନ୍ଦ୍ରଙ୍କର ଶୁଭ ୮୮ତମ ଆବିର୍ଭାବ ତିଥି। ଏଇ ଉପଲକ୍ଷରେ ଦୂରଦୂରାନ୍ତରୁ ଆବାଳ-ବୃଦ୍ଧ-ବନିତା ସମବେତ ହୋଇଛନ୍ତି ସତ୍‌ସଙ୍ଗ ନଗରରେ—ପ୍ରିୟପରମଙ୍କ ଶ୍ରୀପାଦପଦ୍ମରେ ଭକ୍ତିଅର୍ଘ୍ୟ ନିବେଦନ କରିବାକୁ। ଏଥରକ ଉତ୍ସବର ବିଶେଷ ଆକର୍ଷଣ ହେଲା ପରମଦୟାଲ ଶ୍ରୀଶ୍ରୀଠାକୁରଙ୍କ ଦିବ୍ୟସ୍ମୃତି ରକ୍ଷଣାଗାରର ଶୁଭ ଉଦ୍‌ବୋଧନ। ଶ୍ରୀଶ୍ରୀପିତୃଦେବ ଗତ କାଲି ସକାଳ ୭ଟା ୧୫ ମିନିଟ୍‌ରେ ଏହି ପୁଣ୍ୟ ସ୍ମୃତି ରକ୍ଷଣାଗାର— 'ମେମୋରିଆ' (memoria) ଉଦ୍‌ବୋଧନ କରିଛନ୍ତି। 'ମେମୋରିଆ'—ଏଇ ନାଁଟି ତାଙ୍କରି (ଶ୍ରୀଶ୍ରୀପିତୃଦେବଙ୍କର) ଦିଆ। ମେମୋରିଆ ପରିଦର୍ଶନାନ୍ତେ ଭିଜିଟରସ୍ ବୁକ୍‌ରେ ସେ ହିଁ ପ୍ରଥମ ସ୍ୱାକ୍ଷର କରନ୍ତି। ହଜାର ହଜାର ନରନାରୀଙ୍କର ସମାବେଶରେ ଅନୁଷ୍ଠାନଟି ସ୍ୱର୍ଗୀୟ ସୁଷମାରେ ଭରପୁର ହୋଇଉଠେ।

ଆଜି ସକାଳ ୫ଟା ୧୫ ମିନିଟ୍ ରେ ଶ୍ରୀଶ୍ରୀପିତୃଦେବ ଷୋଡ଼ଶୀଭବନରୁ ବାହାରି ଚାଲିଛନ୍ତି ଠାକୁରବାଡ଼ୀ ଅଭିମୁଖରେ। ସଙ୍ଗରେ ପୂଜ୍ୟପାଦ ଅଶୋକଦା ଓ ଉତ୍ସବରେ ଯୋଗଦାନକାରୀ ଅନେକ ଭାଇ ଓ ମା'ମାନେ। ଠାକୁରବଂଗଳାରେ ପହଞ୍ଚି ଶ୍ରୀଶ୍ରୀବଡ଼ମା'ଙ୍କ ଆବାସ ଗୃହରେ ପୂର୍ବପଟ ବାରଣ୍ଡାରେ ଥିବା ବେଞ୍ଚରେ କିଛିକ୍ଷଣ ବସିଲେ ସେ। ପୂଜନୀୟ ଅଶୋକଦାଙ୍କ ସହ ଅନ୍ୟମାନେ ଉପସ୍ଥିତ।

କଥା ପ୍ରସଙ୍ଗରେ ଗତ ରାତ୍ରିରେ ମନୋମୋହିନୀ ଧାମ୍ ଉତ୍ସବ-ମଣ୍ଡପରେ ହୋଇଥିବା ବିଚିତ୍ରାନୁଷ୍ଠାନର କଥା ଉଠିଲା। ଗତ ରାତ୍ରିରେ ସବୁ ଅନୁଷ୍ଠାନାଦିର ଶେଷରେ ଥିଲା—'କୃଷ୍ଟି-ବାନ୍ଧବ ନାଟ୍ୟଶିଳ୍ପମ୍' ର 'ଶାପ-ମୋଚନ' ଅଭିନୟ। ଆଶ୍ରମ ଶିଳ୍ପୀଗଣ'ଙ୍କର୍ତ୍ତୃକ ଏହି ଯାତ୍ରାଭିନୟ ପ୍ରଦର୍ଶିତ ହୁଏ।

ଲକ୍ଷ୍ମୀଦି (ଲକ୍ଷ୍ମୀରାଣୀ ଗୁହ) କହିଲେ—ଗତ କାଲିର ଯାତ୍ରା ଖୁବ୍ ଭଲ ହୋଇଛି। ଡ୍ରେସିଂ, ପେଣ୍ଟିଂ ସବୁ ମୋର ଭଲ ଲାଗିଛି। ମିଉଜିକ୍ ପାର୍ଟି ବି ଖୁବ୍ ଭଲ ବଜାଇଛି। ତବଲଚି ବି ଥିଲା ସେ ରକମ। ଶ୍ରୀଶ୍ରୀପିତୃଦେବ ଶୁଣି କହିଲେ—ଆମର ପେଣ୍ଟିଂ, ଡ୍ରେସିଂ ତ ଭଲ ହିଁ ହୁଏ।

ଚାରିଆଡ଼ ଭିଜା ଭିଜା, ମଝିରେ ମଝିରେ କୁଣ୍ଡାଝଡ଼ା ବର୍ଷା ପଡୁଛି ; ଗଛପତ୍ରରେ ବର୍ଷାର ଜଳକଣା। ଗୃହ-ପ୍ରାଙ୍ଗଣ, ଗେଟ୍ ଇତ୍ୟାଦି ବି ନୂତନ ଲାଗୁଛି। ଠାକୁରଘର ଫୁଲ ଓ ମାଳରେ ସଜ୍ଜିତ। ୫ଟା ୨୮ ମିନିଟ୍‌ରେ ସମବେତ ବିନତି ପ୍ରାର୍ଥନା ଆରମ୍ଭ ହେଲା। ପ୍ରାର୍ଥନାନ୍ତେ ଯଥାବିଧି ଶ୍ରୀଶ୍ରୀଠାକୁର ଓ ଶ୍ରୀଶ୍ରୀବଡ଼ମା'ଙ୍କ ପ୍ରଣାମ ପରେ ଶ୍ରୀଶ୍ରୀପିତୃଦେବ ବଡ଼ ନାଟମଣ୍ଡପରେ ଉପବେଶନ କଲେ। ପୂଜ୍ୟପାଦ ଅଶୋକଦାଙ୍କ ସହ ସମବେତ ଭକ୍ତବୃନ୍ଦ ପ୍ରଥମେ ଶ୍ରୀଶ୍ରୀପିତୃଦେବଙ୍କୁ ଓ ପରେ ଭକ୍ତଗଣ ପୂଜ୍ୟପାଦ ଅଶୋକଦାଙ୍କୁ ପ୍ରଣାମ ନିବେଦନ କରନ୍ତି। ଅତଃପର ପୂଜ୍ୟପାଦ ଅଶୋକଦା ଅନ୍ୟତ୍ର ଯାଆନ୍ତି।

ଶ୍ରୀଶ୍ରୀପିତୃଦେବଙ୍କ ସାମ୍ନାରେ ବସିଛନ୍ତି ଭବାନୀ ଭାଇ। ଶ୍ରୀଶ୍ରୀପିତୃଦେବ ତାଙ୍କୁ ପଚାରିଲେ—ତୋର ଭଣଜା (ପ୍ରଦୀପ ରାୟ) କ'ଣ କହୁଛି ?

ଭବାନୀ ଭାଇ—ତାର driving (ମୋଟରଗାଡ଼ି ଚଳାଇବା) ଶିଖିବାର ଖୁବ୍ ଇଚ୍ଛା।

ଶ୍ରୀଶ୍ରୀପିତୃଦେବ—ଶିଖିଲେ ତ ପାରେ। ତେବେ ମାଟ୍ରିକ୍ ଯେପରି ପାଶ୍ କରିପାରେ ଦେଖିବୁ। ଲେଖିଲାବେଳେ ବନାନ ଭୁଲ ଯେପରି ନ ହୁଏ ସେ ଦିଗରେ ଯେମିତି ଲକ୍ଷ୍ୟ ରଖେ।

ଭବାନୀ ଭାଇ—ଆଗେ ତାର ଲେଖାପଢ଼ାରେ ମନ ଲାଗୁ ନ ଥିଲା, ଏବେ ମନ ଲାଗୁଛି। ବର୍ତ୍ତମାନ ମଦନ ଭାଇ (ଘୋଷ) ଙ୍କ ପାଖରେ ରହେ।

ମଦନ ଭାଇ ଅନତିଦୂରରେ ବସିଥିଲେ। ଶ୍ରୀଶ୍ରୀପିତୃଦେବ ତାଙ୍କୁ ଲକ୍ଷ୍ୟ କରି କହିଲେ—ତୋର ସେଠି ପାଖାପାଖି କେଉଁ ମୋଟର ଡ୍ରାଇଭିଂ ଟ୍ରେନିଂ କଲେଜ ଅଛି କି—ଖୋଜ ନେବୁ। ତେବେ ଟ୍ରେନିଂ ନେଇ ଲାଇସେନ୍ସଟା ବାହାର କରିବାଟା ତ ବଡ଼ କଥା ନୁହେଁ, ତାପରେ ହିଁ ଅସଲ କାମ।

ଉତ୍ସବ ଉପଲକ୍ଷେ ଦୂରଦୂରାନ୍ତରୁ ଆଗତ ମା' ଓ ଭାଇମାନଙ୍କ ଭିତରୁ ଅନେକେ ସମବେତ ହୋଇଛନ୍ତି ; କେହି କେହି ଆଜି ଘରକୁ ଫେରିବାର ଅନୁମତି ନେଉଛନ୍ତି।

ଇତି ମଧ୍ୟରେ ୬ଟା ବାଜିବା ସଙ୍ଗେ ସଙ୍ଗେ 'ସତ୍ୟାନୁସରଣ'ରୁ ବାଣୀ ପାଠ ହେଲା—

''ଯଦି ଏତେଟିକିଏ ଲୋକନିନ୍ଦା, ଉପହାସ, ସ୍ୱଜନାନୁରକ୍ତି, ସ୍ୱାର୍ଥହାନି, ଅନାଦର, ଆତ୍ମ ବା ପରଗଞ୍ଜଣା ତୁମର ପ୍ରେମାସ୍ପଦଙ୍କଠାରୁ ତୁମକୁ ଦୂରରେ ରଖିପାରେ, ତେବେ ତୁମର ପ୍ରେମ କେତେଇ କ୍ଷୀଣ—ତା' ନୁହେଁ କି ?''

ବାଣୀଟି ପାଠ କଲେ ଶ୍ରୀକଣ୍ଠ ଭାଇ, ଲାଲ ଭାଇ, ବଂଶୀ ଭାଇ, ପ୍ରଶାନ୍ତ ଭାଇ, ଯଶୋବନ୍ତ ଭାଇ ଓ ପଣ୍ଡିତ ଭାଇ ଯଥାକ୍ରମେ ବଙ୍ଗଳା, ହିନ୍ଦୀ, ଓଡ଼ିଆ, ଅସମୀୟା, ମରାଠୀ ଓ ଇଂରାଜୀରେ।

ସତୀଶ ଭାଇ (ପାଲ) ଜଣାଇଲେ, ଆଲୋଚନା କରିବାର ଅଛି।

ଶ୍ରୀଶ୍ରୀପିତୃଦେବ—କିଏ କହିବ ? ଶଙ୍କର (ରାୟ) କହୁ।

ଶଙ୍କର ଭାଇଙ୍କୁ ଇତସ୍ତତଃ କରିବା ଦେଖି ଶ୍ରୀଶ୍ରୀପିତୃଦେବ କହିଲେ—କଣ ପଚାରିବାକୁ ହେବ ପଚାର ସତୀଶକୁ।

ସେ କିଛି ପଚାରିବା ଆଗରୁ ସତୀଶଦା ଜାଣିବାକୁ ଚାହିଁଲେ—ଲୋକନିନ୍ଦା ଇଷ୍ଟବିଚ୍ୟୁତି ନେଇଆସେ କିମିତି ?

ଶ୍ରୀଶ୍ରୀପିତୃଦେବ—ତା' ହେଲେ ପ୍ରଶ୍ନ ଉଠେ, ଲୋକନିନ୍ଦା କହିଲେ କଣ ବୁଝାଏ ? କା' ସମ୍ବନ୍ଧରେ କିଏ ନିନ୍ଦା କରିବ ?

ଶଙ୍କର ଭାଇ—ଠାକୁରଙ୍କ ଦୀକ୍ଷାନେଇ ମାଛ-ମାଂସ ଖାଏନା ଏଥିପାଇଁ ଲୋକେ ମୋର ନିନ୍ଦା କରୁଛନ୍ତି—ମାଛ-ମାଂସ ଖାଉନ, ସ୍ୱାସ୍ଥ୍ୟ ଖରାପ ହୋଇଯିବ ;— ଏ କଥାଟା କ'ଣ ଲୋକନିନ୍ଦା ହେଲା ?

ଶଙ୍କର ଭାଇ—ଲୋକଙ୍କର ଏ କଥା ଶୁଣି ମୋର ବିଚ୍ୟୁତି ଆସିଲେ, ତେବେ ଯାଇ ଏହାକୁ ଲୋକନିନ୍ଦା କୁହାଯିବ।

ଶ୍ରୀଶ୍ରୀପିତୃଦେବ—ମୁଁ ମାଛ-ମାଂସ ଖାଏନା, ଠିକ୍ ତ, ଏ କଥାରେ ମୋର ବିଚ୍ୟୁତି ହେବ କାହିଁକି ?

ତାଙ୍କ ଆଦେଶରେ ଏଥରକ ପ୍ରଫୁଲ୍ଲ (ବକ୍ସି) ଭାଇ କିଛି କହିଲେ। କିନ୍ତୁ ପ୍ରଫୁଲ୍ଲ ଭାଇଙ୍କ କଥା ମୂଳ ବକ୍ତବ୍ୟଠାରୁ ଦୂରେଇ ଯାଉଛି ଦେଖି ଶ୍ରୀଶ୍ରୀପିତୃଦେବ କହିଲେ—ଏତେ ସମୟ ନେଲେ ଆଲୋଚନା ଚାଲିବ କିପରି ?

ପ୍ରଫୁଲ୍ଲ ଭାଇଙ୍କର ବକ୍ତବ୍ୟ ଥିଲା,—ସତ୍‌ସଙ୍ଗୀମାନେ ମାଛ-ମାଂସ ଖାଆନ୍ତି ନି ; ସେଥିଲାଗି ଅନ୍ୟମାନେ ସତ୍‌ସଙ୍ଗୀଙ୍କର ନିନ୍ଦା କରିପାରନ୍ତି।

ଶ୍ରୀଶ୍ରୀପିତୃଦେବ—ଏ ମାଛ-ମାଂସ ଖାଏନା, ଏଟା କହିବା ଯଦି ଲୋକନିନ୍ଦା ହେଲା, ତେବେ ଗୋଟିଏ କଥା କହୁଛି ଶୁଣ। ସେତେବେଳେ ମୋର ବୟସ ଆଠ। ଜଣକ ଗାଁକୁ ଯାଇଛି। କାୟସ୍ଥ ଘର। ଗାଁଟିରେ ସତ୍‌ସଙ୍ଗୀ ଗୁରୁଭାଇ କମ୍। ମୁଁ ବ୍ରାହ୍ମଣଘରର ପିଲା, ନିରାମିଷ ଖାଏ ଦେଖି ସେମାନେ ଗୋଟିଏ ବ୍ରାହ୍ମଣଘରେ ମୋର ଖାଇବାର ବ୍ୟବସ୍ଥା କଲେ। ମୁଁ ନିରାମିଷ ଖାଏ ଶୁଣି ଘରର କର୍ତ୍ତ୍ରୀ କହିଲେ—ଏଢ଼େଟିକେ ପିଲା ମାଛ-ମାଂସ ଖାଏନା, ଦେହ ରହିବ କେମିତି ? ଘରଲୋକଙ୍କର କାଣ୍ଡଜ୍ଞାନ ନାହିଁ। ମୁଁ ସବୁ ଶୁଣିଗଲି। ଅଥଚ ଖାଇବାବେଳକୁ ଦେଖାଗଲା, ସେ ଘରର ପିଲାପିଲି ଖାଲି ଭାତ ଆଉ ମାଛ-ଝୋଳ ଖାଉଛନ୍ତି, ଆଉ ମୋ ପାଇଁ ଘିଅ, ଦୁଧ, କଦଳୀ କେତେ କ'ଣ ଜିନିଷ ! ଏତେସବୁ ଦେଇ ବି କହୁଛନ୍ତି—ବାବା, ଖାଲି ଭାତ କେମିତି ଖାଇବ !

ଶ୍ରୀଶ୍ରୀପିତୃଦେବ ପୁନରାୟ କହିଲେ—ନିରାମିଷ ଖାଇଲେ ଲୋକେ ଶ୍ରଦ୍ଧା ହିଁ କରନ୍ତି। ଅସଲ କଥା ହେଲା ଲୋଭ। ଅଧିକାଂଶ ଲୋକ ଲୋଭରେ ପଡ଼ି ହିଁ ମାଛ-ମାଂସ ଖାଇଥା'ନ୍ତି। ତେଣୁ ଯେଉଁମାନେ ମାଛ-ମାଂସ ଖାଆନ୍ତି ସେମାନେ ନିରାମିଷାଶୀଙ୍କୁ ଶ୍ରଦ୍ଧାର ଦୃଷ୍ଟିରେ ହିଁ ଦେଖନ୍ତି।

ଲୋକନିନ୍ଦା ପ୍ରସଙ୍ଗରେ ସତୀଶ ଭାଇ ପୁନରାୟ କହିଲେ—ଜଣେ ହୁଏତ ଦୀକ୍ଷା ନେଇ ଠାକୁରଙ୍କ କାମ କରେ। ଲୋକେ କହନ୍ତି, ଲୋକଟାର ଘରଦ୍ୱାର ପ୍ରତି ମନ ନାହିଁ, ସବୁବେଳେ ଠାକୁର-ଠାକୁର କରେ, ବିଷୟ ସମ୍ପତ୍ତି କିଛି ଦେଖା-ଶୁଣା କରେନା। ସ୍ତ୍ରୀ-ପୁତ୍ର-ପରିବାର ପ୍ରତି ଏତେଟିକେ ମମତା ନାହିଁ—ଏହା ଏକ ଧରଣର ଲେକନିନ୍ଦା।

ଶ୍ରୀଶ୍ରୀପିତୃଦେବ—ଏଟା ଲୋକନିନ୍ଦା ହେଲା କିପରି ? ଏଟା ହେଲା ସୁଖ୍ୟାତି। କୌଣସି କିଛି ତାକୁ ଠାକୁରଙ୍କ କାମରୁ ଦୂରେଇ ରଖି ପାରେନା। ଷୋଳଅଣା ମନ ଦେଇ ସେ ଠାକୁରଙ୍କ କାମ କରୁଛି। ସେ ତ strongly (ଦୃଢ଼ଭାବରେ) ହିଁ କରୁଛି ; ପୁଣି ଯେ କହୁଛି ଘର-ସଂସାର ଦିଗରେ ମନ ନାହିଁ, ସବୁବେଳେ ଠାକୁର-ଠାକୁର କରେ ସେ ବି strongly କହୁଛି।

ଲୋକନିନ୍ଦାର ଯଥାଯଥ ଉଦାହରଣ ହେଉନି ଦେଖି ଶ୍ରୀଶ୍ରୀପିତୃଦେବ ନିଜେଇ କହିଲେ,—ଜଣେ ଲୋକ ଦୀକ୍ଷା ନେଇ ପ୍ରାୟ ଠାକୁରବାଡ଼ି ଆସେ। ତା'ଦେଖି ହୁଏତ ତାର

ଘରଲୋକେ କହିଲେ, ଠାକୁରବାଡ଼ି ଠାକୁରଙ୍କ ଟାଣରେ ଯାଉଛି ନା କଣ ? ସ୍ତ୍ରୀଲୋକଙ୍କ ଟାଣରେ ଯାଏ । ତା'ପରେ ସେ ଲୋକ ଘରକୁ ଫେରି ଦେଖିଲା କେହି କଥା କହୁ ନାହାନ୍ତି ତା ସାଙ୍ଗରେ ; ସେମାନଙ୍କ ଭାବ ବୁଝିପାରିଲା, ସେ ତ ଏସବୁ ଶୁଣି ଉଡ଼େଇଦେଲା, କିଛି ମନେ କଲାନି । ପୁଣି ଅନ୍ୟ ପ୍ରକାରର ବି ହୋଇପାରେ । ଏହି ଏକାକଥା ବାରମ୍ବାର ଶୁଣିବାକୁ ପଡୁଛି ଦେଖି ହୁଏତ ଠିକ୍ କଲା–ଆଉ ଯିବନି ଠାକୁରବାଡ଼ି । 'ଯେତେସବୁ ଟଙ୍କା ମାରିବାର ଫନ୍ଦି' ; 'ଯେତେସବୁ ନାରୀଘଟିତ ବ୍ୟାପାର',–ଲୋକେ ସାଧାରଣତଃ ଏସବୁ କହି ନିନ୍ଦା କରିଥାନ୍ତି । 'ଏତେ ଲୋକ ଦୀକ୍ଷା ନେଇଛନ୍ତି, ତୁମଭଳି ଥରକୁ ଥର କିଏ ଏତେ ଠାକୁରବାଡ଼ି ଯାଉଛି'–ସ୍ତ୍ରୀ ଲୋକେ ସାଧାରଣତଃ ଏ କଥା ହିଁ କହିଥାନ୍ତି ।

ମନୋରଞ୍ଜନ (ଚାଟାର୍ଜୀ) ଭାଇ–ଜଣେ ଭାଇ, ବନାରସରେ ଘର, ବର୍ଣ୍ଣରେ ବିପ୍ର । ଆନନ୍ଦବଜାରରେ ପଂକ୍ତିଭୋଜନ ଦେଖି କହିଲେ, ଆପଣମାନେ ତ ବର୍ଣ୍ଣାଶ୍ରମ ମାନନ୍ତିନି !

ଶ୍ରୀଶ୍ରୀପିତୃଦେବ–ଆପଣ ସେତେବେଳେ କଣ କହିଲେ ?

ମନୋରଞ୍ଜନ ଭାଇ–ମୁଁ କହିଲି, ପଂକ୍ତିଭୋଜନ ହେଲେ କଣ ବର୍ଣ୍ଣାଶ୍ରମ ମନା ହୁଏନା ?

ଶ୍ରୀଶ୍ରୀପିତୃଦେବ–ମୁଁ ହେଲେ କହିଥାନ୍ତି, ମହା-ପ୍ରସାଦରେ ଦୋଷ ଅଛି ନା କଣ ? ଜଗନ୍ନାଥକ୍ଷେତ୍ରର ନାମ ଶୁଣିଛନ୍ତି ତ ? –କେତେ ନିଷ୍ଠାବାନ୍ ସେଠାରେ ରୋଷେଇ କରନ୍ତି ; କିନ୍ତୁ ସେଠାରେ ବି ଛୁଆଁ-ଛୁଇଁର ବ୍ୟାପାର ନାହିଁ । ମହାପ୍ରସାଦ କ୍ଷେତ୍ରରେ ଏସବୁ ବିଧି-ନିଷେଧ ଚଳେନା ।

ସମୟ ପାର ହୋଇଯିବାରୁ ବାଣୀଟିର ଆଲୋଚନା ଏଠାରେ ହିଁ ବନ୍ଦ ହେଲା । ୭ଟା ବାଜିବାକୁ ମାତ୍ର ୧୫ ମିନିଟ ବାକି । 'ତପୋବିଧାୟନା'-ଗ୍ରନ୍ଥର ପାଠ ଆରମ୍ଭ ହେଲା–

"ଅନୁଭବ କର ସବୁ-କିଛିକୁ
କିନ୍ତୁ ଅଭିଭୂତ ହେବାକୁ ଯାଅନା–
ଏକ ଆଦର୍ଶ ବା ଇଷ୍ଟ ଛଡ଼ା ।" (୨୮)

ଶ୍ରୀଶ୍ରୀପିତୃଦେବ ସତୀଶ ଭାଇଙ୍କୁ କହିଲେ–ସତ୍ୟାନୁସରଣରେ ବି ଏଇ କଥା ଅଛି । ଆଲୋଚନା କର ।

ସତୀଶ ଭାଇ–ଜଣେ ଲୋକର ଦାନ୍ତରେ ଯନ୍ତ୍ରଣା ଦେଖିଲି । ତାର ବ୍ୟଥା ଅନୁଭବ କଲି । ବର୍ତ୍ତମାନ ଯଦି ତାର କଷ୍ଟ ଅନୁଭବ କରି ଦୁଃଖରେ ଭାରାକ୍ରାନ୍ତ ହୋଇ କରଣୀୟ ଭୁଲିଯାଏ, ତା'ହେଲେ ହେଲା ଅଭିଭୂତ ହେବା ।

ଶ୍ରୀଶ୍ରୀପିତୃଦେବ–ଠାକୁରଙ୍କ ବେଳକୁ ଯଦି ସେ ରକମ ହୁଏ ? ଯେପରି, ଠାକୁରଙ୍କ ଦାନ୍ତରେ ଯନ୍ତ୍ରଣା ଦେଖି ତାଙ୍କର ଚିକିତ୍ସାର କୌଣସି ବ୍ୟବସ୍ଥା ନ କରି ନିଜେଇ ଯାଇ ଶୋଇପଡ଼ିଲି । ତା'ହେଲେ ତ ସାଂଘାତିକ ବ୍ୟାପାର ହେବ । ଏ ଉଦାହରଣ କଣ ଏ ବାଣୀ କ୍ଷେତ୍ରରେ ଖଟୁଛି ?

ଜନୈକ ଭାଇ–ନିଆଁ ଲାଗିଛି ଦେଖି ମୁଁ ଅଭିଭୂତ ନ ହୋଇ ଯା' କରଣୀୟ ତା କରିପାରେ, ପୁଣି ତା' ନ କରି ଯେତେବେଳେ କରଣୀୟ ଭୁଲି କିଂକର୍ତ୍ତବ୍ୟବିମୂଢ଼ ହୋଇପଡ଼େ

ସେତେବେଳେ ଅଭିଭୂତ ହୋଇପଡ଼ିଛି ବୋଲି ବୁଝିବାକୁ ହେବ।

ଉକ୍ତ ଭାଇଙ୍କ କଥା ଶୁଣି ଶ୍ରୀଶ୍ରୀପିତୃଦେବ କହିଲେ,—କିନ୍ତୁ ବାଣୀରେ ତ ଈଶ୍ୱରପ୍ରେମରେ ଅଭିଭୂତ ହେବାର କଥା ହିଁ ଅଛି। ଯଦି ଇଷ୍ଟଙ୍କ ଘରେ ନିଆଁ ଲାଗିଯାଏ ଏବଂ ସେଥିରେ ଅଭିଭୂତ ହୋଇପଡ଼େ, ତା'ହେଲେ ତ ବେଶ୍ ବିପଦ!

ଶ୍ରୀଶ୍ରୀପିତୃଦେବ ବିଛଣା ଉପରେ ରଖାଥିବା ଅଭିଧାନ ଖୋଲି 'ଅଭିଭୂତ' ଶବ୍ଦଟିର ଅର୍ଥ ପଢ଼ିଲେ—'ପରାଭୂତ', ଆବୃତ୍ତ ଇତ୍ୟାଦି। ପୁନରାୟ କହିଲେ—ତୁମର ସଦ୍‌ଗୁଣ ଦେଖିଲି, ସଦ୍‌ଭାବ ଅନୁଭବ ବି କଲି, ତୁମଠାରେ ତନ୍ମୟ ହୋଇଗଲି। ତୁମର ଭଲ ଗୁଣ ଅଛି ଖରାପ ଗୁଣ ବି ଅଛି। ତୁମେ ଟଙ୍କା ନେଇ ଆସ, ଆଉ ତା ଦେଇ ଲୋକଙ୍କୁ ଖୁଆଅ ଦେଖି ତୁମପ୍ରତି ଆକୃଷ୍ଟ ହେଲି, ଅଭିଭୂତ ହେଲି; ଶେଷରେ ତୁମଭଳି ହିଁ ହୋଇଗଲି। ଫଳରେ ତୁମର ମନ୍ଦଗୁଣଗୁଡ଼ିକ ମଧ୍ୟ ମୋତେ ଅଧିକାର କରିବସିଲା। କିନ୍ତୁ ଇଷ୍ଟ ବା ଈଶ୍ୱରଙ୍କଠାରେ ଅଭିଭୂତ ହେଲି ମାନେ ତାଙ୍କର ସଦ୍‌ଗୁଣରେ ଆକୃଷ୍ଟ ହେଲି। ବାଣୀରେ ଇଷ୍ଟଙ୍କଠାରେ ଅଭିଭୂତ ହେବାର କଥା ରହିଛି, ସେ ହେଲେ ଗୁଣାତୀତ। ଅନ୍ୟକ୍ଷେତ୍ରରେ ଅଭିଭୂତ ହେଲେ କିପରି ହୁଏ ଦେଖ। ଧର, ଜଣେ ଲୋକ ଦେଶସେବକ ବୋଲି ପରିଚିତ। ସମସ୍ତେ ଦେଖିଲେ ସ୍କୁଲ କରି ଦେଉଛି, କଲେଜ କରି ଦେଉଛି। ଦେଶର ଲୋକେ ଏସବୁ ଦେଖି ଅଭିଭୂତ ହୋଇପଡ଼ିଲେ। କେତେ ଲୋକ ତା ହାତରେ ଟଙ୍କାପଇସା ଦେବାକୁ ଲାଗିଲେ, କେତେ ଲୋକ ତା ଲାଗି ପ୍ରାଣପର୍ଯ୍ୟନ୍ତ ବି ଦେଲେ। ହଠାତ୍ ଦିନେ ଦେଖାଗଲା ଉକ୍ତ 'ଦେଶସେବକ'କୁ ପୁଲିସ ଧରି ନେଇଗଲା। ପରେ ବୁଝାଗଲା 'ଫରେନ୍ ମନି' 'ବ୍ଲାକ୍ ମନି' ନେଇ ସେସବୁ କରୁଥିଲା। କିନ୍ତୁ ଶ୍ରଦ୍ଧା ସମସ୍ତଙ୍କୁ କରିବା ଉଚିତ—ତାର ସଦ୍‌ଗୁଣ ଲାଗି। ଏସବୁ ଲୋକଙ୍କୁ ଶ୍ରଦ୍ଧା କରିବି, ତାଙ୍କ ଗୁଣାବଳୀ ଆଲୋଚନା କରିବି। ଯେମିତି ନନୀଦା ଭଲ କୀର୍ତ୍ତନ କରନ୍ତି, ଗୁରୁକିଙ୍କର ଭଲ ହାତ ଦେଖେ; ତେବେ ଅଭିଭୂତ ହେଲେ ଚଳିବ ନି। ଅଭିଭୂତ ହେବାକୁ ହୁଏ କେବଳମାତ୍ର ଆଦର୍ଶ ବା ଇଷ୍ଟଙ୍କଠାରେ।

ପାଠ ଶେଷରେ ପୂଜ୍ୟପାଦ ବଡ଼ଦା ଆସି ବସିଲେ। ହାତରେ ଟେପ୍ ରେକର୍ଡ଼, ସମୟ ୭ଟା ୧୨ ମିନିଟ। ଶ୍ରୀଶ୍ରୀଠାକୁରଙ୍କ ଶ୍ରୀମୁଖର କିଛି ବାଣୀ ସେଥିରେ ଧରାଅଛି। ବାଣୀ ଶୁଣାଇବାଲାଗି ସେ ମାଇକ୍ର ମାଉଥପିସ୍‌ର ସାମ୍ନାରେ ଟେପ୍-ରେକର୍ଡଟିକୁ ରଖିଲେ। ଚାଳଘରେ ଦୁଇ-ଚାରି ଜଣ ଯେ ଥିଲେ, ସେମାନେ ବି ଦୌଡ଼ି ଆସିଲେ। ଗଭୀର ଆଗ୍ରହରେ ସମସ୍ତେ ଶ୍ରୀଶ୍ରୀଠାକୁରଙ୍କ କଣ୍ଠସ୍ୱର ଶୁଣିବାକୁ ଲାଗିଲେ। ପରିବେଶ ନିସ୍ତବ୍ଧ, ନୀରବ।

## ଶନିବାର, ପହିଲା-କାର୍ତ୍ତିକ ବଂ-୧୩୮୨ ସାଲ, (ଇଂ ୧୮/୧୦/୭୫)

ଗତ ଆଶ୍ୱିନ-୨୯, ଇଂରାଜୀ ଅକ୍ଟୋବର ୧୬ ତାରିଖଠାରୁ ପରମପ୍ରେମମୟ ଶ୍ରୀଶ୍ରୀଠାକୁର ଅନୁକୂଳଚନ୍ଦ୍ରଙ୍କର ଶୁଭ ୮୮ତମ ଜନ୍ମ-ମହୋତ୍ସବ ଏବଂ ତତ୍‌ସହ ସତ୍‌ସଙ୍ଗର ସର୍ବ-ଭାରତୀୟ ୧୫୦ତମ ଋତ୍ୱିକ୍ ସମ୍ମେଳନ, ଶ୍ରୀଶ୍ରୀଠାକୁରଙ୍କ ପୁଣ୍ୟଲୀଳାଭୂମି ଦେଓଘର

ସତ୍‌ସଙ୍ଗ ଆଶ୍ରମରେ ଆରମ୍ଭ ହୋଇଛି। ଆଜି ଉତ୍ସବର ତୃତୀୟ ଓ ଶେଷ ଦିନ। ଏହି ଉତ୍ସବ ଉପଲକ୍ଷେ ପଶ୍ଚିମବଙ୍ଗ, ବିହାର, ଆସାମ, ଓଡ଼ିଶା, ଉତ୍ତରପ୍ରଦେଶ, ମଧ୍ୟପ୍ରଦେଶ ସହ ଭାରତର ବିଭିନ୍ନ ପ୍ରାନ୍ତରୁ ଦୁଇଲକ୍ଷାଧିକ ନରନାରୀଙ୍କର ସମାବେଶ ହୋଇଛି। ଠାକୁର-ବଙ୍ଗଳା, ଶ୍ରୀଶ୍ରୀପିତୃଦେବଙ୍କ ଆବାସ ଗୃହ, ମନୋମୋହିନୀ ଧାମ, ଉତ୍ସବ ପ୍ୟାଣ୍ଡେଲ ସହ ଅନ୍ୟାନ୍ୟ ପ୍ୟାଣ୍ଡେଲ, ତପୋବନ ବିଦ୍ୟାଳୟ, ଅଶୋକ ଆଶ୍ରମ, ନିଉବିଲଡିଂ, ଫିଲାନ୍ଥ୍ରପି ଅଫିସ୍‌ର ବାରଣ୍ଡା, ହସ୍‌ପିସ୍ ଘର ଓ ବାରଣ୍ଡା ସର୍ବତ୍ର କେବଳ ଲୋକ ଆଉ ଲୋକ। କେଉଁଠି ଏତେଟିକେ ବି ଖାଲି ସ୍ଥାନ ନାହିଁ।

ସାନ୍ଧ୍ୟା ପ୍ରାର୍ଥନା ସମାପନାନ୍ତେ ଅଗଣିତ ଭକ୍ତମଣ୍ଡଳୀଙ୍କ ମଝିରେ ବଡ଼ ନାଟମଣ୍ଡପରେ ତାଙ୍କର ନିର୍ଦ୍ଦିଷ୍ଟ ଆସନରେ ଶ୍ରୀଶ୍ରୀପିତୃଦେବ ଉପବେଶନ କଲେ। ଆଜି ତାଙ୍କ ସାନ୍ନିଧ୍ୟରେ କର୍ମୀସମ୍ମେଳନ ଅପରାହ୍ନରେ ହେବାର କଥା ଥିଲା। କିନ୍ତୁ ତାଙ୍କର ଦେହ ଭଲ ନ ଥିବାରୁ ସାନ୍ଧ୍ୟ-ପ୍ରାର୍ଥନା ପରେ ହେବ ବୋଲି ସ୍ଥିର କରାହୁଏ। କର୍ମୀବୃନ୍ଦ ସକଳେ ଉଦ୍‌ଗ୍ରୀବ—ଶ୍ରୀଶ୍ରୀପିତୃଦେବଙ୍କ ମୁହଁରେ ଇଷ୍ଟ-ପ୍ରାସଙ୍ଗରେ କିଛି ଶୁଣିବାର ଆଗ୍ରହରେ। ମା' ଓ ଭଉଣୀମାନେ ବି ନାଟମଣ୍ଡପ ସୀମା ପାରହୋଇ ଉନ୍ମୁକ୍ତ ପ୍ରାଙ୍ଗଣରେ ବସିଛନ୍ତି ସ୍ଥାନାଭାବରୁ।

ଚକ୍ରତୀର୍ଥ ପ୍ରସଙ୍ଗରେ କଥା ଉଠିଲା। ଶ୍ରୀଶ୍ରୀପିତୃଦେବ କହିଲେ—ପଶ୍ଚିମବଙ୍ଗର ଏହି ସ୍ଥାନଟିରେ ଭାବସମାଧି ହୋଇଥିଲା ଶ୍ରୀଶ୍ରୀଠାକୁରଙ୍କର। ପଶ୍ଚିମବଙ୍ଗରେ ଆଉ କୌଣସି ସ୍ଥାନରେ ହୋଇଥିଲା ବୋଲି ଜଣା ନାହିଁ। ଆଉ, ବିରାଜ ଭଟ୍ଟାଚାର୍ଯ୍ୟଙ୍କ ଘରେ ବି ଶ୍ରୀଶ୍ରୀଠାକୁର କିଛିଦିନ ଥିଲେ; ଠାକୁରଙ୍କ ମା' ସାଙ୍ଗରେ ଥିଲେ, ପିସିମା ଆଉ ମୁଁ ଥିଲୁ। ଆଉ ଥିଲେ କୀର୍ତ୍ତନଦଳ। ଅନେକ ଦିନ ଚେଷ୍ଟା କରିବା ପରେ, ଯେଉଁଠି ଭାବସମାଧି ହୋଇଥିଲା ସେ ସ୍ଥାନଟି detect କରାଯାଇଛି। ସେ ଜାଗାଟି ଯେଭଳି ନିଆହୁଏ, ମନ୍ଦିର ହୁଏ, ସେଥିଲାଗି ସମସ୍ତଙ୍କୁ ତତ୍ପର ହୋଇ ଉଠିବାକୁ ହେବ।

ଶ୍ରୀକଣ୍ଠ ଭାଇ (ମାଇତି)—ଡିସେମ୍ବର ଭିତରେ ଘରଟା ନେବାକୁ ପଡ଼ିବ। ଆପଣ ଯଦି ଦୟାକରି ଟିକେ କହିଦିଅନ୍ତେ।

ଶ୍ରୀଶ୍ରୀପିତୃଦେବ—ଶୁଣ୍, ମୋର କହି ଲାଭ ନାହିଁ, ଅସଲ କଥା ସବୁସମୟରେ ଇଷ୍ଟଙ୍କ ସାଙ୍ଗରେ ଯୁକ୍ତ ରହିବା। ଯୁକ୍ତ ରହିହୁଏ କିପରି? ଯୁକ୍ତ ରହିହୁଏ—ସେଇ ଯଜନ, ଯାଜନ, ଇଷ୍ଟଭୃତିପରାୟଣ ହୋଇ ଚାଲିଲେ। ସବୁ ସମୟରେ ଇଷ୍ଟସ୍ୱାର୍ଥ-ପ୍ରତିଷ୍ଠାପରାୟଣ ହୋଇ ଚାଲିବାକୁ ହୁଏ। ଏଇଟା ହିଁ ହେଉଛି ଯୋଗସୂତ୍ର। ଆଉ ନିଜର credit (ବାହାଦୁରୀ) ଦେଖାଇବାକୁ ନ ଯାଇ ଯହିଁରେ ଇଷ୍ଟସ୍ୱାର୍ଥ ପ୍ରତିଷ୍ଠା ହୁଏ, ସେଦିଗରେ ନଜର ରଖିବାକୁ ପଡ଼େ। କରିବାର ଏଇଟା ହିଁ ପଥ। ହେବାର ବି ଏଇଟା ହିଁ ପଥ। କଥା ବୁଝିଲୁ ତ? ତା' ଛଡ଼ା ହୁଏ ନା। ସେ ମୁଁ କହେ ବା ତୁ କହ। ନିଜେ ଯେତେକ୍ଷଣ ତାଙ୍କ ସହିତ ଯୁକ୍ତ ଥିବି, ଠିକ୍ କାମ ହେବ। ସେତେବେଳେ ସେ-ହିଁ ପଥ କରି ଦିଅନ୍ତି। ହେବ ହିଁ ହେବ? ସେଥିପାଇଁ ଚକ୍ରତୀର୍ଥର ସେଠି ମନ୍ଦିର ଯେଭଳି ହୁଏ, ଆଉ ମଜିଲପୁରର ଘରଟା ଯେପରି ଶୀଘ୍ର ଶୀଘ୍ର ହୁଏ—କରି ପକାଇବା ଦରକାର।



ଇଷ୍ଟ-ପ୍ରସଙ୍ଗେ ଶ୍ରୀଶ୍ରୀପିତୃଦେବ

ଟିକିଏ ରହି ଶ୍ରୀଶ୍ରୀପିତୃଦେବ କହିଲେ—ଆଉ ସେଇ ଦିଲ୍ଲୀ। ଦିଲ୍ଲୀ ହେଉଛି ମହାନଗରୀ, ଭାରତବର୍ଷର ରାଜଧାନୀ। ସବୁପ୍ରଦେଶର ଲୋକ, ପୃଥିବୀର ସମସ୍ତ ଦେଶର ଲୋକ ସେଠାକୁ ଆସନ୍ତି। ସେଠାରେ ଶ୍ରୀମନ୍ଦିରର ଜମି ନିଆଯାଇଛି। ଭିତ୍ତିପ୍ରସ୍ତର ବି ସ୍ଥାପନ କରାହୋଇ ଯାଇଛି। ସେଠାରେ ମନ୍ଦିରଟା ଯଥାଶୀଘ୍ର ଶେଷ କରିବା ଦରକାର।

ଶ୍ରଦ୍ଧେୟ ନନୀଦା (ନନୀଗୋପାଳ ଚକ୍ରବର୍ତ୍ତୀ) ଶ୍ରୀଶ୍ରୀପିତୃଦେବଙ୍କର କଥାଗୁଡ଼ିକୁ ପୁନରାୟ କର୍ମୀମାନଙ୍କ ଆଗରେ ମାଇକ୍ ଯୋଗେ କହିଦେଲେ।

ନନୀଦା କହିଲେ—ଶ୍ରୀଶ୍ରୀବଡ଼ଦାଙ୍କ ଇଚ୍ଛା ଦିଲ୍ଲୀରେ ଶୀଘ୍ର ଶ୍ରୀମନ୍ଦିର ହେଉ। ଦିଲ୍ଲୀ ଭାରତବର୍ଷର ରାଜଧାନୀ, କେବଳ ତାହା ହିଁ ନୁହେଁ, ଇଣ୍ଟରନ୍ୟାଶନାଲ ପ୍ଲେସ ମଧ୍ୟ। ସେଠାରେ ଦେଶ-ବିଦେଶର ବହୁ ଲୋକଙ୍କର ସମାଗମ ହୋଇଥାଏ। ଶ୍ରୀମନ୍ଦିର ସେଠାରେ ଯେପରି ଶୀଘ୍ର କରାଯାଏ ସେ-ବିଷୟରେ ପ୍ରତ୍ୟେକଙ୍କୁ ତତ୍ପର ହେବାକୁ ହେବ। (ସେଠାକାର ସ୍ଥାନୀୟ ଗୁରୁଭାଇମାନଙ୍କ ଅନୁରୋଧରେ ଏଥର ଶ୍ରୀଶ୍ରୀପିତୃଦେବ ଅକ୍ଟୋବର ୪ ତାରିଖରେ ଦିଲ୍ଲୀର ଶ୍ରୀମନ୍ଦିରର ଭିତ୍ତି-ପ୍ରସ୍ତର ସ୍ଥାପନ କରି ଆସିଛନ୍ତି)।

ଶ୍ରୀଶ୍ରୀପିତୃଦେବ ଏହା ପରେ କହିଲେ--ଗୌହାଟି ମନ୍ଦିର ସଂଲଗ୍ନ ଯେଉଁ ଜମି ଅଛି ତାହା ବି କିଣିବା ପ୍ରୟୋଜନ। ତା ନ ହେଲେ ତାହା ଯଦି ବେହାତ ହୋଇଯାଏ ତେବେ ଭବିଷ୍ୟତ୍‌ରେ ଅସୁବିଧା ହେବ! କରିବା ହିଁ ପାଇବାର ଜନନୀ।' ଆସାମର ଗୁରୁଭାଇମାନେ ଏଠାରେ ଆସାମ-ପ୍ୟାଟାର୍ଣ୍ଣର ଘର କରିବା ପାଇଁ ଗୋଟିଏ ୱାଗନ କାଠ ପଠାଇଛନ୍ତି। ଆହୁରି କାଠ ପରେ ପଠାଇବେ। ଭଡ଼ା ଇତ୍ୟାଦି ସମସ୍ତ ସେମାନେ ହିଁ ବହନ କରିବେ। ପଇସାପତ୍ର, ଯାବତୀୟ ଖର୍ଚ୍ଚ-ଇତ୍ୟାଦି ମଧ୍ୟ ସେମାନେ କରିବେ ; ଏବଂ ପୁରୁଲିୟାରେ ମଧ୍ୟ ଗୋଟିଏ ବାଡ଼ି ପ୍ରାୟ ଠିକ୍ ହୋଇଯାଇଛି। ସେଟା ବି ଯେପରି ଶୀଘ୍ର ହୁଏ, ସବୁ ଗୁରୁଭାଇମାନଙ୍କୁ ସେ ଦିଗରେ ମଧ୍ୟ ନଜର ଦେବାକୁ ହେବ।

ଆମେ ଭାବୁ,—ଏଟା ହେଉଛି, ସେ-ଟା ହେଉଛି—କେଉଁଟା କରିବି ? କିନ୍ତୁ ତା' ନୁହେଁ। ଇଷ୍ଟସ୍ୱାର୍ଥପ୍ରତିଷ୍ଠା ପାଇଁ ଯେତେ ଚାପ ହିଁ ଆସୁ ନା କାହିଁକି ସେଥିପାଇଁ ପଶ୍ଚାତ୍‌ପଦ ହେବି ନାହିଁ—ଶ୍ରୀଶ୍ରୀଠାକୁରଙ୍କଠାରୁ ଏହି ଶିକ୍ଷା ହିଁ ପାଇଛି। ଆହୁରି ଆଗେଇ ଯାଅ। ଆତ୍ମକେନ୍ଦ୍ରିକତା ସୁଯୋଗଇ ପାଇବନି। କେବଳ ଇଷ୍ଟସ୍ୱାର୍ଥର ଚାପରେ ହିଁ ମନ ଠିକ୍ ରହିବ।

କେତେଥର କେତେ ବନ୍ୟା ହୋଇଛି ? ଅମୁକ ହୋଇଛି, ତମୁକ ହୋଇଛି, ଲୋକେ କହନ୍ତି—ଉତ୍ସବ ହେବନି। ଏଥର ତ emergency (ଜରୁରୀ ଅବସ୍ଥା), flood (ବନ୍ୟା)। ସମସ୍ତେ ଭାବିଲେ ଉତ୍ସବ ହେବ ନାହିଁ। ବିହାରରେ flood, ଓଡ଼ିଶାରେ flood, ପଶ୍ଚିମବଙ୍ଗରେ flood, ଆସାମରେ flood ; ତେବେ ବି ଏଥର ଯେତେ ଲୋକ ହୋଇଛନ୍ତି ଜୀବନରେ କେବେ ଦେଖିନି। Record ପାର ହୋଇଛି। ଠାକୁରଙ୍କର ଏପରି ମହିମା, ଏହିପରି ଦୟା ! ଆଉ, ଏପରି ଆନନ୍ଦ ଯେ ପୃଥିବୀରେ ମଣିଷ ଉପଭୋଗ କରିପାରେ—ଏହି ଯୁଗରେ, ତାହା ଧାରଣା କରାଯାଏନା। କି କରୁଣା, କି ଦୟା !! ତାଙ୍କ ଦୟାର ଶେଷ ଅଛି ନା-କ'ଣ ?

ଶ୍ରୀଶ୍ରୀପିତୃଦେବଙ୍କ ଶ୍ରୀମୁଖମଣ୍ଡଳ ଇଷ୍ଟରାଗଦୀପନାରେ ଉଦ୍ଭାସିତ। ପ୍ରେରଣାଦୀପ୍ତ

କଣରେ ପୁଣି କହିଲେ—ଯୁକ୍ତ କିନ୍ତୁ ରହିବାକୁ ହୁଏ 'ତାଙ୍କ' ସହିତ ; ଯଜନ, ଯାଜନ, ଇଷ୍ଟଭୃତିପରାୟଣ ହୋଇ ଚଳିବାକୁ ହୁଏ। ଏଇଟାଇ ଯୋଗାଯୋଗ ସୂତ୍ର। ସେ ଯେପରି-ଯେପରି କହିଛନ୍ତି ଠିକ୍ ସେଇ ପ୍ରକାରରେ କରିବାକୁ ହେବ। ଯେପରିଭାବେ କରିବାଟା ଚାହାନ୍ତି ଠିକ୍ ସେଇ ପ୍ରକାରରେ କରିବାକୁ ହେବ। ତା' ହେଲେ ସୂତ୍ର କେବେହେଲେ ଛିନ୍ନ ହୁଏ ନା, କର୍ମଶକ୍ତି କେବେହେଲେ କ୍ଷୁଣ୍ଣ ହୁଏ ନା।

ଶ୍ରୀଶ୍ରୀପିତୃଦେବଙ୍କ କଥାଗୁଡ଼ିକ ନନୀଦା ପୁଣି ମାଇକ୍ ଯୋଗେ ସମସ୍ତଙ୍କୁ କହିଦେଲେ।

ଶ୍ରୀଶ୍ରୀପିତୃଦେବ ପୁଣି କହିବାକୁ ଲାଗିଲେ—ଆମ୍ଭେମାନେ ମିରାକଲ୍-ମିରାକଲ୍ କହୁ। ଏଇତ ଏକ୍ଷଣି ସ୍ୱଚକ୍ଷୁରେ ମିରାକଲ୍ ଦେଖୁଛି। ହଜାର-ହଜାର ମା, ହଜାର-ହଜାର ଭାଇ, ଦଳ-ଦଳ ପିଲା-ଛୁଆ ଅଥଚ କି ଶାନ୍ତ, ସୁନ୍ଦର ପରିବେଶ। ସମସ୍ତେ ହିଁ ଆନନ୍ଦରେ ଅଛନ୍ତି।

ଉତ୍ସବ ସମୟରେ ଆନନ୍ଦବଜାରର ଭିଡ଼ ସମ୍ବନ୍ଧରେ ନନୀଦା କଥା ଉଠାଇଲେ।

ଶ୍ରୀଶ୍ରୀପିତୃଦେବ—ଉତ୍ସବ ସମୟରେ ବାହାରର ଲୋକ ବି ବହୁ ଆସନ୍ତି। ସେମାନଙ୍କ ଭିତରୁ ଅନେକେ ଅଧୈର୍ଯ୍ୟ ହୋଇ ଚାଲିଯାଆନ୍ତି ମଧ୍ୟ। କିନ୍ତୁ ଏମାନେ (ଗୁରୁଭାଇମାନେ) ସର୍ବାବସ୍ଥାରେ ଠିକ୍ ଥାଆନ୍ତି। ଏମାନଙ୍କର ଧୈର୍ଯ୍ୟର ତୁଳନା ହୁଏନା।

କିଛିସମୟ ଚୁପ୍‌ଚାପ୍ ରହିବା ପରେ ଶ୍ରୀଶ୍ରୀପିତୃଦେବ ପୁଣି କହିଲେ,—ତା'ହେଲେ କଥା ହେଉଛି ଚକ୍ରତୀର୍ଥ, ମଜିଲପୁରର ବାଡ଼ି, ଦିଲ୍ଲୀର ଶ୍ରୀମନ୍ଦିର, ପୁରୀର ଠାକୁରବାଡ଼ି, ଗୌହାଟିର ଜମି, ଦୁମକାର ବାଡ଼ି—ଯେଉଁଟା ଶ୍ରୀଶ୍ରୀଠାକୁର ରଖିବାକୁ କହିଥିଲେ—ଇତ୍ୟାଦି ଯେତେ କାମ ହିଁ ଥାଉ, ଆମେ କେଉଁଟାରେ ବି ପଶ୍ଚାତ୍‌ପଦ ହେବୁ ନାହିଁ।

ନନୀଦା—ଇଷ୍ଟଭୃତି ସଙ୍ଗରେ ଆମେ ସମସ୍ତେ ଯଦି ଏଇସବୁ ବିଭିନ୍ନ ବାବଦରେ କିଛି-କିଛି ଅର୍ଘ୍ୟାଦି ପଠାଉଁ ତା ହେଲେ ହିଁ ହୋଇଯାଏ।

ଶ୍ରୀଶ୍ରୀପିତୃଦେବ—ଏତେ ସବୁ କାମ ହେଉଛି, ଏତେ ମନ୍ଦିର ହେଉଛି ଏଇଭାବେ ତ ହୁଏ। ...ତାଙ୍କ ସହିତ ସବୁ ସମୟରେ ଯୁକ୍ତ ରହିବାକୁ ହୁଏ। କାମ ହେବ ହିଁ ହେବ। ନୂଆ ନୂଆ କେନ୍ଦ୍ର କରିବା ଦରକାର। ଦୀକ୍ଷିତଙ୍କ ସଂଖ୍ୟା ବି ବଢ଼ାଇବାକୁ ହୁଏ। ଆଉ, ଇଷ୍ଟକେନ୍ଦ୍ରିକ ହୋଇ ଚଳିବାକୁ ହୁଏ। ଶ୍ରୀମନ୍ଦିର, କେନ୍ଦ୍ର ଯେଉଁଗୁଡ଼ିକ ହୋଇଛି, ସେଗୁଡ଼ିକ maintain (ରକ୍ଷା) କରି ଚାଲିବାକୁ ହୁଏ। ଆଉ ଠାକୁରଙ୍କ ସହିତ ଯୋଗସୂତ୍ର ଠିକ୍ ରଖିବାକୁ ହୁଏ। ଯୁକ୍ତ ରହିବାକୁ ହୁଏ। ଇଷ୍ଟଙ୍କଠାରେ ଯୁକ୍ତ ରହିବାର formula (ବିଧି) ତ କୁହାଅଛି— ଯଜନ, ଯାଜନ, ଇଷ୍ଟଭୃତିପରାୟଣ ହୋଇ ଚଳିବା। ଯୋଗଯୁକ୍ତ ମାନେ ମୋ ଖିଆଲ ଅନୁଯାୟୀ ନୁହେଁ, ତାଙ୍କ ପସନ୍ଦ ଅନୁଯାୟୀ ; ସେ ଯେପରି କହିଛନ୍ତି ଠିକ୍ ସେହିପରି ଭାବରେ ଚାଲିବା। ଏପରି କି ଇଷ୍ଟଭୃତି ବି ନିଜର ଖିଆଲମତ ନୁହେଁ। ଯଜନ-ଯାଜନ, ସାଧନ-ଭଜନ, ନାମ-ଧ୍ୟାନ ସବୁ ତାଙ୍କ ନିର୍ଦ୍ଦେଶମତ କରିବାକୁ ହୁଏ। ତା ନ ହେଲେ ମୋର ବୃତ୍ତି-ପ୍ରବୃତ୍ତିଗୁଡ଼ିକ adjusted (ନିୟନ୍ତ୍ରିତ) ହେବନି। ସେ ଯେପରି ଚାହାନ୍ତି ସେପରି ବି ହୋଇ ପାରିବୁନି, କି ଅପରକୁ ବି କରିପାରିବୁନି।

ଟିକିଏ ରହି ପୁଣି କହିଲେ—କାହାର ଯଦି କୌଣସି କଥା ଥାଏ, ସକାଳ-ସନ୍ଧ୍ୟାରେ ମୁଁ ତ ବସେ, ସେତେବେଳେ କହିପାରେ। କର୍ମୀ ବୈଠକ ତ ସବୁ ସମୟରେ ହିଁ ହେଉଛି। କାହାରି କୌଣସି ପ୍ରଶ୍ନ ଅଛି ବୋଲି ତ ମନେ ହୁଏନା। ଏବେ କେବଳ କର୍ମ। ଠାକୁର ତ ସବୁ ପ୍ରଶ୍ନ ନିଃଶେଷ କରି ଦେଇ ଯାଇଛନ୍ତି। ସେ ଯେଉଁଥିରେ ଖୁସି ହୁଅନ୍ତି—ତାହା ହିଁ କରିବା, ତାଙ୍କଠାରେ କର୍ମନିରତ ରହିବା ହିଁ ଇହକାଳ, ପରକାଳ, ସବୁକାଳରଇ କର୍ମ।

ଟିକିଏ ରହି ପୁନର୍ବାର କହିବାକୁ ଲାଗିଲେ,—ଏଗୁଡ଼ିକ ତ କିଛିଇ ନୁହେଁ—ଏଇ ଶ୍ରୀମନ୍ଦିର କରିବା, ଅଧିବେଶନ-କେନ୍ଦ୍ର କରିବା—ଏଗୁଡ଼ିକ superficial ଜିନିଷ। ଅସଲ କଥା, ନିଜ ଭିତରେ ମନ୍ଦିର ସ୍ଥାପନ କରିବାକୁ ହେବ। ତାଙ୍କ ସହିତ ଯୋଗସୂତ୍ର ସ୍ଥାପନ କରିବାକୁ ହେବ। ଆଉ, ତାହାର ପଥ ହିଁ ହେଉଛି—ଯଜନ, ଯାଜନ, ଇଷ୍ଟଭୃତି, ଇଷ୍ଟାର୍ଥପରାୟଣ ହୋଇ ଚାଲିବା। ଭିତରର ମନ୍ଦିର ଠିକ୍ ରହିଲେ ବାହାରର କାମ ଆପେ ଆପେ ହୋଇଉଠିବ।

ମଦନ ଭାଇ (ଘୋଷ)—ଦଶକୋଟି ଦୀକ୍ଷା କିଭଳି ଭାବରେ ଦିଆହେବ ?

ଶ୍ରୀଶ୍ରୀପିତୃଦେବ—ଇଷ୍ଟଙ୍କଠାରେ ଯୋଗଯୁକ୍ତ ରହିଲେ ସବୁ ହିଁ ହୁଏ।

ଗୁରୁକିଙ୍କର ଭାଇ (ପାଣ୍ଡେ)—ଅଧିବେଶନ-କେନ୍ଦ୍ରରେ ଦେଶର ନେତା ଓ ଜ୍ଞାନୀ-ଗୁଣୀମାନଙ୍କର ଜନ୍ମଜୟନ୍ତୀ ପାଳନ କରାଯାଇ ପାରେ କି ନା ?

ଶ୍ରୀଶ୍ରୀପିତୃଦେବ—ଆମେ ଅଧିବେଶନ-କେନ୍ଦ୍ର କରୁ ଠାକୁରଙ୍କ ପାଇଁ। ଯଦି ପାଖରେ କେଉଁଠି ପାଠାଗାର ବା ପବ୍ଲିକ୍ ହଲ ଥାଏ ସେଠାରେ ସେସବୁ କରିପାରିବା। କିନ୍ତୁ ଅଧିବେଶନ-କେନ୍ଦ୍ରରେ ଇଷ୍ଟଙ୍କୁ ହିଁ ମୁଖ୍ୟ କରି ରଖିବାକୁ ହୁଏ। ସବୁ ଚିନ୍ତାକୁ ହିଁ ଇଷ୍ଟ-କେନ୍ଦ୍ରିକ କରି ରଖିବାକୁ ହୁଏ। ତା'ହେଲେ solution (ସମାଧାନ) ନିଜେ-ନିଜେ ଆସେ। ଆଉ, ଭଲପାଇବା ବଢ଼ାଇବାକୁ ହୁଏ। ତେବେ ସେ ଭଲପାଇବାର ଅଧିକାରୀ ହୋଇପାରେ। ସେତେବେଳେ ସକଳେ ହିଁ ତା'ପ୍ରତି ଆକୃଷ୍ଟ ହୁଅନ୍ତି। ଏପରି-କି ଜୀବଜଗତ, ଇତର ପ୍ରାଣୀମାନେ ମଧ୍ୟ ତାଙ୍କ ପ୍ରତି ଆକୃଷ୍ଟ ହୁଅନ୍ତି। ଏହା ନ ହେଲେ ଆମମାନଙ୍କର ଭଲପାଇବା ପ୍ରବୃତ୍ତିମୁଖୀ ହିଁ ହୁଏ।

ଟିକିଏ ରହି ପୁଣି କହିଲେ—ସଂପୂର୍ଣ୍ଣଭାବେ ଯଦି ତାଙ୍କର ହୁଏ, ଯଦି ପୂର୍ଣ୍ଣଭାବରେ ତାଙ୍କଠାରେ ଆତ୍ମସମର୍ପଣ କରିପାରେ, ତେବେ ଦଶକୋଟି ଦୀକ୍ଷାର ଯେ-କଥା ଠାକୁର କହିଛନ୍ତି—ତା' ଅଚିରେ ହିଁ ସମ୍ଭବ। ଏକାନ୍ତ ତାଙ୍କର ହେଲେ ଚରିତ୍ର ନିଜେ-ନିଜେ ହିଁ ହୁଏ। ଷୋଳଅଣା ସତ୍ତା ଦେଇ ଯଦି ତା'ଙ୍କର ନ ହୁଏ, ତାହେଲେ କିଛି ହିଁ ହେବନି, ନିଜର ଘର ବି ଠିକ୍ କରି ପାରିବିନି। ଚରିତ୍ର ନିଜେ-ନିଜେ ଗଠିତ ହେବ ଯଦି ସଂପୂର୍ଣ୍ଣଭାବେ ତାଙ୍କର ଏକାନ୍ତ ହୋଇହୁଏ, ତାଙ୍କର ଅନୁଶାସନବାଦ କଣ୍ଡାଏ-କଣ୍ଡାଏ ମାନି ଚଳାଯାଏ।

ଘଡ଼ିର କଣ୍ଟା ନିଃଶବ୍ଦରେ ଆଗେଇ ଚାଲିଛି। ରାତି ବଢ଼ିଛି। ଶ୍ରୀଶ୍ରୀପିତୃଦେବ ବିଛଣା ଉପରେ ଥିବା ହାତଘଡ଼ି ଆଡ଼କୁ ଚାହିଁ ଜିଜ୍ଞାସା କଲେ—ଏକ୍ଷଣି ତ ସାଧାରଣ ସଭା ?

ନନୀଦା—ଆଜ୍ଞା, ହଁ। ଉତ୍ସବ-ମଣ୍ଡପରେ ସଭା-କାର୍ଯ୍ୟ ଆରମ୍ଭ ହୋଇଛି।

ଶ୍ରୀଶ୍ରୀପିତୃଦେବ—ଆଜିକାର ସଭାରେ ବାହାରର କିଏ-କିଏ ଅଛନ୍ତି ?

ନନୀଦା—ଆଜିର ସାଧାରଣ-ସଭାରେ ସଭାପତି ହେଉଛନ୍ତି ବିହାର ବିଶ୍ୱବିଦ୍ୟାଳୟର ଭାଇସ୍-ଚାନ୍‌ସେଲାର କେ. କେ. ମଣ୍ଡଳ। ପ୍ରଧାନ ଅତିଥି—ଓଡ଼ିଶାର ଶିକ୍ଷମନ୍ତ୍ରୀ କାହ୍ନୁଚରଣ ଲେଙ୍କା (ଇଷ୍ଟଭ୍ରାତା)। ଏହାଛଡ଼ା ପ୍ରଖ୍ୟାତ ସାହିତ୍ୟିକ ସୁନୀଲ ଗଙ୍ଗୋପାଧ୍ୟାୟ ମଧ୍ୟ ଆସିଛନ୍ତି। ସେ ବିଶିଷ୍ଟ ଅତିଥିରୂପେ ଆଜିର ସଭାରେ ଭାଷଣ ଦେବେ।

ଶ୍ରୀଶ୍ରୀପିତୃଦେବ—ତା'ହେଲେ ଏବେ ଉଠାଯାଉ।

ଶ୍ରୀଶ୍ରୀପିତୃଦେବ ଉଠିବା ସାଥେ ସାଥେ କର୍ମୀଗଣ ଉତ୍ସବ-ମଣ୍ଡପ ଆଡ଼କୁ ଗଲେ—ଇଷ୍ଟଭାବୋଦ୍ଦୀପନାରେ ସମସ୍ତଙ୍କ ମନ-ପ୍ରାଣ ସ୍ୱର୍ଗୀୟ ସୁଷମାରେ ଭରପୁର।

## ସୋମବାର, ୩-କାର୍ତ୍ତିକ, ୧୩୮୨ (ଇଂ ୨୦/୧୦/୭୫)

ପ୍ରାତଃକାଳୀନ ବିନତି-ପ୍ରାର୍ଥନାର ପରେ ଶ୍ରୀଶ୍ରୀପିତୃଦେବ ବଡ଼ ନାଟମଣ୍ଡପରେ ଉପବେଶନ କରୁଛନ୍ତି। ଦାଦା, ମା ଓ ଭାଇ-ଭଉଣୀମାନେ ତାଙ୍କୁ ପ୍ରଣାମ କରି ବସୁଛନ୍ତି।

ବିଗତ ୮୮ତମ ଜନ୍ମମହୋତ୍ସବ ପରେ ଏବେ ବି ଅନେକେ ରହିଛନ୍ତି, କେହି-କେହି ଘରକୁ ଫେରିଯିବାର ଅନୁମତି ନେଉଛନ୍ତି, କେହି-କେହି ଜ୍ଞାତବ୍ୟ ବିଷୟ ବା ସମସ୍ୟାଦିର କଥା ନିବେଦନ କରୁଛନ୍ତି।

ଜନୈକ ଭାଇ ଏକ ନବଜାତକର ଊର୍ଦ୍ଧ୍ୱତନ ତିନି-ପୁରୁଷର ନାମ ଉଲ୍ଲେଖ କରି ସେହି ଜାତକର ନାମ ପ୍ରାର୍ଥନା କଲେ। ଶ୍ରୀଶ୍ରୀପିତୃଦେବ କ୍ଷଣିକ ଚିନ୍ତା କରି କହିଲେ—'ମହେଶ ପ୍ରସାଦ'। ତା'ପରେ ଲାଲ ଭାଇଙ୍କ ଆଡ଼କୁ ଚାହିଁ କହିଲେ—ମହେଶ ପ୍ରସାଦ ହୁଏ ତ ?

ଲାଲ ଭାଇ ମୁଣ୍ଡହଲାଇ କହିଲେ—ଆଜ୍ଞା, ଖୁବ୍ ଭଲ ନାମ ହୋଇଛି।

ଜଣେ ଭାଇ ପ୍ରି-ଇଉନିଭରସିଟି ପରୀକ୍ଷାରେ ଫେଲ ହୋଇଛନ୍ତି। ଫାଇନ ଆର୍ଟସରେ ଝୁଙ୍କ୍ ଅଛି, ଦରଖାସ୍ତ ବି ଦେଇଛନ୍ତି ଆର୍ଟସ କଲେଜରେ—ଏବେ କ'ଣ କରିବେ ଜାଣିବାକୁ ଚାହିଁଲେ।

ଶ୍ରୀଶ୍ରୀପିତୃଦେବ—ଆଗେ ପ୍ରି-ଇଉନିଭରସିଟି ପାଶ୍ କରି ଫାଇନ୍ ଆର୍ଟସରେ ଭର୍ତ୍ତି ହେବ।

ଉକ୍ତ ଭାଇ—ଯଦି ଫାଇନ୍-ଆର୍ଟସ ପଢ଼ିବା ସମୟରେ ପରୀକ୍ଷା ଦିଏ !

ଶ୍ରୀଶ୍ରୀପିତୃଦେବ—ତା ବି ହେବ। ତେବେ ଭଲଭାବରେ ପଢ଼ିବାକୁ ହେବ ପାଶ୍ କରିବା ପାଇଁ। Unsuccess (ଅସାଫଲ୍ୟ) ରଖିବା ଠିକ୍ ନୁହେଁ। ଠାକୁର ପସନ୍ଦ କରନ୍ତିନି। ଆଉ ଆମେ ଯାହା କରୁ ସବୁତ ତାଙ୍କୁ ଖୁସି କରିବା ପାଇଁ। ନିଷ୍ଠା ଦେଇ ସବୁ କାମ କରିବାକୁ ହୁଏ। ସାଫଲ୍ୟଲାଭ ବି ସେଥିରେ ହିଁ ହୋଇଥାଏ।

୬ଟା ୨୫ ମିନିଟ୍‌ରେ ସତ୍ୟାନୁସରଣ ପାଠ ଆରମ୍ଭ ହେଲା—

'ନାମ ମଣିଷକୁ ତୀକ୍ଷ୍ଣ କରେ, ଆଉ ଧ୍ୟାନ ମଣିଷକୁ ସ୍ଥିର ଓ ଗ୍ରହଣକ୍ଷମ କରେ।''

ବିଭିନ୍ନ ଭାଷାରେ ପାଠ ହେବା ପରେ ଶ୍ରୀଶ୍ରୀପିତୃଦେବ ସତୀଶ ଭାଇ (ପାଲ) ଙ୍କୁ ଆଲୋଚନା କରିବାକୁ ଆଦେଶ କଲେ।

ସତୀଶ ଭାଇ ବାଣୀଟି ଥରେ ପାଠ କରି କହିଲେ—ନାମ କଲେ ମଣିଷର ବୁଦ୍ଧି ତୀକ୍ଷ୍ଣ ହୁଏ, ଆଉ ବୁଦ୍ଧି ତୀକ୍ଷ୍ଣ ହେଲେ ସବୁ ଜିନିଷ ସେ ସହଜରେ ଧରିପାରେ—ସହଜରେ ବୋଧଗମ୍ୟ ହୁଏ ତା ନିକଟରେ।

ଶ୍ରୀଶ୍ରୀପିତୃଦେବ—ଅସ୍ତ୍ର ଯେପରି ଧାରୁଆ ହେଲେ ତା'ଦ୍ୱାରା ସହଜରେ କଟାଯାଏ ସେହିପରି ଯେଉଁମାନେ ନାମ କରନ୍ତି ସେମାନେ ସହଜରେ ସମସ୍ୟାର ସମାଧାନ କରିପାରନ୍ତି। ନାମ ଓ ଧ୍ୟାନ ଏକସଙ୍ଗେ ଚାଲେ। ନାମ କଲେ ଧ୍ୟାନ ବି ହୁଏ। ନାମ କ'ଣ ? Repetition of 'Name'–ତା ଫଳରେ vibration ର ସୃଷ୍ଟି ହୁଏ। ତାଦ୍ୱାରା brain cell (ମସ୍ତିଷ୍କ କୋଷ)- ଗୁଡ଼ିକ ସତେଜ ହୁଏ।

ମଦନ ଭାଇ—ନାମ itself ଗୋଟାଏ energy (ନାମ ନିଜେଇ ଶକ୍ତି)।

ଶ୍ରୀଶ୍ରୀପିତୃଦେବ—ଶରୀର develop କରିବାକୁ ହେଲେ (ଗଠନ କରିବାକୁ ହେଲେ) ଯେପରି ବ୍ୟାୟାମ କରିବା ଦରକାର ହୁଏ ସେହିପରି brain develop କରିବାକୁ ହେଲେ (ମସ୍ତିଷ୍କ ସତେଜ କରିବାକୁ ହେଲେ) ନାମ କରିବାକୁ ହୁଏ। ଠାକୁରଙ୍କ ପ୍ରତି ଭଲପାଇବା ଥିଲେ ବି ହୁଏ। ଯିଏ ଠାକୁରଙ୍କୁ ଖୁବ୍ ଭଲପାଏ ତାର brain ଖୁବ୍ ତୀକ୍ଷ୍ଣ ହୁଏ। କାହିଁକି ହୁଏ ? —ଶ୍ରୀଶ୍ରୀପିତୃଦେବ ସତୀଶ ଭାଇଙ୍କୁ ପ୍ରଶ୍ନ କଲେ।

ସତୀଶ ଭାଇ—ତାର ସବୁ ହିଁ ଇଷ୍ଟାର୍ଥେ ନିୟୋଜିତ।

ଶ୍ରୀଶ୍ରୀପିତୃଦେବ—ଯିଏ ଈଶ୍ୱରକୋଟୀ ବା ଭକ୍ତ—repetition of Name, 'ତାଙ୍କ' ପାଇଁ ଚିନ୍ତା, 'ତାଙ୍କ' ପାଇଁ କରିବା ତାହାର spontaneous (ସ୍ୱତଃସ୍ଫୂର୍ତ୍ତ)। ଏଇଭାବରେ ଚଳିବା ଫଳରେ ହିଁ ଃତଦ୍ଧାଡଡ଼ ତାର brain developed (ମସ୍ତିଷ୍କ ସତେଜ) ହୁଏ। ପୁଣି ନିଷ୍ଠାସହକାରେ ନାମ ଅଭ୍ୟାସ କଲେ ବି ଅନୁରାଗ ଆସେ। ଯେତେବେଳେ ଭଲ ଲାଗିଯାଏ ସେତେବେଳେ ଆଉ ଛାଡ଼ିପାରେ ନା। ଯାହାର ନିଷ୍ଠା ନାହିଁ ସେ ଦେଖେ ଅନେକଦିନୁ କରୁଛି, ଅଥଚ କିଛି ବି ହେଲାନି, ଭାବେ—ଧେତ୍, ଏ-ସବୁ କରି ଲାଭ କ'ଣ ? ଅବିଶ୍ୱାସ ଆସେ। ନିଜ ମନେ ମନେ ସେ ଏ-ସବୁ ଛାଡ଼ିଦେବା କଥା ଭାବୁଥାଏ।

ଆଉ ଧ୍ୟାନ ସ୍ଥିର ଓ ଗ୍ରହଣକ୍ଷମ କରେ। ଜଣେ ସ୍ଥିର, ତା'ର ଗ୍ରହଣକ୍ଷମତା ବେଶୀ ବୋଲି କେମିତି ବୁଝାଯିବ ? ଯେପରି କୌଣସି ସମସ୍ୟାର ସମାଧାନ ମୋ ନିକଟରେ କଠିନ ବୋଲି ମନେ ହେଉଛି, ସେଇ ସମସ୍ୟା ଯେତେବେଳେ ତୁମକୁ କହିଲି ତୁମେ ହୁଏତ ସଙ୍ଗେ-ସଙ୍ଗେ ହିଁ ସେଥିରେ ଡୁବି ଯାଇପାରିଲ।

ପରମେଶ୍ୱର ଭାଇ (ପାଲ)—ଧ୍ୟାନ କରିବାକୁ ଯାଇ ତ ଦେଖେ ବିଷୟ ଆଶୟର ଚିନ୍ତା ଆସିଯାଏ।

ଶ୍ରୀଶ୍ରୀପିତୃଦେବ—ନାମ ଯେତେବେଳେ କରେ ସେତେବେଳେ ଘରଦ୍ୱାର ସ୍ତ୍ରୀ-ପୁତ୍ର, ସାଂସାରିକ ବିଷୟର ଚିନ୍ତା ତ ରହିବ। ଏଇ ସମୟରେ ଇଷ୍ଟଙ୍କୁ କେନ୍ଦ୍ରକରି ଚିନ୍ତା କରିବାକୁ ଚେଷ୍ଟା କରିବାକୁ ହୁଏ। ଯେପରି ଧ୍ୟାନରେ ବସିବା ସଙ୍ଗେ-ସଙ୍ଗେ ତୁମର ଚାଉଳ କଥା ମନେ ପଡ଼ିଗଲା ; ତୁମେ ଚିନ୍ତାକଲ ଠାକୁର କେଉଁ ଚାଉଳ ପସନ୍ଦ କରନ୍ତି, ସେଇ ଚାଉଳ

ସଂଗ୍ରହ କିପରି କରାଯାଏ—ଏହିପରି ଚିନ୍ତା କରୁ-କରୁ ଗୋଟାଏ clue ପାଇଗଲ—ଅମୁକ ନିକଟକୁ ଗଲେ ହୋଇପାରେ, ଅମୁକ ଲୋକ ଏଇ ଚାଉଳ କଥା କହୁଥିଲା, ଅମୁକ-ଅମୁକ ଜାଗାରେ ଏହାର ଚାଷ ଅଛି ଇତ୍ୟାଦି। ମନକୁ tight (ଦୃଢ଼) କରିବାର process (ପଦ୍ଧତି) ହିଁ ହେଉଛି ଏଇଟା। ମନ ତ ଦୌଡ଼ାଦୌଡ଼ି କରିବ। ଘର-ସଂସାର, ବିଷୟ-ଆଶୟର ଚିନ୍ତା ହେଲା ନିମ୍ନମୁଖୀ ଚିନ୍ତା। ଯେଉଁ ଚିନ୍ତା ଠାକୁରଙ୍କୁ କେନ୍ଦ୍ର କରି, ଇଷ୍ଟଙ୍କୁ କେନ୍ଦ୍ର କରି,—ତା' ଊର୍ଦ୍ଧ୍ୱମୁଖୀ ଚିନ୍ତା। ଯେତେବେଳେ ନାମଧ୍ୟାନ କରିବାକୁ ବସୁ ସେତେବେଳେ ଠାକୁରଙ୍କୁ ଚିନ୍ତା କରିବାକୁ ହୁଏ। ଅକାରଣ ପାଞ୍ଚ ଘଣ୍ଟା ଦଶ ଘଣ୍ଟା ନାନାପ୍ରକାର ଚିନ୍ତା କରିବାଟା ଖରାପ। ବହୁକ୍ଷଣ ଧରି ବସିଛି ଅଥଚ ମାତ୍ର ଏକମିନିଟ୍ ଠାକୁରଙ୍କ ଚିନ୍ତା କରିଛି, ବାକିସବୁ ଆଜେବାଜେ ଚିନ୍ତା କରିଛି ତାହା ଖରାପ। ତେବେ ରୋଜ ଅଭ୍ୟାସ କରିବାକୁ ହୁଏ। ଏକ ମିନିଟ୍ ଦୁଇ ମିନିଟ ଅଭ୍ୟାସ କରୁ କରୁ ମନ ସ୍ଥିର ହୋଇଯାଏ।

ପରମେଶ୍ୱର ଭାଇ—ଅନେକେ mechanically (ଅଭ୍ୟାସବଶତଃ) ଇଷ୍ଟଭୃତି କରି ଚାଲନ୍ତି। ଏହାର ମର୍ମ କ'ଣ ବୁଝନ୍ତିନି।

ଶ୍ରୀଶ୍ରୀପିତୃଦେବ—Mechanically କଲେ ବି କାମ ହୁଏ। କିଏ ହୁଏତ ରୋଜ ସକାଳୁ ନିଦରୁ ଉଠି ମନ୍ତ୍ର ପଢ଼ି ଇଷ୍ଟଭୃତି କରେ—mechanically ହିଁ କରେ। ଏପରି କରୁ କରୁ ଦିନେ ସେଇ ସାତ୍ତ୍ୱିକଭାବ ଆସିଲା—ଇଷ୍ଟଙ୍କ ପ୍ରତି ଅନୁରାଗ ଜନ୍ମିଲା—ଇଷ୍ଟଭୃତିର ମର୍ମ ଉଦ୍‌ଘାଟନ କଲା। ରାଜସିକମାନଙ୍କର ଉପଚାର, ଆଡ଼ମ୍ବର ବେଶୀ। ଯେଉଁମାନେ ଦିନେ କରନ୍ତି ଦିନେ କରନ୍ତିନି, ସେମାନେ ତାମସିକ; ସେମାନଙ୍କର ନିଷ୍ଠା ନାହିଁ। ସେମାନଙ୍କ ଜୀବନରେ ଦୁଃଖ ଆସେ—ତାଙ୍କର ଦୁର୍ଭାଗ୍ୟ।

ପ୍ରଶ୍ନ—ମୂର୍ତ୍ତି-ଧ୍ୟାନ କିପରି କରିବୁ ?

—ଧ୍ୟାନ ପାଇଁ ଯଥେଷ୍ଟ କସରତର ଦରକାର। ଧ୍ୟାନ କରୁଛ, ପ୍ରଥମେ ହୁଏତ ମୂର୍ତ୍ତିର ହସ୍ତ, ପଦ ଦେଖିଲ—ସମସ୍ତ ମୂର୍ତ୍ତିର କଥା ଭାବିବାର ଚେଷ୍ଟା କରୁ କରୁ ସମସ୍ତ ମୂର୍ତ୍ତିଇ ପାଇଲ। ତାଙ୍କର ଚିନ୍ତା ହିଁ କରିଯିବାକୁ ହେବ। ଆଜ୍ଞାଚକ୍ରରେ ଇଷ୍ଟଙ୍କୁ ଧରି ରଖିବାର ଚେଷ୍ଟା କରୁ-କରୁ ମୂର୍ତ୍ତି କେତେବେଳେ ଆସେ, କେତେବେଳେ ବା ଚାଲିଯାଏ। କିନ୍ତୁ repetition of Name ହେଉ ହେଉ ଏକଦା ଆଜ୍ଞାଚକ୍ରରେ ସେଇ ମୂର୍ତ୍ତି stand କରେ (ସ୍ଥିର ହୁଏ)। ଯେତେବେଳେ ଆଜ୍ଞାଚକ୍ରରେ ଇଷ୍ଟମୂର୍ତ୍ତି ସ୍ଥିର ହୁଏ ସେତେବେଳେ ମନ ଶାନ୍ତ ହୋଇଉଠେ—ଜ୍ୟୋତିଃଦର୍ଶନ ସମ୍ଭବ ହୁଏ। ଯିଏ ଆଜ୍ଞାଚକ୍ରରେ ଠାକୁରଙ୍କୁ ପାଇଛି, ଆଧାର ଅନୁଯାୟୀ ସେ ଠାକୁରଙ୍କୁ ରକ୍ତ-ମାଂସସଙ୍କୁଳ ପରି ପାଏ।

## ଶନିବାର, ୮-କାର୍ତ୍ତିକ, ୧୩୮୨ (ଇଂ ୨୫/୧୦/୭୫)

ନିତ୍ୟଦିନଭଳି ଶ୍ରୀଶ୍ରୀପିତୃଦେବ ପ୍ରାର୍ଥନାନ୍ତେ ବଡ଼ ନାଟମଣ୍ଡପକୁ ଆସି ଆସନ ଗ୍ରହଣ କଲେ। ଉପସ୍ଥିତ ଅଛନ୍ତି—ନନୀଗୋପାଳ ଚକ୍ରବର୍ତ୍ତୀ, ଡା: ବିନାୟକ ମହାପାତ୍ର, ଶ୍ରୀକଣ୍ଠ ମାଇତି, ରାମନନ୍ଦନ ପ୍ରସାଦ, ବସନ୍ତ୍ୱାନ ସିଂ, ହରିପଦ ଦାସ, ସତୀଶ ପାଲ, ଯାମିନୀ ରାୟଚୌଧୁରୀ,

ଯତୀନ ବସୁ, ପରମେଶ୍ୱର ପାଲ, ଶିବଦୟାଲ ସିଂ, ଜିତେନ୍ ଦେବବର୍ମନ, ଅଜିତ ଗାଙ୍ଗୁଲୀ, ଗୋବର୍ଦ୍ଧନ ପରିଡ଼ା, ବ୍ରଜ ଗୋପାଳ ଗୁରୁ, ଦଶରଥ କର୍ମକାର, ଅନିଳ କୁମାର ସାହା ; ଆହୁରି ଅନେକ ମା' ଓ ଛୋଟ ବଡ଼ ଭାଇ-ଭଉଣୀମାନେ।

ବିଭିନ୍ନ ଭାଷାରେ ସତ୍ୟାନୁସରଣ ପାଠ ଆରମ୍ଭ ହେଲା—

"କୌଣସି-କିଛି ଦ୍ୱାରା ପ୍ରତିହତ ହେଲେ ଯାହା ନିଜକୁ ପ୍ରତିଷ୍ଠିତ କରିବାକୁ ଚାହେଁ—ତାହା ହିଁ ଅହଂ (self)। ଅହଂକୁ ଶକ୍ତ କରିବା ମାନେ ହିଁ ଅନ୍ୟକୁ ନ ଜାଣିବା।"

ପ୍ରଶ୍ନ ଉଠିଲା—ପ୍ରତିହତ ହେବାଟା କିଭଳି ଆଉ ପ୍ରତିଷ୍ଠିତ କରି କରିବାଟା ବା କିପରି,—ଏହାର ବାସ୍ତବ ଉଦାହରଣ କ'ଣ ହେବ ?

ହରିପଦ ଭାଇ—ମୁଁ ବସି ରହିଛି, ଅନ୍ୟ କେହି ବସିବାକୁ ଚାହିଁଲେ, ମୁଁ ବସିବାକୁ ଦେଉନି। ତାକୁ ବସିବାକୁ ନ ଦେଇ ମୁଁ ନିଜକୁ ପ୍ରତିଷ୍ଠିତ କରୁଛି।

ନନୀଦା—ଯେଉଁଠି ଦେଶ-କାଳ-ପାତ୍ର କୌଣସି କିଛି ନାହିଁ, ସେଠାରେ 'ମୁଁ' ବୋଧ ବି ନାହିଁ।

ଶ୍ରୀଶ୍ରୀପିତୃଦେବ—ମୁଁ ଛଡ଼ା ତୁମେ ରହିଲେ self ବୁଝାଯିବ। ମୁଁ କଥାଟାର ଉତ୍ପତ୍ତି ହେଲା କିପରି—କାହିଁକି ଆସିଲା ?—ତୁମେ ଅଛ ବୋଲି। ସବୁ ସମୟରେ ହିଁ ପ୍ରତିହତ ହେଉଛି, ମୁଁ—ତ୍ୱ ଥିବା ଫଳରେ ସେଇଟା (ମୁଁ) ଅନୁଭବ କରୁଛି।

ନନୀଦା—ମୁଁ ବ୍ୟତୀତ ସବୁକିଛି ମୋତେ ପ୍ରତିହତ କରୁଛି।

ଶ୍ରୀଶ୍ରୀପିତୃଦେବ—ମୋର ଅସ୍ତିତ୍ୱ ବଜାୟ ରଖିବାର ପ୍ରଚେଷ୍ଟାରେ ଅନବରତ ହିଁ ଚାଲିଛି। ଏପରି କି ଘୁମନ୍ତ ଅବସ୍ଥାରେ ବି ତା' ଚାଲୁଥାଏ। 'ମୁଁ' ବୋଧକୁ ପ୍ରତିଷ୍ଠା କରିବାକୁ ଯାହା ସାହାଯ୍ୟ କରିଚାଲିଛି ତାହା ହିଁ ଅହଂ।

ଶ୍ରୀଶ୍ରୀପିତୃଦେବ ପୁଣି କହିଲେ—କିଏ ହୁଏତ ରୋଜ ବସେ, ଆଜି ବି ବସିବାକୁ ଚାହୁଁଛି ; ତାକୁ ବସିବାକୁ ଦେଉନି କିମ୍ବା ଠାକୁର-ଘରକୁ ଯିବାକୁ ଚାହେଁ, କୌଣସି କାରଣ ନାହିଁ ଦେଖେଇ ଦେବାକୁ ଯାଉନି—ଏଗୁଡ଼ିକ ହେଲା ସ୍ଥୂଳ ବୁଦ୍ଧି।

ଏଥର ବାଣୀଟିର ଶେଷ ଅଂଶ ନେଇ ଆଲୋଚନା ଆରମ୍ଭ ହେଲା।

"ଅହଂକୁ ଶକ୍ତ କରିବା ମାନେ ହିଁ ଅନ୍ୟକୁ ନ ଜାଣିବା।"

ଶ୍ରୀଶ୍ରୀପିତୃଦେବ—'ମୁଁ'-ତ୍ୱର ଯେ-ବୋଧ ସେଇଟା ହିଁ self (ଅହଂ)। ଯେତେବେଳେ ନିଜକୁ ନେଇ ହିଁ ବ୍ୟସ୍ତ ସେତେବେଳେ ହିଁ ଅନ୍ୟକୁ ବୁଝାଯାଏନା (ହରିପଦ ଭାଇଙ୍କୁ) ଯା' ନେଇ ମୁଁ, ତାକୁ ignore (ଅବହେଳା) କରି ଯାଉଛି ; ସେଥିରେ କ'ଣ ହୁଏ ?

ହରିପଦ ଭାଇ—ଅହଂକୁ ଶକ୍ତ କରାହୁଏ।

ଶ୍ରୀଶ୍ରୀପିତୃଦେବ—ଅନ୍ୟ ଉପରେ depend (ନିର୍ଭର) କରି ହିଁ ତ ମୁଁ, ଅନ୍ୟକୁ ନ ଜାଣିଲେ ନିଜକୁ ତ ଜଣାଯାଏ ନା। ଅହଂକୁ ଶକ୍ତ କରିବା ମାନେ ନିଜକୁ ନ ଜାଣିବା—ସେଟା କେମିତି ? ଅମୂଲ୍ୟ କହ।

ଅମୂଲ୍ୟ ଭାଇ (ରାୟ)—ନନୀଦା ଯାହା କହନ୍ତି ମୁଁ ଯଦି ନଶୁଣିବାକୁ ଚାହେଁ ସେଥିରେ

ଅହଂକୁ ଶକ୍ତ କରାହୁଏ ।

ଶ୍ରୀଶ୍ରୀପିତୃଦେବ—ମୁଁ ଅଛି ତ ? ଏହା ବ୍ୟତୀତ ଇଷ୍ଟ ଅଛନ୍ତି, ମୋର ପରିବେଶ ଅଛି । ପରିବେଶକୁ ଯେତେ ଜାଣିବାକୁ, ବୁଝିବାକୁ ଚେଷ୍ଟା କରେ ସେତେ ହିଁ ଆସ୍ତେ-ଆସ୍ତେ ମନ କାରଣମୁଖୀ ହୁଏ । ଏଥିଯୋଗୁ ଅହଂକୁ ଶକ୍ତ କରିବାକୁ ହୁଏନା । (କିଛିସମୟ ରହି) ଯାହା ଉପରେ ମୁଁ ପ୍ରତିଷ୍ଠିତ ତାକୁ ଯଦି ignore କରେ, ଯିଏ ସବୁକିଛିର ମାଲିକ ତାକୁ ବି ଜାଣିପାରେ ନା, ପରିବେଶକୁ ବି ଜାଣିପାରେ ନା । ପତଳା ଅହଂ ଥିଲେ ବୋଧ ବଢ଼ି ବଢ଼ି ଯାଏ—କ୍ରମଶଃ ସବୁ ଜଣାଯାଏ । ଅହଂ ଶକ୍ତ ହେଲେ ଜାଣିବାକୁ ସମର୍ଥ ହୁଏନା ।

ଏଥର 'ତପୋ ବିଧାୟନା' (୧ମ ଖଣ୍ଡ) ପାଠ ହେଲା । ପାଠ ପରେ ନାନା ବିଷୟରେ କଥାବାର୍ତ୍ତା ଆରମ୍ଭ ହେଲା । ଆନନ୍ଦବଜାରର କାଠ ରହିବାର ଯେଉଁ ଜାଗାଟା ପ୍ଲାଷ୍ଟରିଂ କରିବାର କଥା ଥିଲା ସେ-ବିଷୟରେ ଖଗେନ୍ ଭାଇଙ୍କୁ (ତଫାଦାର) ଶ୍ରୀଶ୍ରୀପିତୃଦେବ ପ୍ରଶ୍ନ କଲେ । ନିତ୍ୟାନନ୍ଦ ଭାଇ (ମଣ୍ଡଳ) ପାଖରେ ବସିଥିଲେ । ସେ ଜଣାଇଲେ, ୧୦/୧୨ ଟା ବଡ଼-ବଡ଼ କାଠ ଘୁଞ୍ଚାଇଦେଲେ ସେ ଜାଗାଟା ଫାଙ୍କା ହୋଇଯିବ ।

ଶ୍ରୀଶ୍ରୀପିତୃଦେବ—କାଠ ଘୁଞ୍ଚାଇନୁ କାହିଁକି ?

ନିତ୍ୟାନନ୍ଦ ଭାଇ—କାଠଗୁଡ଼ିକ ବଡ଼ ବଡ଼, ଲୋକ ନ ଥିଲେ ।

ଶ୍ରୀଶ୍ରୀପିତୃଦେବ—ମୁଁ ଥିଲେ ନିଜେ ହିଁ ଘୁଞ୍ଚାଇ ଦେଇଥାନ୍ତି ।

ଜନୈକ ମା—ଗତବର୍ଷ ପୁଅକୁ ହଜେଇ ଆପଣଙ୍କ ନିକଟକୁ ଆସିଥିଲି । ଏଥର ତାକୁ ନେଇଆସିଛି । ଦୟାକରି ଭଲକରି ଦିଅନ୍ତୁ ।

ପୁଅଟିର ବୟସ ନଅ କିମ୍ବା ଦଶବର୍ଷ । କଥା କହିପାରେ ନା, ମୁହଁ-ଆଖିର ଭଙ୍ଗି ଦେଖିଲେ ମନେହୁଏ ତାର ବୁଦ୍ଧି-ବୃତ୍ତି ଖୁବ୍ କମ୍ । ଶରୀର ବି ଅସୁସ୍ଥ । ମା-ଟି ଜାଣିବାକୁ ଚାହିଁଲେ ପୁଅଟି କିପରି ସୁସ୍ଥ ହେବ ।

ଶ୍ରୀଶ୍ରୀପିତୃଦେବ କେତୋଟି ଔଷଧ ବ୍ୟବହାରର ନିର୍ଦ୍ଦେଶ ଦେଲେ । ପୁଷ୍ଟିକର ଲଘୁପାଚ୍ୟ ଖାଦ୍ୟ ଗ୍ରହଣ କରିବାକୁ କହିଲେ ।

ଜଣେ ଭାଇ ଯଶୋର (ବଙ୍ଗଳାଦେଶ)ରୁ ଆସିଛନ୍ତି । ଫେରିଯିବାର ଟଙ୍କା ପଇସା ନାହିଁ । ଶ୍ରୀଶ୍ରୀପିତୃଦେବଙ୍କୁ ସେହି ଭାଇଟି ନିଜ ଅବସ୍ଥାର କଥା ଜଣାଇଲେ ।

ଶ୍ରୀଶ୍ରୀପିତୃଦେବ—ଗୁରୁଭାଇମାନଙ୍କ ନିକଟରୁ ସଂଗ୍ରହ କରିନିଅ ।

ଭାଇ ଜଣକ ଇତସ୍ତତଃ କରୁଥିବାର ଦେଖି ଶ୍ରୀଶ୍ରୀପିତୃଦେବ ପଚାରିଲେ (ଶିବଦୟାଲ ଭାଇଙ୍କୁ) ଶୁଣ, ଆଉ କ'ଣ କୁହେ ?

ଶିବଦୟାଲ ଭାଇ—ଆଜ୍ଞା, ସେ କହୁଛନ୍ତି କେଉଁଠୁ ସଂଗ୍ରହ କରିବେ ?

ଶ୍ରୀଶ୍ରୀପିତୃଦେବ—କହିଦେ କେଉଁଠୁ କରିବାକୁ ହେବ ।

ଶିବଦୟାଲ ଭାଇ ସେହି ଭାଇଙ୍କୁ ବୁଝାଇ କହିବାରୁ ସେ ଘୁଞ୍ଚି ବସିଲେ ।

ଶ୍ରୀଶ୍ରୀପିତୃଦେବ (ଶିବଦୟାଲ ଭାଇଙ୍କୁ)—ସବୁ ବୁଝାଇ କହିଲୁ ତ ?

ଶିବଦୟାଲ ଭାଇ—ଆଜ୍ଞା, ହଁ ।

ଶ୍ରୀଶ୍ରୀପିତୃଦେବ—ମଣିଷ ହିଁ ଆମ୍ଭମାନଙ୍କର ସମ୍ପଦ। 'ମାନୁଷ ଆପନ ଟାକା ପର/ଯତ ପାରିସ୍ ମାନୁଷ ଧର।' —ଅର୍ଥ ଲାଭର ଏହାଠାରୁ ଭଲ formula ଅଛି ବୋଲି ମୋର ମନେହୁଏ ନା। ଏଟା ହିଁ ହେଉଛି Economics Department (ଅର୍ଥନୀତି ବିଭାଗ) ର best theory (ସବୁଠାରୁ ଭଲ ତତ୍ତ୍ୱ)। ମଣିଷକୁ ଯଦି ଭଲପାଅ ଏବଂ ତାର ବିନିମୟରେ ଗୋଟିଏ କରି ଟଙ୍କା ଯଦି ମଣିଷ ଦିଏ ତାହେଲେଇ ଭାସିଯିବ।

ଅଜିତ୍ ଭାଇ (ଗାଙ୍ଗୁଲୀ)—ଆଜ୍ଞା, ଉତ୍ସବ ସମୟରେ ଦେଖେ କେହି କେହି ଠାକୁରଙ୍କର ବିଭିନ୍ନ ଫଣ୍ଡରେ ଜମା ଦେଇ ଦେଇ ଖାଲି ହୋଇପଡ଼ନ୍ତି। ତା'ପରେ ଭିକ୍ଷା କରି ଭଡ଼ା ଯୋଗାଡ଼ କରି ଘରକୁ ଫେରନ୍ତି।

ଶ୍ରୀଶ୍ରୀପିତୃଦେବ—ଅସଲ କଥା ମଣିଷକୁ ଭଲପାଇବା। ଆଉ ତା' ସେହି ପରମପିତାଙ୍କୁ ଭଲପାଇବା ଦେଇ ହିଁ ସମ୍ଭବ। ସେତେବେଳେ ଶକ୍ତି, ସାମର୍ଥ୍ୟ, ଯୋଗ୍ୟତା ସବୁ ବଢ଼ି-ବଢ଼ି ଯାଏ। କେତେବେଳେ କ'ଣ କରିବାକୁ ହେବ, କାହାକୁ କ'ଣ କହିବାକୁ ହେବ ସେ-ସବୁ ବି ବୋଧ ଭିତରେ ଆସିଯାଏ। ଯେ କରେ ସେ ହିଁ ବୁଝେ।

## ରବିବାର, ୯-କାର୍ତ୍ତିକ, ୧୩୮୨ (ଇଂ ୨୭/୧୦/୭୫)

ସଂଧ୍ୟା ବିନତି-ପ୍ରାର୍ଥନା ପରେ ଶ୍ରୀଶ୍ରୀପିତୃଦେବ ବଡ଼ ନାଟମଣ୍ଡପରେ ଉପବେଶନ କଲେ। ଉପସ୍ଥିତ ଭାଇ ଓ ମା'ମାନେ ଶ୍ରୀଶ୍ରୀପିତୃଦେବଙ୍କୁ ପ୍ରଣାମ କରି ବସିଲେ। ଉପସ୍ଥିତ ଅଛନ୍ତି— ଶ୍ରଦ୍ଧେୟ କୃଷ୍ଣଲାଲ ଚାଟାର୍ଜୀ (ଶ୍ରୀଶ୍ରୀପିତୃଦେବଙ୍କର ସମ୍ବନ୍ଧି), ଗୁରୁପ୍ରସନ୍ନ ଭଟ୍ଟାଚାର୍ଯ୍ୟ, ନନୀଗୋପାଳ ଚକ୍ରବର୍ତ୍ତୀ, ସୁରେଶ ଦେବଶର୍ମା, ଦେବୀପ୍ରସାଦ ମୁଖାର୍ଜୀ, ଶୈଲେନ ଭଟ୍ଟାଚାର୍ଯ୍ୟ, ଜିତେନ୍ ଦେବବର୍ମନ, ଅଜୟ ଗାଙ୍ଗୁଲୀ, ପରମେଶ୍ୱର ପାଲ, ସାରଦାଚରଣ ପାଲ, ଦୁଲାଲ ମଜୁମଦାର, ଯତୀନ ବସୁ, ବିନାୟକ ମହାପାତ୍ର, ବ୍ରଜଗୋପାଳ ଗୁରୁ, ଯାମିନୀ ରାୟଚୌଧୁରୀ, ଅଜିତ୍ ଗାଙ୍ଗୁଲୀ, ହରିପଦ ଦାସ, ନିତ୍ୟାନନ୍ଦ ମଣ୍ଡଳ, ଶିବଦୟାଲ ସିଂ, ପରେଶ ଭୋରା, ବସନ୍ତ୍ୱାନ ସିଂ, ମିଲନ ଚକ୍ରବର୍ତ୍ତୀ, ଗୋକୁଳ ଘୋଷ, ରଞ୍ଜିତ୍ ମଣ୍ଡଳ, ବିରୁପାକ୍ଷ ରାୟ ଓ ଆହୁରି ଅନେକ ମା ଓ ଭାଇ ଭଉଣୀମାନେ। ତା'ଛଡ଼ା ରହିଛନ୍ତି ଶ୍ରୀଯୁକ୍ତ ଧ୍ୟାନେଶ ନାରାୟଣ ଚକ୍ରବର୍ତ୍ତୀ (ଅଧ୍ୟାପକ, ରବୀନ୍ଦ୍ରଭାରତୀ ବିଶ୍ୱବିଦ୍ୟାଳୟ) ; ଶ୍ରୀ ଜାହ୍ନବୀ ଚକ୍ରବର୍ତ୍ତୀ ଓ ଶ୍ରୀ ଦେବାଶିଷ ଚକ୍ରବର୍ତ୍ତୀ—ପିତା ପୁତ୍ର ଉଭୟେ ହିଁ କଲିକତା ସିଟି କଲେଜର ଅଧ୍ୟାପକ।

ନାନାବିଷୟରେ କଥାବାର୍ତ୍ତା ଚାଲିଛି। ଅନେକେ ଘରକୁ ଯିବାପାଇଁ ଅନୁମତି ନେଉଛନ୍ତି। ଏପରି ସମୟରେ ସତୁଦା (ସାନ୍ୟାଲ) ଆସିଲେ। ସାମନାରେ ବସିବାର ଆସନଗୁଡ଼ିକ ଭର୍ତ୍ତି ହୋଇଅଛି। ଶ୍ରୀଶ୍ରୀପିତୃଦେବ ସତୁଦାଙ୍କୁ ନିଜ ବିଛଣା ଉପରେ ବସିବାକୁ କହିଲେ। ସତୁଦା କୃଷ୍ଣଲାଲ ବାବୁ ଓ ଧ୍ୟାନେଶ ବାବୁଙ୍କ ନିକଟରେ ବସିବାର ଜାଗା ଠିକ୍ କରିନେଇ କହିଲେ—ଜାଗା ହୋଇଯାଇଛି।

କିଛି ସମୟ ପରେ ଯତି-ଋତ୍ୱିକ୍ ଶରତ୍ଦା (ହାଲଦାର) ଆସିଲେ। ହାତରେ କେତେଖଣ୍ଡି ବହି। ସେ ପ୍ରଣାମ କରି ଉଠି ଠିଆହେଲେ। ଶ୍ରୀଶ୍ରୀପିତୃଦେବ ଶରତଦା ଠିଆ

ହୋଇଥିବାର ଦେଖି ତାଙ୍କ ନିଜ ବିଛଣାରେ ହାତ ଥାପଡ଼େଇ ବସିବାର ନିର୍ଦ୍ଦେଶ ଦେଲେ। ଶରତଦା ଇତସ୍ତତଃ କରୁଥିବାର ଦେଖି ଶ୍ରୀଶ୍ରୀପିତୃଦେବ ପୁଣି କହିଲେ—ବସନ୍ତୁ ଏଠାରେ, 'ଜୟଗୁରୁ' କହି ବସିପଡ଼ନ୍ତୁ।

ଶରତ୍‌ଦା 'ଜୟଗୁରୁ' କହି ବିଛଣା ଉପରେ ବସିଲେ।

ଆଜି ରବିବାର—ଅନୁସନ୍ଧିତ୍ସୁ ସଭା। ପୂର୍ବ-ନିର୍ବାଚିତ ଶ୍ରୀଶ୍ରୀଠାକୁରଙ୍କର ଗୋଟିଏ ବାଣୀ ସମ୍ପର୍କରେ ଅନୁସନ୍ଧିତ୍ସୁ ସଭାରେ ଆଲୋଚନା ଚାଲେ। ପରଦିନ (ଆଗାମୀ ରବିବାର ଦିନ) କିଏ କିଏ ବକ୍ତବ୍ୟ ରଖିବେ ତା ସଭା ଶେଷରେ ସ୍ଥିର କରା ହୋଇଥାଏ। ଶରତଦା ଆଲୋଚ୍ୟ ବାଣୀ ଓ ଆଲୋଚନାର ବକ୍ତା ନିର୍ବାଚନ କରି ଥାଆନ୍ତି।

କିଛି ସମୟ ପରେ ଶ୍ରୀଶ୍ରୀପିତୃଦେବ ଆଜିର ସଭାକାର୍ଯ୍ୟ ଆରମ୍ଭ କରିବାକୁ କହିବାରୁ ଶରତଦା ସଭାର ଆଲେଚ୍ୟ ବିଷୟ-ବସ୍ତୁ ପାଠ କଲେ—''ଇଷ୍ଟ-ଦ୍ରୋହିତାକୁ ବିଷେଇ ମାର, ଶ୍ରଦ୍ଧାର ମଥାରେ ଶିରସ୍ତ୍ରାଣ ଦିଅ, ଜ୍ଞାନର ତରବାରୀ ଧର, ସେବାର ବର୍ମ ପିନ୍ଧି ଆଗେଇ ଚାଲ, ଅଗ୍ନିମୁଖ ତୁମର ସହାୟ ହୁଅନ୍ତୁ।''

କିଏ ପ୍ରଥମେ ବକ୍ତବ୍ୟ ରଖିବେ ପ୍ରଶ୍ନ ଉଠିବାରୁ ଧ୍ୟାନେଶ ବାବୁ କହିଲେ —ଆପଣମାନେ ହିଁ କେହି ଆଗ କୁହନ୍ତୁ।

ପ୍ରସଙ୍ଗତଃ ଉଲ୍ଲେଖ ଥାଉକି ଆଜିର ସଭାରେ ଆଲେଚ୍ୟ ବିଷୟ ଉପରେ ବକ୍ତବ୍ୟ ରଖିବା ପାଇଁ ଧ୍ୟାନେଶ ବାବୁଙ୍କୁ ଆଗରୁ ଅବହିତ କରା ହୋଇଛି। ଅଜିତ ଭାଇ (ବଙ୍ଗଳାରେ) ଓ ବସୱାନ ଭାଇ (ହିନ୍ଦିରେ) କହିବା ପରେ ଧ୍ୟାନେଶ ବାବୁ ସଂସ୍କୃତ ଭାଷାରେ ବକ୍ତବ୍ୟ ରଖିଲେ। ସେ ବକ୍ତବ୍ୟର ପ୍ରାରମ୍ଭରେ ଗୋଟିଏ ଶ୍ଳୋକ ପାଠ କଲେ। ସେଥିରେ ଶ୍ରୀଶ୍ରୀଠାକୁରଙ୍କ ବନ୍ଦନା ଗୀତ ହୋଇଛି। ତା'ପରେ ସେ ସତ୍‌ସଙ୍ଗର ଆଚାର୍ଯ୍ୟ, ମାତୃ ଓ ବିଦ୍‌ଗଧମଣ୍ଡଳୀଙ୍କ ପ୍ରତି ଶ୍ରଦ୍ଧା ପ୍ରଦର୍ଶନ କରନ୍ତି। ଉଦ୍ଧୃତ ବିଷୟବସ୍ତୁଟି ପାଠ କରି ଇଷ୍ଟ, ଶ୍ରଦ୍ଧା ଇତ୍ୟାଦି ପଦଗୁଡ଼ିକ ବ୍ୟାଖ୍ୟା କରନ୍ତି। ଅତଃପର ସଂସ୍କୃତ ଭାଷାର ଗୁରୁତ୍ୱ ଏବଂ ଆମ ଦେଶରେ ସଂସ୍କୃତକୁ ରାଷ୍ଟ୍ରଭାଷା କରିବାର ପ୍ରୟୋଜନୀୟତା ବ୍ୟାଖ୍ୟା କରି କହନ୍ତି —No living culture without a living tradition. ସ୍ୱାଧୀନ ଭାରତରେ ରହିଛି ଭାଷାଗତ ଐକ୍ୟର ଅଭାବ। ସଂସ୍କୃତ ଭାଷା ମାଧ୍ୟମରେ ସେଇ ଐକ୍ୟ ସମ୍ଭବ ହୋଇପାରେ। ଭକ୍ତମାନେ ସଂସ୍କୃତ ଭାଷାରେ ଗୁରୁବନ୍ଦନା କରନ୍ତି ଏବଂ ପୂଜା-ଅର୍ଚ୍ଚନା ମଧ୍ୟ ସଂସ୍କୃତ ଭାଷାରେ ହୋଇଥାଏ। Study of Sanskrit is not luxury, it is necessary. ଇସ୍ରାଏଲ୍‌ରେ ବହୁ ଭାଷାଭାଷୀ ଥିବା ସତ୍ତ୍ୱେ ବି ହିବ୍ରୁ ରାଷ୍ଟ୍ରଭାଷା ବୋଲି ସ୍ୱୀକୃତ।

ତା'ପରେ ଧ୍ୟାନେଶ ବାବୁ 'ପୁରୁଷୋତ୍ତମ ପୀଠରେ ମୋର ଏଇ ଅନୁଭୂତି ହେଲା' ବୋଲି କହି ଆମ ଦେଶରେ ସଂସ୍କୃତକୁ ରାଷ୍ଟ୍ରଭାଷା କରିବା ସଂପର୍କରେ ଶ୍ରୀଶ୍ରୀଠାକୁରଙ୍କ ବିଧାନ-ବିନାୟକ ଗ୍ରନ୍ଥର ଗୋଟିଏ ବାଣୀ ପାଠ କରନ୍ତି।

ଧ୍ୟାନେଶ ବାବୁଙ୍କ ବକ୍ତବ୍ୟ ଶେଷ ହେବା ପରେ ଶ୍ରୀଶ୍ରୀପିତୃଦେବ କହିଲେ—ଖୁବ୍ ସୁନ୍ଦର ହୋଇଛି। ଖୁବ୍ ସହଜ ସରଳ—ସମସ୍ତେ ବୁଝିଛନ୍ତି।

ବଡ଼ ନାଟମଣ୍ଡପର ଦକ୍ଷିଣ ଦିଗରେ ଶାନ୍ତିଦି (ସରକାର)ର ଭାଇ ବାବୁଲଦା ବସି ଶୁଣୁଥିଲେ। ଗୋଡ଼ରେ ବ୍ୟଥା, ମୋଡ଼ି ବସିବାକୁ ଅସୁବିଧା ହୁଏ, ତେଣୁ ତାଙ୍କୁ ବସିବାକୁ ଚେୟାର ଦିଆହୋଇଛି। ସେ ଚେୟାର ଛାଡ଼ି ଆଗେଇ ଆସି ଜଣାଇଲେ— ଉଦ୍ଧୃତ ବିଷୟ-ବସ୍ତୁ ମଧ୍ୟରେ ଠାକୁର ଏକ ଯୋଦ୍ଧାର କଥା କହିବାକୁ ଚାହିଁଛନ୍ତି ; ତେଣୁ 'ଶ୍ରଦ୍ଧାର ମଥାରେ ଶିରସ୍ତ୍ରାଣ ଦିଅ' ନ ହୋଇ 'ମଥାରେ ଶ୍ରଦ୍ଧାର ଶିରସ୍ତ୍ରାଣ ଦିଅ' ହେଲେ ଭଲ ହୋଇଥାନ୍ତା, —ଏ କଥା ମୁଁ ଆଲୋଚନା ପାଇଁ କହୁଛି।

ଉତ୍ତରରେ ଧ୍ୟାନେଶ ବାବୁ କହିଲେ—ମହାପୁରୁଷମାନଙ୍କର ବାଣୀଗୁଡ଼ିକ ଆପ୍ତବାଣୀ। ସେମାନଙ୍କର ବାଣୀକୁ ଆମ୍ଭମାନଙ୍କର ନିଜଭଳି କଲେ ଚଳିବ ନି। ସେମାନେ ଯେପରି କହିଛନ୍ତି ଠିକ୍ ସେହିପରି ରଖିବାକୁ ହେବ।

ଶ୍ରୀଶ୍ରୀପିତୃଦେବ ଉକ୍ତ ବାଣୀଟିର ଅର୍ଥ ବୁଝାଇ କହିଲେ—ଠାକୁର କହିଛନ୍ତି, ଶ୍ରଦ୍ଧାକୁ କେହି ଯେପରି ନଷ୍ଟ କରି ନ ପାରନ୍ତି। ଶ୍ରଦ୍ଧା ଯେପରି ଆହତ ନ ହୁଏ ଏବଂ ସମସ୍ତେ ଯେପରି ଶ୍ରଦ୍ଧାର ଅଧିକାରୀ ହୁଅନ୍ତି। ବାଣୀରେ ତ କିଛି ବାଦ୍ ନାହିଁ—କେଉଁଠି ବି ଫାଙ୍କ୍ ମଧ୍ୟ ନାହିଁ। ଏହାକୁ ଆପ୍ତବାଣୀ କହିବା ଚଳେନା।

ଧ୍ୟାନେଶ ବାବୁ—ଆଘାତଟା ତ ଆସୁଛି। ଠାକୁର ତ କହି ଦେଇଛନ୍ତି —ଶ୍ରଦ୍ଧାର ମଥାରେ ଶିରସ୍ତ୍ରାଣ ଦିଅ, ସେଠାରେ ଆମର ରୂପକ କଳ୍ପନାର ଅବକାଶ ନାହିଁ। ଜ୍ଞାନର ତରବାରୀ ଓ ସେବାର ବର୍ମ ଧାରଣର କଥା ଅଛି, ତେଣୁ ସେହି ଭାଇ ଏକ ଯୋଦ୍ଧାର ଶିରସ୍ତ୍ରାଣ କଥା ଭାବୁଥିଲେ।

ଶ୍ରୀଶ୍ରୀପିତୃଦେବ—ଅନ୍ୟକୁ ବୁଝାଇବା ବେଳକୁ ଯୋଦ୍ଧାର ମୁଣ୍ଡରେ ଶିରସ୍ତ୍ରାଣର କଥା ଆସୁଛି। ଯେତେବେଳେ ବାଣୀଟି ମୋ ପାଇଁ ଭାବୁଛି ସେତେବେଳେ ମୋତେ କୁହା ହେଉଛି—ଶ୍ରଦ୍ଧାର ମୁଣ୍ଡରେ ଶିରସ୍ତ୍ରାଣ ଦିଅ। ଠାକୁରଙ୍କର ବାଣୀ ସବୁ ହିଁ ମୋ ପାଇଁ ବୋଲି ଭାବିବାକୁ ହୁଏ।

'ଇଷ୍ଟଦ୍ରୋହିତାକୁ ବିଷେଇ ମାର' ପ୍ରସଙ୍ଗରେ କୃଷ୍ଣଲାଲ ବାବୁ କହିଲେ—ବିଷ ଖୁଆଇ ମାରିବାଟା happy death (ସୁଖର ମୃତ୍ୟୁ)। ତେଣୁ ଠାକୁର ବି ବିଷେଇ ମାରିବାର କଥା କହିଛନ୍ତି। ସକ୍ରେଟିସକୁ ବିଷ ଖୁଆଇ ମରା ଯାଇଥିଲା—କୌଣସ ଜ୍ୱାଳା ତାର ହୋଇନି।

ଶ୍ରୀଶ୍ରୀପିତୃଦେବ—ବିଷର ମଧ୍ୟ କ୍ରିୟା ଅଛି। ସକ୍ରେଟିସଙ୍କ କ୍ଷେତ୍ରରେ ତାର expression (ପ୍ରକାଶ) ହୋଇନି। ଠାକୁର ମୋ ପାଇଁ କହିଛନ୍ତି। ମୋ ମଧ୍ୟରେ ଯେଉଁ ଇଷ୍ଟଦ୍ରୋହିତା ଅଛି ତାକୁ ବିଷ ଦେଇ, ଜ୍ୱାଳା-ଯନ୍ତ୍ରଣା ଦେଇ ମାରିବାକୁ କହିଛନ୍ତି। ଠାକୁରଙ୍କ ବାଣୀ ମୋ ପାଇଁ ବୋଲି ଭାବିଲେ କୌଣସି ଅସୁବିଧା ହୁଏନା।

୭ଟା ବାଜି ୨୫ ମିନିଟ୍। ଶ୍ରୀଶ୍ରୀପିତୃଦେବ କହିଲେ—ଏଥରକ ଉଠାଯାଉ।

ସମସ୍ତେ—ଆଜ୍ଞା ହଁ।

ଯଥାବିଧି ପ୍ରଣାମାନ୍ତେ ଶ୍ରୀଶ୍ରୀପିତୃଦେବ ତାଙ୍କ ବାସଭବନ ଅଭିମୁଖରେ ଚାଲିଲେ।

## ସୋମବାର, ୧୭-କାର୍ତ୍ତିକ, ୧୩୮୨ (ଇଂ ୩/୧୧/୭୫)

ପ୍ରାର୍ଥନା ପରେ ଶ୍ରୀଶ୍ରୀପିତୃଦେବ ବଡ଼ ନାଟମଣ୍ଡପରେ ବସିଲେ। ଉପସ୍ଥିତ ଅଛନ୍ତି ଗୁରୁପ୍ରସନ୍ନ ଭଟ୍ଟାଚାର୍ଯ୍ୟ, ରାମନନ୍ଦନ ପ୍ରସାଦ, ଶ୍ରୀକଣ୍ଠ ମାଇତି, ଗୋବର୍ଦ୍ଧନ ପରିଡ଼ା, ଶିଶୁରଞ୍ଜନ ବିଶ୍ୱାସ, ଯଜ୍ଞେଶ୍ୱର ଯାଦବ, କ୍ଷିତୀଶ ସେନ୍‌ଗୁପ୍ତ, ହରିପଦ ଦାସ, ଗୌରବ ମଣ୍ଡଳ ବେରା, ସୁରେନ୍ ବିଶ୍ୱାସ, ପରମେଶ୍ୱର ପାଲ, ଦିଲୀପ ଦାସ ଆହୁରି ଅନେକ ମା ଓ ଭାଇମାନେ।

ସତ୍ୟାନୁସରଣ ପାଠ ଆରମ୍ଭ ହେଲା—

"ଯାହାର ଅସ୍ତିତ୍ୱ ଅଛି ଏବଂ ଯାହାର ବିକାଶ ଅଛି—ତାହା ହିଁ ସତ୍ୟ (Real)।"

ଶ୍ରୀଶ୍ରୀପିତୃଦେବଙ୍କ ନିର୍ଦ୍ଦେଶରେ କ୍ଷିତୀଶ ଭାଇ ଆଲୋଚନା ଆରମ୍ଭ କଲେ।

କ୍ଷିତୀଶ ଭାଇ—ଗୋଟିଏ ଛୋଟ ବୀଜରୁ ଅଙ୍କୁର ବାହାରୁଛି, ଗଛ ବଡ଼ ହୋଇ ଉଠୁଛି—ସମସ୍ତେ ଦେଖୁଛନ୍ତି ଗଛକୁ—ଏହାର ବିକାଶ ଅଛି। ତେଣୁ ଗଛ ସତ୍ୟ।

ଶ୍ରୀଶ୍ରୀପିତୃଦେବ—ପ୍ରେମ, ପ୍ରୀତି, ଭଲପାଇବା, ଏଗୁଡ଼ିକୁ ତ ଆଖିରେ ଦେଖା ଯାଏନା,—ଏଗୁଡ଼ିକ ତା'ହେଲେ କ'ଣ ହେବ ?

କ୍ଷିତୀଶ ଭାଇଙ୍କୁ ନିରୁତ୍ତର ଦେଖି ପରମେଶ୍ୱର ଭାଇ କହିଲେ—ଏଗୁଡ଼ିକର ବି ବିକାଶ ଅଛି।

ଶ୍ରୀକୃଷ୍ଣ ଭାଇ—ବ୍ରହ୍ମ ସତ୍ୟ ଜଗତ୍ ମିଥ୍ୟା—କିପରି ?

ଶ୍ରୀଶ୍ରୀପିତୃଦେବ—ବ୍ରହ୍ମ ସତ୍ୟ, ଜଗତ୍ ବି ସତ୍ୟ।

ଶ୍ରୀକଣ୍ଠ ଭାଇ—ଯାହାର ଅସ୍ତିତ୍ୱ ଅଛି ସେ କ'ଣ କୌଣସି ଦିନ ଲୋପ ହୋଇପାରେ ?

ଶ୍ରୀଶ୍ରୀପିତୃଦେବ—ସେ-କଥା ତ ଆସୁନି। ଯାହାର ଅସ୍ତିତ୍ୱ ଅଛି, ବିକାଶ ଅଛି—ତା'—ହିଁ ସତ୍ୟ। ଏଇ ପୃଥିବୀରେ ଘର-ବାଡ଼ି ଜନ-ମାନବ, ପଶୁ-ପକ୍ଷୀ ଏତେସବୁ—ଏମାନଙ୍କ ସହିତ ଯେତେବେଳେ ପ୍ରୀତିର ବନ୍ଧନ ହୁଏ, ସେତେବେଳେ ପୃଥିବୀଟା ମଧୁର ହୁଏ ; ତା'ହେଲେ ଜଗତ୍ ମିଥ୍ୟା ହୁଏ କିପରି ?

ଶ୍ରୀଶ୍ରୀପିତୃଦେବଙ୍କ ଆସନ ପାଖକୁ ବସିଛନ୍ତି ପଣ୍ଡିତ ଭାଇ (ଗୁରୁପ୍ରସନ୍ନ ଭଟ୍ଟାଚାର୍ଯ୍ୟ)। ସେ ସମସ୍ତଙ୍କ କଥା ଶୁଣୁଛନ୍ତି। ଶ୍ରୀଶ୍ରୀପିତୃଦେବ ତାଙ୍କୁ କହିଲେ— ପଣ୍ଡିତ! ତୁମେ ତ କିଛି କହୁନ!

ପଣ୍ଡିତ ଭାଇ—ଆଜ୍ଞା, ମୋର ମନେ ହେଉଛି କୌଣସି ଜିନିଷକୁ ଯଦି permanently (ସ୍ଥାୟୀଭାବରେ) ଦେଖିବାକୁ ଚାହେ ତା'ହେଲେ whole (ସମସ୍ତ)ଟାକୁ ଜାଣିବାକୁ ହେବ।

ଶ୍ରୀଶ୍ରୀପିତୃଦେବ—ପିତା ଯେପରି ପୁତ୍ର ମଧ୍ୟରେ ଥାଏ, ପୁଣି ପୌତ୍ର-ପ୍ରପୌତ୍ରର ମଧ୍ୟରେ ବି ଥାଏ। ଏପରି ବଂଶ ପରମ୍ପରାରେ ସେହି ପିତା ହିଁ ବିଭିନ୍ନଭାବରେ ବର୍ତ୍ତମାନ ଥାଏ। ତାହାର ବିକାଶ ବିଭିନ୍ନଭାବରେ।

ସତୀଶ ଭାଇ—ତା'ହେଲେ ମିଥ୍ୟା ବୋଲି କ'ଣ କୌଣସି ଜିନିଷ ନାହିଁ ?

ଶ୍ରୀଶ୍ରୀପିତୃଦେବ—ଠାକୁର 'ସତ୍ୟ'ର ଯେ ସଂଜ୍ଞା ଦେଇଛନ୍ତି ତାର ଓଲଟା ଟା 'ଅସତ୍ୟ'ର ସଂଜ୍ଞା। (ଯେପରି ଯା'ର ଅସ୍ତିତ୍ୱ ନାହିଁ ଏବଂ ତାର ବିକାଶ ନାହିଁ, ତାହା-ଇ

ଅସତ୍ୟ)।

ସତ୍ୟାନୁସରଣ ପାଠ ପରେ 'ତପୋବିଧାୟନା' (୧ମ ଖଣ୍ଡ ବାଣୀ ନଂ ୧୫୩) ପାଠ କରୁଛନ୍ତି ପଣ୍ଡିତ ଭାଇ।

''ତୁମର ଅନୁଚର୍ଯ୍ୟା
ବାକ୍ୟ, କର୍ମ ଓ ବ୍ୟବହାରର ସୁସଂଗତି
ଯେତେ ହିଁ ଇଷ୍ଟାର୍ଥ-ପ୍ରତିଷ୍ଠ ହୋଇଉଠିବ—
କୁଶଳ-କୌଶଳୀ ଦକ୍ଷତା ଦେଇ,—
ତୁମର ଜୀବନରେ
ସୁଯୋଗ ଓ ସୁବିଧାର କ୍ଷେତ୍ର ବି
ସେହିପରି ହିଁ ଉନ୍ମୁକ୍ତ ହେଉଥିବ।''

ବାଣୀଟିର ଅର୍ଥ ବୁଝିବାରେ କାହାର କୌଣସି ଅସୁବିଧା ନ ଥିବାରୁ ଏବେ ପରବର୍ତ୍ତୀ ବାଣୀଟି ପାଠ ହେଲା—

''ତୁମେ ଅଚ୍ୟୁତ ଇଷ୍ଟାର୍ଥପରାୟଣ ହୁଅ,
ତୁମର ବାକ୍ୟ, ବ୍ୟବହାର ଓ ସତ୍କର୍ମ ଚଳନ
ସେହି ଇଷ୍ଟାର୍ଥ-ଉଜ୍ଜ୍ୱଳତାରେ
ଦୀପ୍ତ ହୋଇଉଠୁ,
ତୁମର ଜଳଦ-ଗମ୍ଭୀର ଆହ୍ୱାନ
ଆଉ, ସେହି ଅବାଧ୍ୟ ଏକମୁଖୀ ଚଳନ
ଅଚଳକୁ ବି ଚଳାୟମାନ କରିତୋଳି ପାରିବ।''

ବାଣୀ ମଧ୍ୟରେ 'ଅବାଧ୍ୟ' କଥାଟିକୁ ନେଇ ପ୍ରଶ୍ନ କଲେ ସତୀଶ ଭାଇ। —ଅନେକ ପିଲା ମା-ବାପଙ୍କ କଥା ନ ଶୁଣି' ଫୁଟ୍‌ବଲ ଖେଳନ୍ତି ; ସେତେବେଳେ ଆମେ ତାଙ୍କୁ ଅବାଧ୍ୟ କହୁ। ଏ କ୍ଷେତ୍ରରେ 'ଅବାଧ୍ୟ' କେଉଁ ଅର୍ଥରେ ଧରିବୁ ?

ଶ୍ରୀଶ୍ରୀପିତୃଦେବ—କେଉଁ ଅର୍ଥ ମାନେ ?

ସତୀଶ ଭାଇ—କୌଣସି ପିଲା ଯେତେବେଳେ ମା-ବାପଙ୍କ କଥା ନ ଶୁଣି ଏକମୁଖୀ ଚଳନରେ ଚାଲେ—କାହାରି କଥା ବି ଶୁଣେନା, ସେତେବେଳେ ତ ସେ ଅବାଧ୍ୟ ହୁଏ !

ଶ୍ରୀଶ୍ରୀପିତୃଦେବ—ମା-ବାପଙ୍କର କଥା ନ ଶୁଣି ଚଳିବାଟା, 'ଏକମୁଖୀ ଚଳନ' ହେଲା କିପରି ?

ବିଷୟଟି ପରିଷ୍କାର କରି ଶ୍ରୀଶ୍ରୀପିତୃଦେବ କହିଲେ—ଇଷ୍ଟାର୍ଥପରାୟଣତାରେ ଜେଦୀ ହେବା-ହିଁ ଏକମୁଖୀ ଚଳନ। ଏ-ପ୍ରକାର ଏକମୁଖୀ ଚଳନର କଥା-ହିଁ ଠାକୁର ଏଠାରେ କହିଛନ୍ତି। ଦୃଢ଼ ସଂକଳ୍ପ ନେଇ ତାଙ୍କ ପଥରେ ଆଗେଇ ଚାଲିବା ହିଁ 'ଅବାଧ୍ୟ ଏକମୁଖୀ ଚଳନ'।

ପରବର୍ତ୍ତୀ ବାଣୀଟି—

''ଆତ୍ମସ୍ଥ ହୁଅ ମାନେ
ଚଳନରେ ଥାଅ
ଇଷ୍ଟାର୍ଥରେ ଅଚ୍ୟୁତ ହୋଇ,.......
ଯେଉଁମାନେ ଇଷ୍ଟାର୍ଥୀ ବା ପ୍ରେୟର୍ଥୀ ହୋଇ ପାରନ୍ତି ନି,—
ସେମାନେ ଆତ୍ମସ୍ଥ ବି ହୋଇ ପାରନ୍ତି ନି,
ଆତ୍ମାରାମ ବି ହୋଇ ପାରନ୍ତି ନି।''

ବାଣୀଟି ମଧ୍ୟରେ 'ଆତ୍ମାରାମ' ଶବ୍ଦଟି ନେଇ କଥା ଉଠିଲା।

ଶ୍ରୀଶ୍ରୀପିତୃଦେବ—ରାମ ହିଁ ଯାହାର ଆତ୍ମା। ରାମକୁ ଯେ ଆତ୍ମା ମନେକରେ। ଆତ୍ମା ହେଉଛି ପରମାତ୍ମାର ଅଂଶ, ଆଉ ରାମ ହେଉଛନ୍ତି ପରମାତ୍ମା।

ଉପସ୍ଥିତ ଲୋକମାନଙ୍କ ମଧ୍ୟରେ ଜଣେ ଭାଇ 'ଆତ୍ମାରାମ' ସନ୍ଧି-ବିଚ୍ଛେଦ କଲେ। ଆତ୍ମା+ଆରାମ=ଆତ୍ମାରାମ,—ଏଥିରେ ଅନେକଙ୍କର ହିଁ ହସର ଉଦ୍ରେକ ହେଲା। ଆଉ ମଧ୍ୟ କେହି ଅନ୍ୟଭାବେ ବ୍ୟାଖ୍ୟା କଲେ।

ଶ୍ରୀଶ୍ରୀପିତୃଦେବ—ବେ-ଲାଇନ୍ କରି ରସିକତା କଲେ ପାଠର gravity (ଗୁରୁତ୍ୱ) ନଷ୍ଟ ହୋଇଯାଏ। ଲାଇନ୍‌ରେ ରହି ରସିକତା କଲେ କ୍ଷତି ନାହିଁ।

ତାପରେ ୧୫୬ ବାଣୀଟି ପାଠ ହେଲା—

''ଯାହା ହିଁ ହେଉ ନା
ଆଉ, ଯେପରି ଅବସ୍ଥାରେ ହିଁ ପଡ଼ନା,
ସର୍ବାବସ୍ଥାରେ
ଇଷ୍ଟାର୍ଥକୁ ମୁଖ୍ୟ କରି ଚାଳ—
ବାକ୍ୟରେ, ବ୍ୟବହାରରେ, କର୍ମରେ—
କୁଶଳ-କୌଶଳରେ,
ଯାହା-ହିଁ ଆସୁନା
ତାକୁ ଅତିକ୍ରମ କରି
ଅଭୀଷ୍ଟରେ ପହଞ୍ଚିବାର ପନ୍ଥା
ସୁଗମ ହୋଇଉଠିବ ତା'ହେଲେ।''

ବାଣୀଟିର ଆଲୋଚନା-ପ୍ରସଙ୍ଗେ ଶ୍ରୀଶ୍ରୀପିତୃଦେବ କହିଲେ,—'ଇଷ୍ଟାର୍ଥ' ଯଦି ମୁଁ ମୋର ଖିଆଲ-ଖୁସି ପରି କରିନିଏ ତାହେଲେ ତ ଗୋଳମାଳ। ମୁଁ ମୋର ନିଜ ଇଚ୍ଛାନୁସାରେ ଚାଲିଲେ ତ ଆଉ ଇଷ୍ଟାର୍ଥ ହୁଏ ନା। ସେ (ଠାକୁର) ଯେପରି-ଯେପରି କହିଛନ୍ତି, ଯେପରି କଲେ ଖୁସି ହୁଅନ୍ତି—ସେ ପ୍ରକାର କରିବା ହିଁ ଇଷ୍ଟାର୍ଥ। ସେଠାରେ ମୋର choice (ରୁଚି ବା ପସନ୍ଦ), ରାମର choice, ଶ୍ୟାମର ଯତ୍‌ସ୍ୟତ୍ ଦେଖିବା ଦରକାର ମୋର ଦରକାର ନାହିଁ—ମୁଁ ଏହିପରି ସହଜରେ ବୁଝେ।

ଜିତେନ୍ ଭାଇ—ସେ ଯାହା କହିଛନ୍ତି ତାହା ହିଁ କରିବି ଅନ୍ୟ କୌଣସି-କିଛି ଲକ୍ଷ୍ୟ

ନ କରି ।

ଶ୍ରୀଶ୍ରୀପିତୃଦେବ—ତୁମେ ହୁଏତ ଠାକୁରଙ୍କର କୌଣସି କାମରେ ଯାଉଛ । ରାସ୍ତାରେ ଦେଖିଲ ଗୋଟିଏ ପିଲା ଝୁଣ୍ଟି ପଡ଼ିଗଲା, ତାହେଲେ କ'ଣ ତାକୁ ଉଠାଇବ ନି ?

ଜିତେନ୍ ଭାଇ—ସେ କ୍ଷେତ୍ରରେ ସେହି ପିଲାଟିକୁ ଉଠାଇ ପୁଣି କାମକୁ ଯିବାକୁ ହେବ ।

ଶ୍ରୀଶ୍ରୀପିତୃଦେବ—ତା'ହେଲେ, ଯା' ଯା' କଲେ ଠାକୁର ଖୁସି ହୁଅନ୍ତି ତାହା-ହିଁ କରିବାକୁ ହେବ । ଇଷ୍ଟାର୍ଥକୁ ମୁଖ୍ୟ କରି ଚଳିବା ମାନେ-ହିଁ ତାହା ।

ଶ୍ରୀକଣ୍ଠ ଭାଇ—ଅନେକେ ହିଁ ଇଷ୍ଟଭୃତି କରନ୍ତି କିନ୍ତୁ ଇଚ୍ଛାନୁସାରେ ଯେଉଁଠାକୁ ଖୁସି ପଠାନ୍ତି ।

ଶ୍ରୀଶ୍ରୀପିତୃଦେବ—ନିଜର ଖିଆଲ-ଖୁସି ମାଫିକ୍ କଲେ ତ ହେବନି । ଇଷ୍ଟଭୃତି କିପରିଭାବେ କରିବାକୁ ହେବ, କେଉଁଠାକୁ ପଠାଇବାକୁ ହେବ ସବୁ ହିଁ ଠାକୁର କହି ଦେଇଛନ୍ତି । କେବଳ ତା ହିଁ ନୁହେଁ, କେଉଠାରେ କିପରି ଭାବେ ଜମା ଦେବାକୁ ହେବ ତା-ବି ଆମ୍ଭମାନଙ୍କୁ ଅଭ୍ୟାସ କରାଇଦେଇ ଯାଇଛନ୍ତି । (ଟିକିଏ ରହି ପୁନରାୟ କହିଲେ)—ଠାକୁର ସେଇ ଫିଲାନ୍‌ଥ୍ରପି ଅଫିସ୍ ତିଆରି ସମୟରେ ନିଜେ ଯାଇ ସେଠାରେ ବସୁଥିଲେ । ତାଙ୍କରି ନିର୍ଦ୍ଦେଶାନୁସାରେ ହିଁ ସେହି ଅଫିସ୍ ବିଲ୍‌ଡିଂ ଗଢ଼ିଉଠେ ।

ଏଥର ପ୍ରସଙ୍ଗାନ୍ତର ଘଟିଲା । ଆଶୁ ଭାଇ (ଭଟ୍ଟାଚାର୍ଯ୍ୟ) ଜଣେ ଭାଇଙ୍କୁ ନେଇ ଆସି ଜଣାଇଲେ, ଦୀକ୍ଷା ନେବେ ।

ଶ୍ରୀଶ୍ରୀପିତୃଦେବ—ଦେଇ ଦେ ଯା ।

ଜଣେ ମା' ତାଙ୍କ ରୋଗର କଥା ଜଣାଇବାରୁ ଶ୍ରୀଶ୍ରୀପିତୃଦେବ ପ୍ରତିବିଧାନ ଦେଲେ ।

ଏହାପରେ ନନ୍ଦଦୁଲାଳ ଭାଇ ଗରମ ପାଣି, ଦର୍ପଣ, ଗାମୁଛା ଇତ୍ୟାଦି ନେଇ ଆସିଲେ । ସତ୍ୟ ଭାଇ ଶ୍ରୀଶ୍ରୀପିତୃଦେବଙ୍କ ଦାଢ଼ି କାଟିବାକୁ ଲାଗିଲେ ।

ଜଣେ ଭାଇ ଖଡ଼ଗପୁରରେ ଆଇ, ଆଇ, ଟି-ରେ ଭର୍ତ୍ତି ପାଇଁ ଦୁଇଥର ପରୀକ୍ଷା ଦେଇଛନ୍ତି ; କିନ୍ତୁ chance (ଭର୍ତ୍ତିର ସୁଯୋଗ) ପାଇ ନାହାଁନ୍ତି । ଏଥର ପରୀକ୍ଷା ଦେବେ କି-ନା ଜାଣିବାକୁ ଚାହିଁଲେ ।

ଶ୍ରୀଶ୍ରୀପିତୃଦେବ—ଭଲକରି ପ୍ରସ୍ତୁତ ହୋଇ ଦିଅ, ଯେପରି ଏଥର chance (ଭର୍ତ୍ତିର ସୁଯୋଗ) ପାଇପାର ।

ପୁଣି ଇଷ୍ଟଭୃତିର ପ୍ରସଙ୍ଗ ଉଠିଲା ।

କ୍ଷିତୀଶ ଭାଇ—ଆଜିକାଲି ଅନେକେ ହିଁ ଇଷ୍ଟଭୃତି ପ୍ରସଙ୍ଗରେ ବହୁ ବିଭ୍ରାନ୍ତିକର ଆଲୋଚନା କରନ୍ତି ।

ଶ୍ରୀଶ୍ରୀପିତୃଦେବ—ବିଭ୍ରାନ୍ତ-ଟିଭ୍ରାନ୍ତ ସେସବୁ ବୁଝେନା । ଠାକୁର ଯା' କହିଛନ୍ତି ତା ହିଁ ଆମମାନଙ୍କର କରଣୀୟ ।

ଦେବୀ ଭାଇ—ମୋ ଖାତାରେ (ଦୀପରକ୍ଷୀ) ସବୁ clear (ପରିଷ୍କାର) କରି ଲେଖା ରହିଛି । ମଣିଲାଲ (ଚକ୍ରବର୍ତ୍ତୀ) ଲେଖା (ପ୍ରତୁଲଦୀପ୍ତି) ରେବି ରହିଛି ।

ଦୁଲାଳ ଭାଇ—ଆଜ୍ଞା, ମୋର ସ୍ପଷ୍ଟ ମନେଅଛି—ଇଷ୍ଟଭୃତି କେଉଁଠାକୁ ପଠାଇବାକୁ ହେବ। ଏହା ନେଇ କଥା ଉଠିବା ସଙ୍ଗେ-ସଙ୍ଗେ ଠାକୁର କହିଲେ—ବଡ଼ ଖୋକା ନାମରେ ପଠାଇବୁ। ଘରଭର୍ତ୍ତି ଲୋକଙ୍କ ସାମ୍ନାରେ ଠାକୁର ଏକଥା କହିଛନ୍ତି।

ପଣ୍ଡିତ ଭାଇ, କ୍ଷିତୀଶ ଭାଇ ପ୍ରଭୃତି ଦୁଲାଳ ଭାଇଙ୍କ କଥାରେ ସମ୍ମତି ଜଣାଇଲେ।

ସନ୍ଧ୍ୟା-କାଳୀନ ପ୍ରାର୍ଥନା ପରେ ଶ୍ରୀଶ୍ରୀପିତୃଦେବ ଭକ୍ତଜନ ସମଭିବ୍ୟାହାରେ ବଡ଼ ନାଟମଣ୍ଡପରେ ଉପବିଷ୍ଟ।

ଗୌହାଟିର ଜଣେ ଭାଇ ଆସି ପ୍ରଣାମ କଲେ। ସେ ବର୍ତ୍ତମାନ ଆସିଛନ୍ତି। ଶ୍ରୀଶ୍ରୀପିତୃଦେବ ତାଙ୍କୁ ଗୌହାଟିର ଖବର ଜିଜ୍ଞାସା କରିଲେ।

ନନୀ ଭାଇ (ଦେ) ଜଣାଇଲେ, ଦେହ ଖରାପ; କିଛି ହିଁ ଖାଇ ପାରନ୍ତି ନି। ଶ୍ରୀଶ୍ରୀପିତୃଦେବ ଔଷଧ କହିଦେଲେ ଓ ଝୋଳ-ଭାତ ଖାଇବାକୁ କହିଲେ। ଶାଗ, ରାଗ, ଖଟା ଇତ୍ୟାଦି ଖାଇବାକୁ ନିଷେଧ କଲେ।

ଶ୍ରୀକଣ୍ଠ ଭାଇ ସାମନାରେ ବସିଥିଲେ। ଶ୍ରୀଶ୍ରୀପିତୃଦେବ ଜିଜ୍ଞାସା କଲେ—ଚକ୍ରତୀର୍ଥର କ'ଣ ହେଲା? (ପଶ୍ଚିମବଙ୍ଗର ଯେଉଁଠାରେ ଶ୍ରୀଶ୍ରୀଠାକୁରଙ୍କର ଭାବସମାଧି ହୋଇଥିଲା)। ସାଇନ୍-ବୋର୍ଡ-ଟୋର୍ଡ ଦିଆ ଅଛି ନା କ'ଣ?

ଶ୍ରୀକଣ୍ଠ ଭାଇ—ଆଜ୍ଞା, ଏପର୍ଯ୍ୟନ୍ତ କୌଣସି ସାଇନ୍‌ବୋର୍ଡ ଦିଆ ହୋଇନି।

ଶ୍ରୀଶ୍ରୀପିତୃଦେବ—ଲାଗି ରହିଥିଲେ ସେଠାରେ ଏତେଦିନେ କିଛି ଗୋଟିଏ ହୋଇ ଯାଇଥା'ନ୍ତା। ଲାଗି ରହୁନା କାହିଁକି?

ଶ୍ରୀକଣ୍ଠ ଭାଇ—ଏବେ ଚିଠି-ପତ୍ରରେ ଯୋଗାଯୋଗ ହେଉଛି। ତାପରେ ଧାନ ଉଠିଲେ ସଂଗ୍ରହ ପାଇଁ ବାହାରିବୁ।

ଶ୍ରୀଶ୍ରୀପିତୃଦେବ—ଠାକୁରଙ୍କ ଧାନ ସବୁ ସମୟରେ ହିଁ ଉଠେ। ତୋଳିନେବାକୁ ହୁଏ। ଏତେଦିନ ଲାଗି ରହିଥିଲେ କାମ ଶେଷ ହୋଇ ଯାଆନ୍ତାଣି। ଖାଲି ବସି-ବସି ରହିଲେ କ'ଣ ହୁଏ? ଏଥରକ ଶେଷ କରି ତେବେ ଯାଇ ଅନ୍ୟ କଥା। କଥା ବୁଝୁଛୁ? ଗୋଟିଏ ଇଟାଘର ଅନ୍ତତଃ କରିବା ଦରକାର।

କିଛି ସମୟ ପରେ ଅମୂଲ୍ୟ ଭାଇ (ରାୟ) ଜଣେ ଭାଇକୁ ନେଇ ଆସି ପ୍ରଣାମ କଲେ। ଜଣାଇଲେ, ଏଇ ଭାଇ କଲିକତା ସେକ୍ରେଟେରିଏଟ୍‌ର ସ୍ୱାସ୍ଥ୍ୟ ଦପ୍ତରରେ କାମ କରନ୍ତି। ଦୀକ୍ଷା ନେବାକୁ ଚାହାନ୍ତି। ୬ ମାସ ଆଗେ ମା'ଙ୍କର ସ୍ୱର୍ଗବାସ ହୋଇଛି, ଦୀକ୍ଷା ନେବା ଚଳିବ କି ନା ଜାଣିବାକୁ ଚାହାନ୍ତି।

ଶ୍ରୀଶ୍ରୀପିତୃଦେବ ଦୀକ୍ଷା ଦେବା ପାଇଁ ନିର୍ଦ୍ଦେଶ ଦେଲେ।

ତନୁ ଭାଇ (ନିଖିଳ ଘଟକ) ଓ ପ୍ରଭାତ ଭାଇ (ଚକ୍ରବର୍ତ୍ତୀ) ଏକାସାଙ୍ଗରେ ଆସି ଶ୍ରୀଶ୍ରୀପିତୃଦେବଙ୍କୁ ପ୍ରଣାମ କଲେ। ତନୁ ଭାଇଙ୍କୁ ପାଖକୁ ଡାକି ସେ କହିଲେ —ଆ, କେଉଁଠାକୁ ଗଲୁ, କ'ଣ-କ'ଣ କଲୁ—ଗଳ୍ପ କର, ଶୁଣେ।

ତନୁଦା କିଛିଦିନ ହେଲା ଆଶ୍ରମରେ ନ ଥିଲେ। ସେ ବାହାରେ ବିଭିନ୍ନ ଜାଗା ବୁଲି

ସତ୍‌ସଙ୍ଗ, ଦୀକ୍ଷା ଇତ୍ୟାଦି—ଯା' ଯା' ହୋଇଛି ସବୁ ସବିସ୍ତାର ବ୍ୟକ୍ତ କରି ଚାଲିଛନ୍ତି। ଶ୍ରୀଶ୍ରୀପିତୃଦେବ ଗଭୀର ଆଗ୍ରହରେ ସେସବୁ କାହାଣୀ ଶୁଣୁଛନ୍ତି। କଥା-ଶେଷରେ ତନୁଦା ପ୍ରାର୍ଥନା ଜଣାଇଲେ—ଆଜ୍ଞା, ମୋର ଇଚ୍ଛା ଯେପରି ଗୀତ ମାଧ୍ୟମରେ 'ତାଙ୍କୁ' ପାଏ।

ଶ୍ରୀଶ୍ରୀପିତୃଦେବ—ଗୀତ ଗାଇବା ମାଧ୍ୟମରେ ମଧ୍ୟ ତାଙ୍କୁ ପାଇହୁଏ। ଯେଉଁମାନେ କେବଳ ତାଙ୍କୁ ହିଁ ଗୀତ ଶୁଣାନ୍ତି ଏବଂ ପ୍ରସାଦ ହିସାବରେ ଅନ୍ୟାମାନଙ୍କୁ ତା' ବିତରଣ କରନ୍ତି, ସେମାନେ ତାଙ୍କୁ ଗୀତ ମାଧ୍ୟମରେ ପାଆନ୍ତି। ଏହା ବଡ଼ କଠିନ ଜିନିଷ— ତପସ୍ୟାର ଦରକାର। ବିଜୟକୃଷ୍ଣ ଗୋସ୍ୱାମୀଙ୍କୁ ଗୀତ ଶୁଣାଇଥିଲେ ରେବତୀ ସେନ୍। ତାଙ୍କ ଗୀତ ଖୁବ୍ ଭଲ ଥିଲା। ତାଙ୍କ କଥା ଦିଲୀପ କୁମାର (ରାୟ) ଙ୍କ ବହିରେ ପଢ଼ିଛି। ଥରେ ରେବତୀ ସେନଙ୍କୁ ଗୀତ ଶୁଣାଇବାକୁ କହିଲେ ଦିଲୀପ କୁମାର। ରେବତୀ ସେନ୍ ବିନୀତଭାବରେ ଉତ୍ତର ଦେଲେ—ମୁଁ ତ ଗୀତ ବୋଲେ ନା। କେବଳ ତାଙ୍କୁ ଶୁଣାଏଁ। ତାଙ୍କ ପାଇଁ ହିଁ ବୋଲେ।

ଏହାପରେ ଶ୍ରୀଶ୍ରୀପିତୃଦେବଙ୍କ ନିର୍ଦ୍ଦେଶରେ ତନୁଦା ଗୀତ ଆରମ୍ଭ କଲେ।

## ମଙ୍ଗଳବାର, ୧୮-କାର୍ତ୍ତିକ, ୧୩୮୨ (ଇଂ ୪/୧୧/୭୫)

ପ୍ରାର୍ଥନା ପରେ ଶ୍ରୀଶ୍ରୀପିତୃଦେବ ବଡ଼ ନାଟମଣ୍ଡପରେ ଉପବେଶନ କରିଛନ୍ତି। ଉପସ୍ଥିତ ଅଛନ୍ତି, ମା ଓ ଛୋଟବଡ଼ ଭାଇ-ଭଉଣୀମାନେ।

ନନ୍ଦଦୁଲାଳ ଭାଇ ଶ୍ରୀଶ୍ରୀପିତୃଦେବଙ୍କ ପାଦରେ ବୋରେଲୀନ ମାଲିଶ କରି ଦେଉଛନ୍ତି। ଦୁଲାଳ ମଜୁମଦାର ଭାଇ ଶ୍ରୀଶ୍ରୀପିତୃଦେବଙ୍କୁ ବଙ୍ଗଳାଦେଶର ବର୍ତ୍ତମାନ ପରିସ୍ଥିତିର କଥା ଶୁଣାଉଛନ୍ତି। ଶ୍ରୀଶ୍ରୀପିତୃଦେବ ଆଗ୍ରହ ସହକାରେ ଶୁଣିବାକୁ ଲାଗିଛନ୍ତି।

ଏହାପରେ ସତ୍ୟାନୁସରଣ ପାଠ ଆରମ୍ଭ ହେଲା—

"ଯାହା ଧାରଣା କରିବାକୁ ଯାଇ ମନର ନିଜତ୍ୱ ଅକ୍ଷୁଣ୍ଣ ରହେ—ତାହା ହିଁ ସସୀମ।"

ପ୍ରଶ୍ନ ଉଠାଇଲେ ସତୀଶ ପାଲ—ଯା'ର ଧାରଣା କରିବାରେ ମନର ନିଜତ୍ୱ ଅକ୍ଷୁଣ୍ଣ ରହେ ସେ-ଟି କି ପ୍ରକାର ଜିନିଷ ? ମୋ ସାମନାରେ ଗୋଟାଏ ଜିନିଷ ଦେଖି ମନେହେଲା କାଠ, ତା' ପରେ ଦେଖିଲି ହିଁ କାଠଇ, ଅନ୍ୟ ଜିନିଷ ନୁହେଁ। ଏଥିରେ ମନର ନିଜତ୍ୱ ଅକ୍ଷୁଣ୍ଣ ରହିଲା,—ଏ-ପ୍ରକାର ନା କ'ଣ ?

ଶ୍ରୀଶ୍ରୀପିତୃଦେବ—ଏ ରକମ ଉଦାହରଣ ଦେଲୁ କାହିଁକି ? ପରମେଶ୍ୱର କହ।

ପରମେଶ୍ୱର ଭାଇ—ଆମମାନଙ୍କର, ମନର ଚିନ୍ତା, ଭାବନା, କଳ୍ପନାର ଜିନିଷ ନିଜତ୍ୱ ଅକ୍ଷୁଣ୍ଣ ଥାଏ। ପୁଣି କଳ୍ପନାରେ ମିଳେନା ଏପରି ଜିନିଷ ଯଦି ଦେଖେ ତା'ହେଲେ ମନର ନିଜତ୍ୱ ରହେ ନା। ଯେପରି, ଯେତେବେଳେ କୁହେ ଆଲୋକର ଗତିବେଗ ଏକ ସେକେଣ୍ଡରେ ଏକ ଲକ୍ଷ ଛୟାଅଶି ହଜାର ମାଇଲ, କିମ୍ବା ଯଦି କୁହେ ଏକଶତ କୋଟି ଆଲୋକବର୍ଷ—ଏ-ସବୁ ଆମ୍ଭେମାନେ ଚିନ୍ତା ବି କରି ପାରୁନା।

ଶ୍ରୀଶ୍ରୀପିତୃଦେବ ସମ୍ମତି ଜଣାଇ କହିଲେ—ଆମେ ଘର ଚିହ୍ନୁ, ବାଡ଼ି, ନୌକା, ନଦୀ ଏସବୁ ଚିହ୍ନୁ। ଏଗୁଡ଼ିକୁ ଚିନ୍ତା କରିବା ପାଇଁ କୌଣସି ଅସୁବିଧା ହୁଏନା। ଯେ ପର୍ଯ୍ୟନ୍ତ

ନଦୀକୂଳରେ ଠିଆହୁଏ ସେ ପର୍ଯ୍ୟନ୍ତ ନୌକା, ଢେଉ ଇତ୍ୟାଦି ଦେଖାଯାଏ—ମନର ନିଜତ୍ୱ ଅକ୍ଷୁଣ୍ଣ ଥାଏ। ତା'ପରେ ଯାଉ-ଯାଉ ଏପରି ଗୋଟିଏ ଜାଗାରେ ପହଞ୍ଚିଲି ଯେଉଁଠି ଜଳର ଶେଷ ନାହିଁ-କୂଳ ଦେଖାଯାଏ ନା, ତାପରେ କ'ଣ ? ତାପରେ କ'ଣ ? କିଛି ହିଁ ବୁଝିପାରେ ନା। ଅନନ୍ତ ଅସୀମ ମଧ୍ୟରେ ନିଜକୁ ହରାଇପକାଏ। ପୁଣି ଅନ୍ୟଭାବରେ ଦେଖ, ଜଳ ବାଷ୍ପ ହୋଇଯାଏ, ତା' ଲକ୍ଷ୍ୟ କରେ ନା। ମେଘ ହୋଇ ଯେତେବେଳେ ବୃଷ୍ଟିରୂପରେ ପଡ଼େ ସେତେବେଳେ ଲକ୍ଷ୍ୟ ପଡ଼େ। ବାଷ୍ପ ଅନନ୍ତ ଆକାଶରେ ସ୍ଥାନ ପାଏ।

ଶ୍ରୀଶ୍ରୀପିତୃଦେବ—ବୁଝାଗଲା ତ ?

ଉପସ୍ଥିତ ସମସ୍ତେ ସମ୍ମତି ଜଣାଇବା ପରେ ପର ବାଣୀଟି ପାଠ ହେଲା।

"ଯାହା ଧାରଣା କରିବାକୁ ଯାଇ ମନ ନିଜତ୍ୱ ହରାଇ ବସେ—ତାହା ହିଁ ଅନନ୍ତ ବା ଅସୀମ! ଶାନ୍ତି! ଶାନ୍ତି! ଶାନ୍ତି!"

ଉପସ୍ଥିତ ସମସ୍ତଙ୍କ ଆଡ଼େ ଚାହିଁ ଶ୍ରୀଶ୍ରୀପିତୃଦେବ କହିଲେ—ସବୁ ବୁଝାଗଲା ?

ସମସ୍ତେ ସମ୍ମତିସୂଚକ ଉତ୍ତର ଜଣାଇବାରୁ ଶ୍ରୀଶ୍ରୀପିତୃଦେବ କହିଲେ—"ଶାନ୍ତି ! ଶାନ୍ତି ! ଶାନ୍ତି !" —ତ ବୁଝାଗଲା ନି।

ସତୀଶ ଭାଇ—ପାଠ କରିଲୁ, ଫଳରେ ଆମମାନଙ୍କର ଶାନ୍ତି—ସ୍ୱସ୍ତି ଆସିଲା।

ଶ୍ରୀଶ୍ରୀପିତୃଦେବ—ପାଠ କରି ହିଁ ଆମମାନଙ୍କର ଶାନ୍ତି-ସ୍ୱସ୍ତି ଆସିଲା ତା ତ ହୁଏ ନା। ସହଜଭାବରେ ଅର୍ଥ କରା ଯାଏନା ?

ଜିତେନ୍ ଭାଇ—ଶ୍ରୀଶ୍ରୀଠାକୁର ଶାନ୍ତି ସମ୍ବନ୍ଧରେ କହିଛନ୍ତି—

"ଶାନ୍ତି ମାନେ ନିଥର ହୋଇ
ଅଳସ ଅବଶ ନାଇଁରେ ହେବା,
ସୁଧୀବୀକ୍ଷଣେ ସୁଚର୍ଯ୍ୟାରେ
ସୁନିଷ୍ପାଦନେ କରିଯିବା।"

ଶ୍ରୀଶ୍ରୀପିତୃଦେବ—'କରିବା ହିଁ ପାଇବାର ଜନନୀ।' କର, ତାଙ୍କ ପଥରେ ଚାଲିଲେ ହିଁ ଶାନ୍ତି ଆସିବ। ସ୍ମରଣ, ମନନ, ନିଦିଧ୍ୟାସନ—ଏଗୁଡ଼ିକ ପାଳନ କର ; ଠାକୁର କହିଛନ୍ତି—ତୁମେ ନିଶ୍ଚୟ ଶାନ୍ତି ପାଇବ, ପାଇବ, ପାଇବ।

ପଣ୍ଡିତ ଭାଇ—ଅସୀମକୁ ଗଲେ ହୃଦୟ-ଗ୍ରନ୍ଥିର ମୋଚନ ହୁଏ।

ଶ୍ରୀଶ୍ରୀପିତୃଦେବ—ହଁ। ସେତେବେଳେ Complex ଗୁଡ଼ିକ ନିଜତ୍ୱ ହରାଇପକାଏ। ଧର କେହି ଠାକୁର-ଦର୍ଶନ କରିବାକୁ ଆସି, ଠାକୁରଙ୍କ ନିକଟରେ କେତେଜଣ ମହିଳାଙ୍କୁ ଦେଖି ନିଜ ମନମୁଖୀ ଧାରଣା କରିନେଲା। କିନ୍ତୁ ଯେତେବେଳେ ସେ ଭାବିଲା ସବୁ ଝିଅ ହିଁ ତ ମା, ସେତେବେଳେ ତା'ର ସେଇ Complex ଆଉ ପ୍ରଶ୍ରୟ ପାଇଲାନି। ଠାକୁରଙ୍କ ପ୍ରତି ବି ତାର ବିଶ୍ୱାସ, ଭକ୍ତି ବଢ଼ିଗଲା।

ଏହାପରେ 'ତପୋ-ବିଧାୟନା' (୧ମ ଖଣ୍ଡ) ର ୧୫୬ ନଂ ବାଣୀ ପଣ୍ଡିତ ଭାଇ ପାଠ କଲେ।

''ଉର୍ଜ୍ଜୀ ସମ୍ବେଗରେ
ଇଷ୍ଟାର୍ଥପରାୟଣ ହୁଅ—
ସ୍ମରଣରେ ସମୃଦ୍ଧ ରହି,
ଆଉ, ସେ-ହିଁ ତୁମର ସ୍ୱାର୍ଥ ହୋଇଉଠନ୍ତୁ
ସର୍ବତୋଭାବରେ,
ଶକ୍ତି ଆପେ ଆପେ ହିଁ ଫୁଟନ୍ତ ହୋଇଉଠିବ—
ସୁସଙ୍ଗତ ବୋଧି-ତାତ୍ପର୍ଯ୍ୟ ନେଇ,
ଆଉ, ଏହାର ଯେତିକି ସ୍ୱଳ୍ପତା
କମ୍ ବି ହେବ ସେହିପରି।''

କାହାରି କିଛି ପ୍ରଶ୍ନ ନ ଥିବାରୁ ପରବର୍ତ୍ତୀ ବାଣୀ ପାଠ ହେଉଛି—

''ତୁମର ଗୁଣରାଜି
ଇଷ୍ଟାର୍ଥରେ କେନ୍ଦ୍ରାୟିତ ହୋଇ
ଉପଚୟୀ ସୂତ୍ରରେ ସୁସଙ୍ଗତି-ସହିତ
ବିନ୍ୟସ୍ତ ହୋଇଉଠୁ,—
ସୌନ୍ଦର୍ଯ୍ୟରେ ସଂହତ ହୋଇଉଠିବ;
ଯେ-ମୁକ୍ତାଗୁଡ଼ିକୁ
ସଙ୍ଗତିସୂତ୍ରରେ ନିବଦ୍ଧ କରି
ସୌଷ୍ଠବରେ ଅନ୍ୱିତ କରିତୋଳି ହୁଏ ନା,
ବୈଦ୍ୟମାନେ କିନ୍ତୁ ସେଗୁଡ଼ିକୁ
ଭସ୍ମରେ ପରିଣତ କରି
ରୋଗ ନିରାକରଣୀ ଔଷଧରୂପରେ ବ୍ୟବହାର କରନ୍ତି।''

ସତୀଶ ଭାଇ—ଏଇ ବାଣୀରେ ବୈଦ୍ୟ ସହିତ କ'ଣ ଶ୍ରୀଶ୍ରୀଠାକୁରଙ୍କର ତୁଳନା କରାହେଉଛି ?

ହରିପଦ ଭାଇ—ମୋର ଯେ ଅବଗୁଣ ଅଛି, ସେଗୁଡ଼ିକ ଭସ୍ମ କରି ମୋର କାମରେ ଲଗାଉଛନ୍ତି ମୋର ଇଷ୍ଟ।

ସତୀଶ ଭାଇ—ଯେପରି, ମୁଁ ଖୁବ୍ ଅର୍ଥଲୋଭୀ। ଠାକୁର ମୋତେ ଟଙ୍କା ପଇସାର ହିସାବ ରଖିବାକୁ ଦେଲେ। ଏହା ଫଳରେ ମୋର ଟଙ୍କା ପ୍ରତି ମୋହ କମିଗଲା। —ଏପରି ନା କ'ଣ ?

ଶ୍ରୀଶ୍ରୀପିତୃଦେବ—ଆହୁରି ଅନେକ ପ୍ରକାର ହୋଇପାରେ। ମୋର କ'ଣ ଦୋଷ-ଗୁଣ ଅଛି ତା ମୁଁ ଜାଣେନା। ସେ ସବୁ ଜାଣନ୍ତି। ସେ ଦୟାକରି ମୋର ଅବଗୁଣଗୁଡ଼ିକ ଅପସାରଣ କରି ପରିଶୁଦ୍ଧ କରନ୍ତି।

'ତପୋ-ବିଧାୟନା' ପାଠ ଶେଷ ହେଲା।

ଶ୍ରୀଶ୍ରୀପିତୃଦେବଙ୍କର ଦାଢ଼ି କାଟିବା ପାଇଁ ସତ୍ୟ ପ୍ରମାଣିକ ଭାଇ ଆସିଲେ। କିଛି ସମୟ ପରେ ପୂଜନୀୟ ସେଜଦା (ଶ୍ରୀଯୁକ୍ତ ଅମଲ କୁମାର ଚକ୍ରବର୍ତ୍ତୀ) ପ୍ରଣାମ କରିବାକୁ ଆସିଲେ ; ବର୍ତ୍ତମାନ କଲିକତା ଅଭିମୁଖରେ ଯାତ୍ରା କରିବେ।

ଶ୍ରୀଶ୍ରୀପିତୃଦେବ—ଭଲ ଜାଗା ମିଳୁଥିଲାନ୍ତ କି ନା, ଦେଖିବୁ।

ଡା: ପ୍ରଶାନ୍ତ ଭାଇଙ୍କୁ ଜିଜ୍ଞାସା କଲେ—ଫୁଲକୋବିରେ ବାତ ହୁଏ ନା କ'ଣ ?

ପ୍ରଶାନ୍ତ ଭାଇ—ଆଜ୍ଞା, ହଁ।

ଶ୍ରୀଶ୍ରୀପିତୃଦେବ—ସେଇଥିପାଇଁ ଭଲକରି ଭାଜି ନେବାକୁ ହୁଏ। ତା'ହେଲେ ଆଉ ତା' ହୁଏନା।

ପୂଜନୀୟ ସେଜଦା ଉଠିଲେ।

ଜଣେ ଭାଇ, ଘର ବସିରହାଟ (ପଶ୍ଚିମବଙ୍ଗ), ଶିକ୍ଷକ, ଏମ୍.କମ୍. ପାଶ୍। ପାଦରେ ଏକ୍‌ଜିମା ବହୁଦିନରୁ। ଔଷଧ ବ୍ୟବହାର କରୁଛନ୍ତି। କିନ୍ତୁ ଏବେ ବି ଶରୀର ଓ ମନରେ ସୁସ୍ଥ ନୁହଁନ୍ତି। ଉପରୁ ଛାଡ଼ି ଯାଇଛି, କିନ୍ତୁ ଭିତରେ ଏବେ ବି ଅଛି ବୋଲି ମନେହୁଏ। ଡାକ୍ତର continuous (ଅବିରାମ) ଚିକିତ୍ସା କରିବା ପାଇଁ କହିଛନ୍ତି। ସବୁ ଶୁଣି ଶ୍ରୀଶ୍ରୀପିତୃଦେବ କହିଲେ—Diet control କରି ଚଳିବାକୁ ହେବ। ପାଞ୍ଚ ବର୍ଷ ଔଷଧ ବ୍ୟବହାର କରିବା ମାନେ ତ ଅନେକ ଦିନ! Diet control, ଆଉ ତା ସହିତ ଲୁଣ, ମିଠା ବାଦ୍‌ଦେଲେ କମ୍ ଦିନ ମଧ୍ୟରେ ଆରୋଗ୍ୟ ହେବ। ପ୍ରଶାନ୍ତକୁ କୁହାଅଛି। କିପରିଭାବେ ଚଳିବାକୁ ହେବ ତା ନିକଟରୁ ଶୁଣିନିଅ।

ସଂଧ୍ୟା-ବିନତି ପରେ ଶ୍ରୀଶ୍ରୀପିତୃଦେବ ବଡ଼-ନାଟମଣ୍ଡପରେ ସମାସୀନ। ପ୍ରଫୁଲ୍ଲ କୁମାର ଦାସ, ସତୁ ସାନ୍ୟାଲ, ଗୁରୁପ୍ରସନ୍ନ ଭଟ୍ଟାଚାର୍ଯ୍ୟ, ଅଜୟ କୁମାର ଗାଙ୍ଗୁଲୀ, ହରିପଦ ଦାସ, ପରେଶ ଚନ୍ଦ୍ର ଭୋରା, ଯାମିନୀ ରାୟଚୌଧୁରୀ, ଦୁଲାଲ ମଜୁମଦାର, ଜିତେନ ଦେବବର୍ମଣ, ପରମେଶ୍ୱର ପାଲ, ପ୍ରଶାନ୍ତ ବରା, ଗୌର ମଣ୍ଡଳ ପ୍ରଭୃତି ଉପସ୍ଥିତ ଅଛନ୍ତି।

ଦେଓଘର କଲେଜର ଅଧ୍ୟାପକ ବିନୋଦାନନ୍ଦ ଝା ଜଣେ ଅବସରପ୍ରାପ୍ତ ଜଜ୍‌ଙ୍କୁ ସାଙ୍ଗରେ ଆଣି ଶ୍ରୀଶ୍ରୀପିତୃଦେବଙ୍କ ସଙ୍ଗେ ଆଳାପ କରାଇଦେଲେ। ଅଳାପ ଶେଷହେବା ପରେ ଶ୍ରୀଶ୍ରୀପିତୃଦେବ ଉକ୍ତ ଜଜ୍‌ଙ୍କୁ ଆଶ୍ରମର ସବୁ ଜିନିଷ ଦେଖାଇ ଦେବାପାଇଁ ବିନୋଦାନନ୍ଦ ଭାଇଙ୍କୁ ନିର୍ଦ୍ଦେଶ ଦେଲେ।

ଶ୍ରୀଯୁକ୍ତ ଧ୍ୟାନେଶ ନାରାୟଣ ଚକ୍ରବର୍ତ୍ତୀ ଆଶ୍ରମ ପରିଦର୍ଶନ କରିବାକୁ ଆସି ଯେଉଁ statement (ଲିଖିତ ବିବୃତି) ଦେଇଛନ୍ତି ପରମେଶ୍ୱର ଭାଇ ତା ପଢ଼ି ଶୁଣାଇଲେ।

"ପରିଜନୈଃ ସାର୍ଦ୍ଧଂ ପ୍ରଦର୍ଶଶାଳା ମିମାଂ ଦୃଷ୍ଟ୍ୱା ସର୍ବେବୟଂ ସନ୍ତୃପ୍ତା କୃତକୃତ୍ୟାଶ୍ଚ। ଶ୍ରୀଶ୍ରୀପୁରୁଷୋତ୍ତମସ୍ୟ ସ୍ମାରକଦ୍ରବ୍ୟାଣି ପବିତ୍ରଂ ଭାବପରିମଣ୍ଡଳମତ୍ରା ଅନୁଭାରୟନ୍ତି। ତସ୍ୟ ମହାତ୍ମନଃ ସ୍ମୃତିରସ୍ମାନ୍ ସର୍ବାନ୍ ଶୁଭୟା ବୁଦ୍ଧ୍ୟା ସଂଯୁନକ୍ତୁ। ନବଭାରତସ୍ୟ ତଥା ବିଶ୍ୱସ୍ୟ ନବୀନ-ତୀର୍ଥମିବଂ ପୁରୁଷୋତ୍ତମକ୍ଷେତ୍ରଂ ଶ୍ରଦ୍ଧୟା ବନ୍ଦାମଃ। ଇତି ଶମ୍।"

(ପରିଜନମାନଙ୍କ ସହିତ ସ୍ମୃତିରକ୍ଷଣାଗାର ଦେଖି ଆମେ ସମସ୍ତେ ତୃପ୍ତ ଓ ଧନ୍ୟ ହୋଇଅଛୁ। ଶ୍ରୀଶ୍ରୀପୁରୁଷୋତ୍ତମଙ୍କ ଏଇ ସ୍ମାରକଦ୍ରବ୍ୟସମୂହ ଏଠାରେ ଗୋଟିଏ ପବିତ୍ର ପରିବେଶ ସୃଷ୍ଟି କରିଛି। ସେଇ ମହାତ୍ମାଙ୍କ ସ୍ମୃତି ଆମ ସମସ୍ତଙ୍କୁ ଶୁଭ ବୁଦ୍ଧିରେ ଅଭିଷିକ୍ତ

କରୁ। ନବଭାରତ ତଥା ବିଶ୍ୱର ଏଇ ନବୀନ ତୀର୍ଥ ପୁରୁଷୋତ୍ତମ କ୍ଷେତ୍ରକୁ ଆମେ ସଶ୍ରଦ୍ଧ ଚିତ୍ତରେ ଅଭିବାଦନ କରୁଛୁ। କଲ୍ୟାଣ ପ୍ରାର୍ଥନାନ୍ତେ—)।

ଶ୍ରୀଶ୍ରୀପିତୃଦେବ ପ୍ରୀତ ହୋଇ କହିଲେ—ଠାକୁରଙ୍କ ଦୟାରେ ଯେତେ ଲୋକ ଆଶ୍ରମକୁ ଆସନ୍ତି ସମସ୍ତେ ଭକ୍ତ type (ସଦୃଶ)ର। ବିରୂପ ସମାଲୋଚନା କରିବା ଲୋକ ଆସନ୍ତି ନି। ସେ ରକମ ଲୋକ ମୋ ଆଖିରେ ପଡ଼େ ନା।

ଏଥର କାର୍ତ୍ତିକ ଭାଇ (ସରକାର) ଜଣାଇଲେ, ଆନନ୍ଦବଜାର ପାଇଁ ବଡ଼ କଡ଼େଇ ଦରକାର। ଯାହା ଲୋକ ହେଉଛନ୍ତି ଛୋଟ କଡ଼େଇରେ କାମ ଚଳୁନି।

ଶ୍ରୀଶ୍ରୀପିତୃଦେବ—ବଡ଼ କଡ଼େଇ ମାନେ ଚାଳିଶ ମହଣର ତ! ଆଗରୁ ready (ପ୍ରସ୍ତୁତ) ରହିବାକୁ ହେବ, ଯେପରି conference (ସମ୍ମେଳନ) ପୂର୍ବରୁ ତିଆରି ହୋଇଯାଏ।

ଶ୍ରୀଶ୍ରୀପିତୃଦେବଙ୍କ ଅଦୂରରେ ବସିଅଛନ୍ତି ଗୌର ଭାଇ (ମଣ୍ଡଳ)। ଗୌର ଭାଇଙ୍କୁ ସେ ପଚାରିଲେ— ଆନନ୍ଦବଜାର ପାଇଁ ଜାଳେଣୀ କାଠ ଆସିଛି, ସେଥିରୁ କିଛି ପଟା ବାହାରିବ ନି ?

ଗୌର ଭାଇ— ଆଜ୍ଞା, ଯାଇ ଦେଖୁଛି।

ଶ୍ରୀଶ୍ରୀପିତୃଦେବ—ଗୋଟାଏ ଆମ୍ବଗଛ ପଡ଼ିଛି, ସେଟା ତ ନେଇ ଆସିପାର। ସେଥିରୁ ପଟା ତିଆରି କରାଯାଇପାରେ। ସବୁଦିଗକୁ ନଜର ନ ରଖିଲେ ମୁଶ୍କିଲ। ଗଙ୍ଗାମା' (ଶ୍ରୀମତୀ ସୁପ୍ରଭା ଦେବୀ) ଙ୍କ ଖଟଟା complete (ସଂପୂର୍ଣ୍ଣ) କରିଛନ୍ତି ? ୭-୮ ଦିନ ଭିତରେ ଗଙ୍ଗାମା ଆସିଯିବ।

ଦୈନିକ ପତ୍ରିକା ପ୍ରକାଶନ ବିଷୟରେ କଥା ଉଠିଲା।

ଶ୍ରୀଶ୍ରୀପିତୃଦେବ— Daily paper (ଦୈନିକ ପତ୍ର) ବାହାର କରିବା ପାଇଁ ହିମ୍‌ସିମ୍ ଖାଇଯିବାକୁ ପଡ଼ିବ। ପୁଣି କୌଣସି-କିଛି ଆରମ୍ଭ କରି ବନ୍ଦ କରିବାଟା ବି ଖୁବ୍ ଖରାପ। ବର୍ତ୍ତମାନ ମଣିଷ ଦରକାର। Daily paper ହେଲେ ଠାକୁରଙ୍କ ଦୟାରେ ଦଶ-ବାର ହଜାର circulation (ବିତରଣ) ଆମ୍ଭମାନଙ୍କ ପକ୍ଷରେ କଠିନ କିଛି ନୁହେଁ।

ଅମୂଲ୍ୟ ଭାଇ (ଘୋଷ)— କଲିକତାରେ କେତେ paper ବାହାରି ବନ୍ଦ ହୋଇ ଯାଇଛି।

ଶ୍ରୀଶ୍ରୀପିତୃଦେବ—ହଁ।

ଅମୂଲ୍ୟ ଭାଇ—ଆମ୍ଭମାନଙ୍କର ଏତେ ଚିନ୍ତା କରିବାର କ'ଣ ଅଛି ?

ଶ୍ରୀଶ୍ରୀପିତୃଦେବ—କିଛି ନ ଥିଲେ ବି କିଛି ଅଛି। ବିଚେଚନା କରି ବାହାର କରିବାକୁ ହୁଏ। ଭଲ-ଭଲ ଲୋକ ଦରକାର। ଆଉ daily paper କରିଲେ ବା କ'ଣ ହେବ ? ଲେଖକ ନ ଥିଲେ କ'ଣ ହେବ ?

କିଛିସମୟ ପୂର୍ବରୁ ଟାଳଘରେ ଥିବା ରେଡିଓରେ ସଂବାଦ ପରିବେଷିତ ହୋଇଛି ଯେ—ବଙ୍ଗଳା ଦେଶର ବର୍ତ୍ତମାନ ଅବସ୍ଥାରେ ଭାରତ ନିରପେକ୍ଷ ରହି ପାରେ ନା। ଢାକା, ପାବନା, ମୟମନସିଂହରେ firing (ଗୁଳି) ଚାଲିଛି। —ଏ-ସଂବାଦ କାର୍ତ୍ତିକ ଭାଇ ଶ୍ରୀଶ୍ରୀପିତୃଦେବଙ୍କ ନିକଟରେ ଜ୍ଞାପନ କଲେ।

ଶ୍ରୀଶ୍ରୀପିତୃଦେବ—ନିରପେକ୍ଷ ନ ରହି କ'ଣ କରିବ ?

କାର୍ତ୍ତିକ ଭାଇ—Force ପଶିଯିବେ।

ଦୁଲାଳ ଭାଇ ବଙ୍ଗଳା-ଦେଶର ଘଟଣାବଳୀ କହି ଚାଲିଛନ୍ତି। ଶ୍ରୀଶ୍ରୀପିତୃଦେବ ଶିଶୁସରଳ ଆଗ୍ରହ ନେଇ ସବୁ ଶୁଣି ଯାଉଛନ୍ତି।

ଦୁଲାଳ ଭାଇ—ଚୀନ ବି ଏଇ ସୁଯୋଗରେ ଯୁଦ୍ଧ ଲଗାଇପାରେ।

ପରେଶ ଭାଇ—ଚୀନ ଦେଶରେ ଲୋକେ ଅନେକ ବେଶି। ଖାଇବାକୁ ଦେଇ ପାରୁନି, ସେଥିପାଇଁ ଯୁଦ୍ଧ ଲଗାଇବାକୁ ଚାହେ।

ପରେଶ ଭାଇଙ୍କ କଥାରେ ଶ୍ରୀଶ୍ରୀପିତୃଦେବ ବିରକ୍ତି ପ୍ରକାଶ କଲେ।

## ଶୁକ୍ରବାର, ୫-ମାର୍ଗଶିର, ୧୩୮୨ (ଇଂ ୨୧/୧୧/୭୫)

ପ୍ରାତଃକାଳୀନ ବିନତି-ପ୍ରାର୍ଥନା ପରେ ଶ୍ରୀଶ୍ରୀପିତୃଦେବ ବଡ଼ ନାଟମଣ୍ଡପରେ ସମାସୀନ। ସପ୍ତାହଖଣ୍ଡେ କଲିକତାରେ ରହିବା ପରେ ଗତକାଲି ସେ ଆଶ୍ରମକୁ ଫେରିଛନ୍ତି। ଆଜି ଆଶ୍ରମବାସୀମାନଙ୍କ ମଧ୍ୟରୁ ଅନେକଙ୍କୁ କୁଶଳାଦି ଜିଜ୍ଞାସା କରୁଛନ୍ତି।

ଏହାପରେ ମୁକୁଳ-ମା (ମଣ୍ଡଳ) କୁ ପଚାରିଲେ—ରାସ୍ତା ପରିଷ୍କାର କରିଛୁ ?

ସେଇ ମା'-ଟି ସମ୍ମତି-ସୂଚକ ଉତ୍ତର ଦେଲେ।

ଶ୍ରୀଶ୍ରୀପିତୃଦେବ—ହଁ, ନିଷ୍ଠା ସହକାରେ କରିବାକୁ ହୁଏ—ଇଷ୍ଟଙ୍କ ପାଇଁ।

ଅଜିତ୍ ଭାଇ (ଧର)କୁ ଡାକି ପଚାରିଲେ—ନବଗ୍ରାମରେ ଶ୍ରୀମନ୍ଦିରର୍ ଭିତ୍ତିପ୍ରସ୍ତର ସ୍ଥାପନ ହୋଇଛି। ତାର ଖଣ୍ଡେ ଛବି ଏଥର 'ଆଲୋଚନା' (ସତ୍‌ସଙ୍ଗର ମୁଖପତ୍ର) ରେ ଯଦି ଯାଏ ତେବେ କେମିତି ହେବ ?

ଅଜିତ୍ ଭାଇ—ଆଜ୍ଞା, ଖୁବ୍ ଭଲହେବ।

ଶ୍ରୀଶ୍ରୀପିତୃଦେବ—ତା'ହେଲେ ସେପରି ବ୍ୟବସ୍ଥା କର।

ସମୟ ହେବାରୁ ସତ୍ୟାନୁସରଣ ପାଠ ଆରମ୍ଭ ହେଲା—

..............''ଭଗବାନ ଶ୍ରୀଶ୍ରୀରାମକୃଷ୍ଣଦେବ ସମସ୍ତଙ୍କୁ ବିଶେଷଭାବରେ କହିଛନ୍ତି, କାମିନୀ-କାଞ୍ଚନ ପାଖରୁ ତଫାତ୍—ତଫାତ୍—ଖୁବ୍ ତଫାତ୍ ରୁହ।''

ଶ୍ରୀକଣ୍ଠ ଭାଇ ପ୍ରଶ୍ନ ଉଠାଇଲେ—ତଫାତ୍ ମାନେ ?

ଗୁରୁକିଙ୍କର ଭାଇ—କାମିନୀ-କାଞ୍ଚନ ଠାରୁ ଦୂରରେ ରୁହ।

ଶ୍ରୀଶ୍ରୀପିତୃଦେବ—କାମିନୀ-କାଞ୍ଚନ ଠାରୁ ଦୁଃଖ କିପରି ଆସେ ଆଲୋଚନା କରାଯାଉ। ଲୋକେ ତ ଭାବନ୍ତି ଟଙ୍କା-ପଇସା ନ ହେଲେ ସୁଖ ଇ ହୁଏ ନା।

ଗୁରୁକିଙ୍କର ଭାଇ—ଟଙ୍କା ପଇସାରେ ଇନ୍ଦ୍ରିୟ ଚରିତାର୍ଥ ହୁଏ।

ଶ୍ରୀଶ୍ରୀପିତୃଦେବ—ଟଙ୍କା-ପଇସା, କାମିନୀରେ ଇନ୍ଦ୍ରିୟ ଚରିତାର୍ଥ ତ ହୋଇଥାଏ। ଇନ୍ଦ୍ରିୟାଦି ଦ୍ୱାରା ହିଁ ଶରୀର ପରିଚାଳିତ ହେଉଛି। ଇନ୍ଦ୍ରିୟର ରାଜା ମନ। ଟଙ୍କା-ପଇସା ନିଜର ସୁଖ ପାଇଁ ବ୍ୟୟ କରିବି, ଇନ୍ଦ୍ରିୟ ଚରିତାର୍ଥ କରିବି—ସେଇଟାକୁଇ ଲୋକେ ସୁଖ ଭାବନ୍ତି। କିନ୍ତୁ ଶରୀରର ତ ଗୋଟାଏ ଧର୍ମ ଅଛି। ଏଇ ଇନ୍ଦ୍ରିୟଗୁଡ଼ିକୁ ପରମପିତା ସୃଷ୍ଟି କରିଛନ୍ତି କଣ ପାଇଁ ? —ଉପଭୋଗ କରିବା ପାଇଁ ତ ? କିନ୍ତୁ କ୍ରମାଗତ ହିଁ ଇନ୍ଦ୍ରିୟ ଦ୍ୱାରା ପରିଚାଳିତ ହେଲେ

ଶେଷପର୍ଯ୍ୟନ୍ତ କ୍ଷମତାଗୁଡ଼ିକ ଲୋପ ପାଇଯାଏ, fine sensitiveness (ସୂକ୍ଷ୍ମାନୁଭୂତି) ଲୋପ ପାଏ। ପ୍ରବୃତ୍ତିପରାୟଣତାର ମାଧ୍ୟମରେ ଇନ୍ଦ୍ରିୟ-ତୃପ୍ତି ହେଉଛି, ଆନନ୍ଦ ହେଉଛି ଭାବୁଛି, କିନ୍ତୁ ଉପଭୋଗ କରିବାର କ୍ଷମତାଇ ଲୋପ ପାଇଯାଉଛି ; ତେଣୁ ତା'ଠାରୁ ସାବଧାନ ହେବାର କଥା କୁହା ହୋଇଛି।

ପୁଣି ମଣିଷ ବାହା ହୁଏ। ପିଲା-ଝିଲା ହୁଅନ୍ତି। ପିଲାପିଲି ହେଲେ କ'ଣ ହେବ? ଯଦି ଇଷ୍ଟଙ୍କ ପ୍ରତି ବ୍ୟାକୁଳତା ଥାଏ, ସ୍ତ୍ରୀ ପ୍ରତି ଯେତେ ବି ଟାଣ (ଆକର୍ଷଣ) ଥାଉ ନା କାହିଁକି ସ୍ୱାମୀ-ସ୍ତ୍ରୀ ଉଭୟେ ହିଁ ଉଚ୍ଚକୁ ଉଠିଯା'ନ୍ତି। ପୁଣି ପିଲାପିଲି ବେଶି ହେଲେ ହିଁ ଯେ ସେ କାମାଚାରୀ ହେବ ତା'ବି ନୁହେଁ। ଆମ ଦେଶରେ ଶାସ୍ତ୍ରରେ ବିଧାନ ଅଛି, ଏପରିି ଏକ ସମୟ ଅଛି ଯେତେବେଳେ ସ୍ୱାମୀ-ସ୍ତ୍ରୀଠାରେ ଉପଗତ ନ ହେଲେ ହିଁ ମହାପାପ। 'ପୁତ୍ରାର୍ଥେ କ୍ରିୟତେ ଭାର୍ଯ୍ୟା।' ଇତର ପ୍ରାଣୀ ମଧ୍ୟରେ ପ୍ରକୃତିଇ ସେଇ ଜିନିଷଟା ଠିକ୍ କରି ଦେଇଛି। ଠିକ୍ ସମୟରେ ସେମାନେ ମିଳିତ ହୁଅନ୍ତି। ମଣିଷକୁ ପରମପିତା ଏତେ ସ୍ୱାଧୀନତା ଦେଇଛନ୍ତି କାହିଁକି? ଇଚ୍ଛା କଲେ ତୁମେ ମଙ୍ଗଳର ପଥରେ ଯାଇପାର। ଅଧଃପାତରେ ବି ଯାଇପାର। ପରମପିତା ଚାହାନ୍ତି ତୁମେ ତୁମ ଇନ୍ଦ୍ରିୟର ଦାସ ହୁଅ ନା।

ଯେ'ଟା ଲାଭ କଲେ capital ସବୁଠାରୁ ବେଶି—ଯେ'ଟା ପରମ ଲାଭ, ସେଟା ବାଦ୍ ଦେଇ ଇନ୍ଦ୍ରିୟ ଚରିତାର୍ଥ କରିବା ପାଇଁ ଚରମ କ୍ଷତି ନେଇ ରହିଲି। ଏହା ନେଇ ମଜି ରହିଛି, ଭାବୁଛି ବେଶ୍ ଅଛି। କିନ୍ତୁ ଏଥିରୁ ହିଁ ଯେତେ ଗଣ୍ଡଗୋଳ, ଯେତେ ଅଶାନ୍ତି। ସ୍ୱାମୀ-ସ୍ତ୍ରୀଙ୍କ ଭିତରେ ଝଗଡ଼ା, ପାଟିତୁଣ୍ଡ—ଏଟାଇ କ'ଣ ଆନନ୍ଦର ଲକ୍ଷଣ? ଯେଉଁମାନେ କେବଳ ନିଃସ୍ୱାର୍ଥଭାବରେ କରନ୍ତି— ସେଇମାନେଇ ଆନନ୍ଦ ପା'ନ୍ତି। ଠାକୁର କହିଛନ୍ତି, 'ମଣିଷ ନିଜର, ଟଙ୍କା ପର'— ଆମେମାନେ ଠିକ୍ ଓଲଟା ଟା କରୁ। ଆମେ ଭାବୁଛୁ ତୁମର କମ ଥାଉ, ମୋର ବେଶି ହେଉ। ଜଣେ ହୁଏତ ଟଙ୍କା ମାଗିଲା, ତାର ଯାହା ଦରକାର ତୁମେ ଦେଇଦେଲ। ମୁଁ ପାଖରେ ଥିଲି, କହିଲି—'ଏତେ ଦେଲ କ'ଣ ପାଇଁ? ତୁମେ ତ କମ୍ ବୋକା ନୁହଁ।' ତୁମେ ଯେତେବେଳେ କହିଲ—'ହଁ, ମୁଁ ବୋକାଇ।' ଅନେକେ ଦେବାଟା ସହି ପାରନ୍ତିନି।

ବାଣୀ ନେଇ ବ୍ୟାଖ୍ୟା ଆଲୋଚନା ଶେଷ ହେଲା। ଏହା ପରେ 'ତପୋ-ବିଧାୟନା' ଗ୍ରନ୍ଥ ପାଠ ହେବ।

୧୯୧ ଓ ୧୯୨ ନମ୍ବର ବାଣୀ ପାଠ ପରେ ୧୯୩ ଓ ୧୯୪ ନମ୍ବର ବାଣୀ ପାଠ ହେଉଛି :—

''ଉଦ୍‌ବେଳିତ ପ୍ରବୃତ୍ତି
ନିରୁଦ୍ଧ ବା ଦଳିତ ହେଲେ
କୁଫଳହିଁ ଫଳିଥାଏ ପ୍ରାୟଶଃ,
ତେଣୁ, ଅପଚୟୀ ଅସତ୍ ପ୍ରବୃତ୍ତି
ବା ଅବୈଧ ପ୍ରଲୋଭନ,—
ଯାହା ବି ତୁମର ସମ୍ମୁଖକୁ ଆସୁନା କାହିଁକି,
ତା'ର ଆବେଶ-ଉନ୍ମେଷର ମୁହୂର୍ତ୍ତରେ ହିଁ
ତାକୁ ପ୍ରତ୍ୟାହାର କର—

ପୀଡ଼ନ ନ କରି,
ଇଷ୍ଟାର୍ଥ-ଉପଚୟୀ କୌଣସି ସ୍ୱତ୍‌ଚିନ୍ତା ଓ କର୍ମରେ
ବ୍ୟାପୃତ ହୋଇଉଠ—
ଆତ୍ମପ୍ରସାଦୀ ଆବେଗ-ସହକାରେ,
ଆଉ, ନିୟତ ହିଁ ଅଚ୍ୟୁତ ଆନତି ନେଇ
ଶ୍ରେୟକେନ୍ଦ୍ରିକ ଚଳନରେ
ତଦର୍ଥତପାଃ ହୋଇ ଚଳିବାକୁ
କସୁର କର ନା ;
ଏପରିଭାବରେ ହିଁ
କ୍ରମାଗତ ଅଭ୍ୟାସ କରି-କରି
ତୁମେ ଏଭଳି ଅଭ୍ୟସ୍ତ ହୋଇଉଠିବ ଯେ,
ଅସତ୍-ପ୍ରବୃତ୍ତି ବା ପ୍ରଲୋଭନ
ତୁମ ଉପରେ
ତୁମର ଅନିଚ୍ଛାରେ
କୌଣସି ପ୍ରଭାବ ହିଁ ବିସ୍ତାର କରି ପାରିବ ନାହିଁ,
ସେହି ପାରଗତାର ପୌରୁଷ
ତୁମକୁ ଦ୍ୟୁତିମାନ କରି ତୋଳୁଥିବ,
ଶ୍ରେୟ-ପନ୍ଥା
କ୍ରମଶଃ ପ୍ରଶସ୍ତ ହୋଇ ଉଠୁଥିବ
ତୁମର ସମ୍ମୁଖରେ । ୧୯୩ ।

"ଇଷ୍ଟାର୍ଥ ପ୍ରତିଷ୍ଠାରେ ବା ଇଷ୍ଟସ୍ୱାର୍ଥ ପ୍ରତିଷ୍ଠାରେ
ଅନ୍ତରାସୀ ହୋଇ
ବାସ୍ତବରେ କିଏ କେତେ
ନିଜର ସ୍ୱାର୍ଥ ଓ ପ୍ରତିଷ୍ଠାକୁ
ଅବଜ୍ଞା କରି ଚାଲେ
ଉପଚୟୀ ଉଦ୍‌ବର୍ଦ୍ଧନରେ
ଇଷ୍ଟ-ପରିପୋଷଣୀ କର୍ମରେ
ଆତ୍ମନିୟୋଗ କରିଛି,—
ପୁଣି, ଇଷ୍ଟାର୍ଥ-ପ୍ରତିଷ୍ଠା ବା ଇଷ୍ଟସ୍ୱାର୍ଥ-ପ୍ରତିଷ୍ଠାକୁ
କ୍ରିଡ଼ନକ କରି ନେଇ
କିଏ କିପରି କେତେଟା
ଆତ୍ମସ୍ୱାର୍ଥର ଉପଚୟ-ସନ୍ଧିତ୍ସୁ,—
ଏହା ହିଁ ହେଉଛି ମୂଳ ପରଖ—
ସେ କେତେଟା ଇଷ୍ଟାର୍ଥସେବୀ

ବା ଆତ୍ମସ୍ୱାର୍ଥ-ସନ୍ଧିତ୍ସୁ—
ଆଦର୍ଶଙ୍କଠାରେ କେତେଟିକେ କେନ୍ଦ୍ରାୟିତ
ବା ସ୍ୱାର୍ଥ-ପରିସେବାରେ ଆତ୍ମକେନ୍ଦ୍ରିକ ;
ତେଣୁ, ଉଦ୍‌ବର୍ଦ୍ଧନୀ ପଦକ୍ଷେପରେ ଯଦି ଚଳିବାକୁ ଚାହଁ—
ଇଷ୍ଟାର୍ଥ-ପରିସେବୀ ହୋଇ
ଆତ୍ମସ୍ୱାର୍ଥ-ସନ୍ଧିକ୍ଷୁତାକୁ ଜଳାଞ୍ଜଳି ଦେଇ
ନିରାଶୀ ଓ ନିର୍ମମ ହୋଇ
ଗଣହିତୀ କର୍ମ-ଆହାବରେ ଯୋଗଦାନ କର,
ସ୍ୱାର୍ଥପ୍ରତ୍ୟାଶାରେ ଆତ୍ମବିନାଶ ଘଟାଇ
ନିଜର ସାର୍ଥକ-ସମ୍ବର୍ଦ୍ଧନାକୁ
ଜଳାଞ୍ଜଳି ଦିଅ ନା,
ଇଷ୍ଟାର୍ଥକୁ ଠକାଇବାକୁ ଯାଇ
ନିଜ କାମରେ ନିଜେ ଠଗୀ ସାଜ ନାହିଁ ;
ନିଜକୁ ଭଙ୍ଗାଇ
ଇଷ୍ଟାର୍ଥ ପରିପୂରଣ କର,
ଇଷ୍ଟକୁ ଭଙ୍ଗାଇ
ଆତ୍ମସ୍ୱାର୍ଥ-ପରିପୋଷଣ କରିବାକୁ ଯାଅ ନା।'' ।୧୯୪।

୭ଟା ବାଜେ। ତେବେ ବି ଶୀତ ବେଶ୍ ରହିଛି। ବଡ଼ ନାଟମଣ୍ଡପର ପର୍ଦ୍ଦାଗୁଡ଼ିକ ତୋଳିଦିଆ ହୋଇଛି। ସୂର୍ଯ୍ୟର ତିର୍ଯକ ରଶ୍ମି ଆସି ପଡ଼ିଛି ସମସ୍ତଙ୍କ ମୁଖମଣ୍ଡଳରେ। ସମସ୍ତଙ୍କ ଅନୁରୋଧରେ ଶ୍ରୀଶ୍ରୀପିତୃଦେବ ଉଠିଲେ। ଶ୍ରୀଶ୍ରୀଠାକୁର ପ୍ରଣାମ କରିବାକୁ ଯିବା ସମୟରେ ବାଲୁରଘାଟ (ପଶ୍ଚିମ ଦିନାଜପୁର) ର ଦୁଇଟି ଭାଇ (କରୁଣା ରାୟ ଓ ସୁଧାଂଶୁ ମୈତ୍ର) ଜଣାଇଲେ ସେମାନେ ପ୍ରାଇଭେଟରେ କିଛି କଥା କହିବାକୁ ଚାହାନ୍ତି। ସମସ୍ତେ ଉଠିପଡ଼ିଲେ। ଶ୍ରୀଶ୍ରୀପିତୃଦେବ ଉକ୍ତ ଭାଇମାନଙ୍କୁ ନେଇ ପୁନର୍ବାର ବଡ଼ ନାଟମଣ୍ଡପରେ ବସିଲେ।

ସାନ୍ଧ୍ୟ-ବିନତି ପ୍ରାର୍ଥନା ପରେ ଶ୍ରୀଶ୍ରୀପିତୃଦେବ ବଡ଼ ନାଟମଣ୍ଡପରେ ଭକ୍ତଜନ ପରିବୃତ। ବିଭିନ୍ନ ବିଷୟରେ କଥାବାର୍ତ୍ତା ଚାଲିଛି। କେହି କେହି ରୋଗ-ବ୍ୟାଧି କିମ୍ବା ଅନ୍ୟାନ୍ୟ ସମସ୍ୟାଦିର କଥା ନିବେଦନ କରୁଛନ୍ତି।

ଜଣେ ମା ଜଣାଇଲେ—(ଗୋଟିଏ କମ୍ ବୟସର ଝିଅକୁ ଦେଖାଇ) ଏହାର ଶରୀରରେ ରକ୍ତ ନାହିଁ।

ଶ୍ରୀଶ୍ରୀପିତୃଦେବ ପ୍ରତିବିଧାନ ଦେଲେ।

ପରମେଶ୍ୱର ଭାଇ (ପାଲ)—ଜଣେ ଭାଇଙ୍କୁ ଦେଖାଇ କହିଲେ—ଏଇ ଭାଇ ଆପଣଙ୍କୁ ପ୍ରାଇଭେଟ୍‌ରେ କିଛି କହିବାକୁ ଚାହେ।

ଶ୍ରୀଶ୍ରୀପିତୃଦେବ ମୁଣ୍ଡ ହଲାଇ ସମ୍ମତି ଜଣାଇ କହିଲେ—ସମୟାନୁସାରେ କହିବ।

ପଣ୍ଡିତ ଭାଇଙ୍କୁ ଜିଜ୍ଞାସା କଲେ—ଠାକୁର ଯେତେବେଳେ ଦୁମ୍‌କା ଯାଇଥିଲେ ସେତେବେଳେ ଠାକୁରଙ୍କ ବୟସ କେତେ ହୋଇଥିଲା ?

ପଣ୍ଡିତ ଭାଇ—ଚଉଷଠି।

ଶ୍ରୀଶ୍ରୀପିତୃଦେବ—ମୁଁ ବି ସେଇଆ ଜାଣେ ; ସେବା (ବ୍ୟାନାର୍ଜୀ) କହୁଥିଲା ଚେଷଠି।

ଆଶ୍ରମର ଛୋଟ-ଛୋଟ ଝିଅମାନେ ତାଙ୍କ ସାମନାରେ ବସି ରହିଛନ୍ତି। ଶ୍ରୀଶ୍ରୀପିତୃଦେବ ପଚାରିଲେ—ରାଣୀ ପ୍ରାର୍ଥନାରେ ନ ଥିଲା ?

ରାଣୀ (ମୁଖାର୍ଜୀ)—ଆଜ୍ଞା, (ହାତଠାରି ଦେଖାଇ) ସେ ପଟେ ବସିଥିଲି।

କାଳୀ ଭୌମିକ ଭାଇଙ୍କ ବଡ଼ ଝିଅ (ଅନୁପମା ଭୌମିକ) ପାଖରେ ବସି ରହିଛି। ତାକୁ ଦେଖି ପଚାରିଲେ—ତୋର ବାପା ଚିଠି ଦେଇନି ?

—ଆଜ୍ଞା ନା, ବାପା ସେଠାରେ ନାହାଁନ୍ତି।

—କେଉଁଠି ଅଛି ?

—ରାଉରକେଲାରେ।

—ସେଠାରେ ପୋଷ୍ଟ ଅଫିସ୍‌ରେ ପୋଷ୍ଟକାର୍ଡ ମିଳେନା ?

ଅନୁପମା ଭୌମିକ ନୀରବ ରହିଲେ।

ସତ୍ୟ ପ୍ରାମାଣିକ ପାଖରେ ବସିଥିଲେ। ଶ୍ରୀଶ୍ରୀପିତୃଦେବ ତାକୁ ଉଦ୍ଦେଶ୍ୟ କରି କହିଲେ—ସମସ୍ତେ କହିଲେ, ଦାଢ଼ି ରହି ଯାଇଛି—ଏଠି ଅଛି, ସେଠି ଅଛି। ସାବୁନ ଲଗାଇ କ୍ଷୁରଟାକୁ ବୁଲାଇ ଦେଉଛୁ ନା କ'ଣ ? (କାର୍ତ୍ତିକ ଭାଇଙ୍କୁ ନିର୍ଦ୍ଦେଶ କରି) କ'ଣ ରେ ? କିଏ-କିଏ କହୁଥିଲ ଯେ ?

କାର୍ତ୍ତିକ ଭାଇ—ଆଜ୍ଞା, ସ୍ୱାମୀ ଭାଇ, ଦେବୀ ଭାଇ, ଜିତେନ ଭାଇ ଓ ଅଜିତ ଭାଇ (ଧର) ତାହା ହିଁ କହିଥିଲେ।

ଶ୍ରୀଶ୍ରୀପିତୃଦେବ—ସତ୍ୟ ! କିଛି କହୁ ନାହୁଁ ଯେ ?

ସତ୍ୟ ଭାଇ—ମୋ ପଛରେ ଲାଗିବା ହିଁ ଏମାନଙ୍କର କାମ ; ଆଉ ତ କିଛି କାମ ନାହିଁ।

ଶ୍ରୀଶ୍ରୀପିତୃଦେବ—ତୁ ଆଉ କହ ନା ! ପ୍ରଥମେ ଯେଉଁ କ୍ଷୁରଟା ଦେଇ କାଟୁ ସେଇଟାଇ ଦରକାର।

ସକଳେ ଏଇ ରହସ୍ୟାଳାପ ଉପଭୋଗ କରିବାକୁ ଲାଗିଲେ।

ଅଜିତ୍ ଭାଇ (ଧର)ଙ୍କ ସ୍ତ୍ରୀ ନଡ଼ିଆ-ଲଡୁ ଓ ଚୁଡ଼ାର ମୁଆଁ ତିଆରି କରି ଦେଇଛନ୍ତି। ସେ-ପ୍ରସଙ୍ଗରେ ଶ୍ରୀଶ୍ରୀପିତୃଦେବ କହିଲେ—ଏତେ ସୁନ୍ଦର ନଡ଼ିଆ-ଲଡୁ ଆଉ ଚୁଡ଼ାର ମୁଆଁ କେବେହେଲେ ଖାଇନି।

ହୋମିଓପ୍ୟାଥି ଚିକିତ୍ସାର ଉପକାରିତା ନେଇ କଥା ଉଠିଲା। ଶ୍ରୀଶ୍ରୀପିତୃଦେବ କହିଲେ—ଆଗେ ହୋମିଓପ୍ୟାଥିର ଖୁବ୍ ବେଶି ଚଳ-ପ୍ରଚଳ ଥିଲା। ଗୋଟିଏ ହୋମିଓପ୍ୟାଥିର ବାକ୍ସ ନେଇ ଲୋକେ କେତେ ଉପାର୍ଜନ କରୁଥିଲେ।

Diagnosis (ରୋଗ-ନିର୍ଣ୍ଣୟ) ଠିକ୍‌ଭାବେ ହେଲେ ହୋମିଓପ୍ୟାଥିକ ଔଷଧ miracle ପରି କାମ କରେ। ଥରେ ଉର୍ଦ୍ଧ୍ୱଶ୍ଳେଷ୍ମାରେ ମୁଁ ଖୁବ୍ କଷ୍ଟ ପାଉଥିଲି। ଯେ ଯା କହୁଥିଲେ

ତା କରୁଥିଲି–ମିଶିରି ଗୁଣ୍ଡ କରି ନାକରେ ଟାଣିବା, ଗୋଲମରିଚର ଗୁଣ୍ଡ ନସି କରି ଟାଣିବା, କରମଚା (ଏକଜାତୀୟ ଖଟାଫଳ) ସିଝାଇ ତାର ପାଣି ମୁଣ୍ଡରେ ଢାଳିବା ଇତ୍ୟାଦି ନାନାପ୍ରକାର ପ୍ରକ୍ରିୟା କରି ମଧ୍ୟ କୌଣସି ସ୍ୱସ୍ତି ହେଲାନି। ଅସହ୍ୟ ଯନ୍ତ୍ରଣାରେ ରାତିଦିନ ଚିତ୍କାର କରୁଥିଲି। ନିଦ ନ ଥିଲା, ଖାଇବା ନ ଥିଲା ପ୍ରାୟ ସାତଦିନ। ଦିନେ ଉପରବେଳା କିଶୋରୀକକା (ସ୍ୱର୍ଗତ କିଶୋରୀ ମୋହନ ଦାସ) ମୋ ଘର ପାଖ ଦେଇ ଯାଉଥିଲେ। ଆଶ୍ରମ ଯିବା ଆସିବା ସମୟରେ ତାଙ୍କୁ ସେଇ ରାସ୍ତା ଦେଇ ଯିବାକୁ ହେଉଥିଲା। ବୟସ ମୋର ସେତେବେଳେ ୨୫/୨୬ ବର୍ଷ। ବାରଣ୍ଡାରେ ବେଞ୍ଚ ଉପରେ ମୋତେ ବ୍ୟଥିତ ହେଉଥିବା ଦେଖି କିଶୋରୀ କକା ଆସି ଜିଜ୍ଞାସା କଲେ, 'ବାବା, ତୁମର କ'ଣ ହୋଇଛି ?' ମୋର ରୋଗର କଥା ତାଙ୍କୁ ନିବେଦନ କଲି। ସବୁ ଭଲକରି ଶୁଣି ସେ କହିଲେ,–'ଗୋଟିଏ ଔଷଧ ଦେଉଛି, ଦଶ ମିନିଟ ମଧ୍ୟରେ ସବୁ ଉପଶମ ହୋଇଯିବ–ଦେବି ?' କହିଲି, 'ଆଜ୍ଞା ଦିଅନ୍ତୁ। ଅନେକ ପ୍ରକାର ଔଷଧ ତ ଖାଇଲି।' ସତରେ କହୁଛି, ହୋମିଓପ୍ୟାଥିକ ଔଷଧ ଉପରେ ମୋର ଖୁବ୍ ବେଶି ଆସ୍ଥା ଥିଲା ସେପରି ମନେହୁଏ ନା। ଯାହାହେଉ, ସେ ଗୋଟିଏ ଔଷଧ ଆଣି ଦେଲେ। ଦେଇ କହିଲେ,–'ଏଟା ଖାଅ, ଦଶ ମିନିଟ୍ ମଧ୍ୟରେ ଭିତରେ ଜମିଥିବା ଶ୍ଳେଷ୍ମା ନାକ ଦ୍ୱାରା ବାହାରି ମୁଣ୍ଡ ହାଲକା ହୋଇଯିବ। ଆରାମ ପାଇବ।' ମନେ ମନେ ଠାକୁରଙ୍କୁ ସ୍ମରଣ କରି ଔଷଧଟା ଖାଇନେଲି। କିଶୋରୀ କକା ଚାଲିଗଲେ। ଆଶ୍ଚର୍ଯ୍ୟ କଥା, ଦଶ ମିନିଟ୍ ମଧ୍ୟରେ ମୋର ନାକ ଦେଇ ପ୍ରଥମେ ଅଳ୍ପ ଅଳ୍ପ ହଳଦିଆ ରଙ୍ଗର, ତା'ପରେ ଗାଢ଼ ହଳଦିଆ, ତା'ପରେ ଲାଲ ରଙ୍ଗ ମିଶ୍ରିତ ହଳଦିଆ, ତା'ପରେ ଲାଲ-ଲାଲ ଅଜସ୍ର ସର୍ଦ୍ଦିରେ ୪/୫ଟି ରୁମାଲ ଭର୍ତ୍ତି ହୋଇଗଲା। ମୁଁ ବାରଣ୍ଡାରୁ ଘରକୁ ଗଲି। ଠାକୁରଙ୍କ ଦୟାରେ ନିଦ ଆସିଗଲା। ସାତଦିନ ପରେ ଏଇ ପ୍ରଥମ ଥର ପାଇଁ ଶୋଇଲି। ଦୀର୍ଘ ନିଦ୍ରା–ଭୋର ହୋଇଯାଇଛି ; ଉଠି ଦେଖେ ମୁଁ ସଂପୂର୍ଣ୍ଣ ସୁସ୍ଥ, କୌଣସିପ୍ରକାର ଜ୍ୱାଳା ଯନ୍ତ୍ରଣା ନାହିଁ। ତା'ପରଠାରୁ ସେଭଳି ଅସୁସ୍ଥତା ଆଉ କୌଣସି ଦିନ ହୋଇନି।

ଚିକିତ୍ସା ପଦ୍ଧତି ଓ ରୋଗ ନିର୍ଣ୍ଣୟନ ବିଷୟରେ ଆହୁରି ଅନେକ କଥାବାର୍ତ୍ତା ହେଲା। ଏହି ପ୍ରସଙ୍ଗରେ ଡା: ଭୁବନ ସିନ୍‌ହାଙ୍କ କଥା ଉଠିଲା।

ଶ୍ରୀଶ୍ରୀପିତୃଦେବ–ଡା: ଭୁବନ ସିନ୍‌ହା କଲିକତାର ଜଣେ ବିଖ୍ୟାତ ଡାକ୍ତର। କଲିକତା ବାହାରେ ମଧ୍ୟ ତାଙ୍କ ନାମର ପ୍ରଶଂସା। ଏକଦା ଶ୍ରୀଶ୍ରୀଠାକୁରଙ୍କୁ ଦେଖାଇବା ପାଇଁ ତାଙ୍କୁ ଅଣା ହୋଇଥିଲା (୧୯୬୮ ସାଲର ୮ ଅଗଷ୍ଟ)। ତାଙ୍କ ସହିତ ଥିଲେ ଶ୍ରୀମାନ୍ ଗୋପାଳ ମିତ୍ର (ଏମ୍.ବି.)।

ସେତେବେଳେ ମୋର ଶରୀର ବି ଖରାପ ଥିଲା। ପ୍ରତ୍ୟେକ ଦିନ ଟିକିଏ ଟିକିଏ ଜ୍ୱର ହେଉଥାଏ। ବାରମ୍ବାର ପରୀକ୍ଷା କରି ଭୁବନବାବୁ ମୋତେ କହିଲେ, –'ଆପଣଙ୍କର complete rest (ପୂର୍ଣ୍ଣ ବିଶ୍ରାମ) ଦରକାର ; ବେଶୀ କଥା କହିବେନି, ପରିଶ୍ରମ କରିବେନି, smoke (ଧୂମପାନ) କରିବେନି। ଆପଣ ତ ବୁଦ୍ଧିମାନ ଲୋକ, କ'ଣ ଆଉ ଆପଣଙ୍କୁ କହିବି, ବୁଝି ତ ପାରୁଛନ୍ତି କ'ଣ ହୋଇଛି।' ପ୍ରକାରାନ୍ତରରେ ସେ ଜଣାଇଲେ ମୋର ଟି.ବି. ହୋଇଛି।

କାଜଲ ମୋ ଘରର ଦୁଆରେ ସାଇନ୍‌ବୋର୍ଡ ଟଙ୍ଗାଇଦେଲା–'ଭିତରେ ଯିବା ନିଷେଧ, କଥା କହିବା ନିଷେଧ'। ଭୁବନବାବୁ ମୋତେ ଅନେକ ଔଷଧ ପତ୍ର ଦେଇଗଲେ। ମୁଁ ଗୋପାଳ ଡାକ୍ତରକୁ କହିଲି, ଡାକ୍ତରବାବୁଙ୍କୁ ଭଲକରି ବୁଝାଇ କହିବୁ, ମୋର ତ ସେ ରୋଗ ହୋଇନି; ଔଷଧ ଖାଇବା ପ୍ରୟୋଜନ ନାହିଁ।' ଗୋପାଳ ସେଇ କଥା କହିବା ପରେ ସେ କହିଲେ, 'ମୁଁ dead sure (ଏକଦମ ନିଶ୍ଚିତ); କ'ଣ ତୁମେ କହୁଛ ?' ଗୋପାଳ କହିଲା, 'ଆପଣ ଯାହା କହିଲେ, ତା ନ ହୋଇ ବି ପାରେ।' ସେ ଗୋପାଳର କଥାରେ କର୍ଣ୍ଣପାତ କରିଲେ ନି। ଠାକୁରଙ୍କ ଦୟାରେ ତାଙ୍କ ଔଷଧ ମୋତେ ଖାଇବାକୁ ହୋଇନି। କିଛିଦିନ ପରେ ସ୍ୱାଭାବିକଭାବେ ଚଲାବୁଲା କରୁଛି। ମାସ କେତୋଟି ପରେ ଭୁବନବାବୁ ପୁନରାୟ ଆଶ୍ରମକୁ ଆସିଲେ, ସେତେବେଳେ ଗୋପାଳ ଭୁବନବାବୁଙ୍କୁ କହିଲା, 'ଦେଖନ୍ତୁ, ବଡ଼ଦା ସ୍ୱାଭାବିକଭାବରେ ହିଁ ଚଲା ଫେରା କରୁଛନ୍ତି। ଆପଣ ତ ମାରାତ୍ମକ ରୋଗର କଥା କହିଥିଲେ।' ତାହା ଶୁଣି ଭୁବନବାକୁ କହିଲେ, 'ସତେ ନା କ'ଣ ? ଏପରି ହେବାର ତ କଥା ନୁହେଁ! ସେ ଅବାକ୍ ହୋଇ ଯାଇଥିଲେ।

ଦତ୍ତପୁକୁରର ରାମଦୁଲାଲ ଘୋଷ ନିଜ ପୁତ୍ର ସନ୍ତାନର ନାମକରଣର କଥା ନିବେଦନ କଲେ। ଶ୍ରୀଶ୍ରୀପିତୃଦେବଙ୍କୁ ସେଇ ସନ୍ତାନର ପିତା, ପିତାମହ, ପ୍ରପିତାମହଙ୍କର ନାମ ଜଣାଇ ଦିଆଗଲା। ପିତାମହ ଅନିଲ କୁମାର ଘୋଷ, ପ୍ରପିତାମହ-କ୍ଷୁଦିରାମ ଘୋଷ।

ଶ୍ରୀଶ୍ରୀପିତୃଦେବ–ତୁମର ଆଉ ଅନ୍ୟ ପିଲା-ପିଲିମାନଙ୍କର କ'ଣ ନାମ ?

ରାମଦୁଲାଲ ଭାଇ–ବଡ଼ ପୁଆର ନାଁ–ଅସୀମ, ଝିଅ ନା ସୁରତି।

ଶ୍ରୀଶ୍ରୀପିତୃଦେବ–ଗୋଟିଏ ନାମ ତ ମନେ ହେଉଛି; ତୁମର ମନପୂତ ହେବ କି ନା ତା ବା କିଏ ଜାଣେ ?

–ଆଜ୍ଞା, ଆପଣ ଯାହା କହିବେ ତାହା ହିଁ ମୋର ପସନ୍ଦ।

–'ଅନାମୀ କୁମାର' ରଖ।

ଗୁରୁକିଙ୍କର ଭାଇ–କେବଳ 'ଅନାମୀ' ହେଲେ ଆହୁରି ବଡ଼ ଅର୍ଥ ହୁଏ।

ଶ୍ରୀଶ୍ରୀପିତୃଦେବ–ଅନାମୀ କୁମାର ହେଲେ ମଧ୍ୟ ମହିମା ବିରାଟ।

ସାମନାରେ ବସି ରହିଛନ୍ତି ଆଶ୍ରମର ଛୋଟ ଛୋଟ ଝିଅମାନେ। ସେ ସମସ୍ତଙ୍କୁ ପଚାରିଲେ,–କିଏ କିଏ ହୁଳହୁଳି ଦେଇପାର ? ଜଣ ଜଣ କରି ପ୍ରାୟ ଅନେକଙ୍କୁ ହି ହୁଳହୁଳି ଦେବାକୁ କହିଲେ। କାହାରି-କାହାରି ହୁଳହୁଳି ଧ୍ୱନି ଭଲ ହିଁ ହେଲା। ପୁଣି କେହି କେହି ପାରିଲେନି। ତାହା ଦେଖି ଶ୍ରୀଶ୍ରୀପିତୃଦେବ କହିଲେ–ଗୁରୁକିଙ୍କର ଭଲ ପାରେ।

ଏଥର ଗୁରୁକିଙ୍କର ଭାଇ ତାଙ୍କ ଆଦେଶ ପାଇ ହୁଳହୁଳି ଦେଲେ। ଉପସ୍ଥିତ ସମସ୍ତେ ଏକାଠି ହସିଉଠିଲେ।

ଶ୍ରୀଶ୍ରୀପିତୃଦେବ–ହୁଳହୁଳି ଦେବା ସମୟରେ ମୁହଁରେ ହାତ ଦେବାକୁ ହୁଏ। ମୁଁହରେ ହାତ ନ ଦେଲେ, ଜିଭ ଦେଖାଯାଏ, ଖରାପ ଲାଗେ। ହାଇ ଉଠିବା ସମୟରେ ମଧ୍ୟ ମୁଁହରେ ହାତ ଦେବାକୁ ହୁଏ।

ତା'ପରେ ଶ୍ରୀଶ୍ରୀପିତୃଦେବ ସମ୍ମୁଖସ୍ଥ ଝିଅମାନଙ୍କୁ ଜଣେ ଜଣେ କରି ପଚାରିଲେ—ତୁ ଗୀତ ବୋଲି ପାରୁ ନା କ'ଣ ? ଶାଶ୍ୱତୀ ପାରୁ ? ସ୍ୱପ୍ନା ପାରୁ ନା ?

ଏମାନେ ସମସ୍ତେ ନିରୁତ୍ତର ରହିବାରୁ ସେ ରାଣୀକୁ ଗୀତ ଗାଇବାର ନିର୍ଦ୍ଦେଶ ଦେଲେ। ରାଣୀ ହାରମୋନିୟମ ନେଇ ଗୀତ ଗାଇବାକୁ ଲାଗିଲା।

ଗୀତ ଚାଲିଥିବା ସମୟରେ ଅଧ୍ୟାପକ ଅନୁଗ୍ରହ ନାରାୟଣ ଠାକୁର ଆସି ବସିଛନ୍ତି। ଗୀତ ଶେଷରେ ଶ୍ରୀଶ୍ରୀପିତୃଦେବ ତାଙ୍କର (ଅଧ୍ୟାପକଙ୍କର) କୁଶଳ ସଂବାଦ ପଚାରିଲେ।

ପୁଣି ସ୍ୱାପ୍ନା (ଚୌଧୁରୀ) କୁ ଜିଜ୍ଞାସା କଲେ ତୁ ଭୋରରୁ ଉଠୁ ?

ସ୍ୱପ୍ନା ମୁଣ୍ଡ ହଲାଇ ସମ୍ମତି ଜଣାଇଲା।

ଶ୍ରୀଶ୍ରୀପିତୃଦେବ—ଭୋରରୁ ଉଠି କାମ କ'ଣ ?

ସ୍ୱପ୍ନା—ଠାକୁର-ପୂଜା କରେ।

—ଆଉ ନାମ (ନାମଧ୍ୟାନ) କରୁ ନା ?

—ଟିକେ ଟିକେ ହୁଏ।

—ଆଉ କ'ଣ କରୁ ?

ସମୟ ପାଇଲେ ପଢ଼ାଶୁଣା ବି କରେ।

ଶ୍ରୀଶ୍ରୀପିତୃଦେବ ଖୁସି ହୋଇ କହିଲେ—ହଁ! ପ୍ରତିଦିନ ନିଷ୍ଠାସହ ନାମ କରିବାକୁ ହୁଏ। ନାମ କଲେ କ'ଣ ହୁଏ ?

ସ୍ୱପ୍ନାକୁ ନିରୁତ୍ତର ଦେଖି ଶାଶ୍ୱତୀ (ଚାଟାର୍ଜୀ) କୁ ପଚାରିଲେ।

ଶାଶ୍ୱତୀ—ନାମ ମଣିଷକୁ ତୀକ୍ଷ୍ଣ କରେ।

ଶ୍ରୀଶ୍ରୀପିତୃଦେବ—ହଁ, ନାମ କଲେ brain sharp ହୁଏ। ବୁଦ୍ଧି ବଢ଼ି-ବଢ଼ି ଯାଏ। (ସ୍ୱପ୍ନା ଆଡ଼କୁ ଚାହିଁ) କ'ଣ—ବୁଝି ପାରିଲୁ ? ଠିକ୍ ଠିକ୍ ନାମଧ୍ୟାନ କଲେ ପଢ଼ାଶୁଣା ମଧ୍ୟ ଭଲ ହୁଏ। ମନର ଏକାଗ୍ରତା ବଢ଼ିଯାଏ, ଆଉ ଯାହା ପଢ଼ିବୁ ତାହା ସଙ୍ଗେ ସଙ୍ଗେ ଲେଖି ପକାଇବୁ। ଏହାଦ୍ୱାରା ବନାନ କମ୍ ଭୁଲ ହୁଏ, ଲେଖା ମଧ୍ୟ ନିର୍ଭୁଲ ହୁଏ। ନିର୍ଭୁଲ ଲେଖା ହେଲେ ନମ୍ବର ବେଶୀ ହୁଏ। ତାହାଦ୍ୱାରା result (ପରୀକ୍ଷାର ଫଳ) ବି ଭଲ ହୁଏ।

## ସୋମବାର, ୮-ମାର୍ଗଶିର ୧୩୮୨ (ଇଂ ୨୪/୧୧/୭୫)

ପ୍ରାତଃକାଳୀନ ବିନତି ପରେ ଶ୍ରୀଶ୍ରୀପିତୃଦେବ ବଡ଼ ନାଟମଣ୍ଡପରେ ବସିଛନ୍ତି। ସମବେତ ପ୍ରଣାମ ହୋଇଗଲା।

ଗତ କାଲି ରବିବାର ଥିଲା—ଅନୁସନ୍ଧିତ୍ସୁ ସଭା। ଶ୍ରୀଶ୍ରୀପିତୃଦେବ କାଲିର ଅନୁସନ୍ଧିତ୍ସୁ ସଭାରେ ଉପସ୍ଥିତ ନ ଥିଲେ—ଦୁମକା ଯାଇଥିଲେ, ରାତ୍ରି କରି ଫେରିଥିଲେ। ଆଜି ବଡ଼ ନାଟମଣ୍ଡପରେ ବସିବା ସଙ୍ଗେ ସଙ୍ଗେ ପଣ୍ଡିତ ଭାଇ, ଗୁରୁକିଙ୍କର ଭାଇ ପ୍ରଭୃତିଙ୍କୁ ଜିଜ୍ଞାସା କଲେ, ସେମାନେ କିଏ କିଏ ଉପସ୍ଥିତ ଥିଲେ ବୋଲି। ସେହି ସଭାରେ ଠାକୁରଙ୍କର କେଉଁ ବାଣୀଟି ନେଇ ଆଲୋଚନା ହୋଇଛି, ସଭାକାର୍ଯ୍ୟ କେତେ ସମୟ ପର୍ଯ୍ୟନ୍ତ

ଚାଲିଥିଲା—ଇତ୍ୟାଦି।

ଯଥା ସମୟରେ ସତ୍ୟାନୁସରଣ ପାଠ ଆରମ୍ଭ ହେଲା—

"ସଂକୋଚନ ହିଁ ଦୁଃଖ, ଆଉ ପ୍ରସାରଣ ହିଁ ସୁଖ। ଯହିଁରେ ହୃଦୟରେ ଦୁର୍ବଳତା ଆସେ, ଭୟ ଆସେ—ସେଥିରେ ହିଁ ଆନନ୍ଦର ଅଭାବ ଆଉ ତାହା ହିଁ ଦୁଃଖ।"

ପ୍ରଶ୍ନ ଉଠିଲା—ସଂକୋଚନ କ'ଣ ? ଆଉ ପ୍ରସାରଣ ହିଁ ବା କ'ଣ ? ସଂକୋଚନ ହିଁ ଦୁଃଖ କାହିଁକି ?

ହରିପଦ ଭାଇ (ଦାସ)—ଯେତେବେଳେ ନିଜ କଥା ଭାବେ, ନିଜର କଥା ହିଁ ଚିନ୍ତା କରେ, ଆତ୍ମକେନ୍ଦ୍ରିକ ହୋଇପଡ଼େ, ସେତେବେଳେ ହିଁ ସଂକୋଚନ ଆସେ। ଯେତେବେଳେ ଇଷ୍ଟଙ୍କ କଥା ଭାବେ, ଇଷ୍ଟଙ୍କୁ ଭଲପାଏ, ସମସ୍ତଙ୍କୁ ଇଷ୍ଟଙ୍କର ଭାବେ—ସେତେବେଳେ ହିଁ ପ୍ରସାରଣ ଆସେ, ସୁଖ ସେତେବେଳେ ହିଁ ହୁଏ।

ଶ୍ରୀଶ୍ରୀପିତୃଦେବ—ସେ ତ ଠିକ୍। ସହଜଭାବରେ ଉଦାହରଣ ଦେଇ ବୁଝାଇ ହୁଏନା ? ଗୁରୁକିଙ୍କର କ'ଣ କୁହେ ?

ଗୁରୁକିଙ୍କର ଭାଇ—ଲୁଗାପଟା ନ ଥିଲେ ସମାଜରେ ମିଶି ପାରେ ନା। ସେତେବେଳେ ହିଁ ସଂକୋଚ ଆସେ।

ଶ୍ରୀଶ୍ରୀପିତୃଦେବ—ଲୁଗାପଟା ନାହିଁ, ତାର ମାନେ ?

ଗୁରୁକିଙ୍କର ଭାଇ—ଲୁଗାପଟା ମଇଳା ଥାଏ।

ଶ୍ରୀଶ୍ରୀପିତୃଦେବ—ଏ'ଟା ହେଲା ସଦାଚାରର ଅଭାବ। ଏଟା ହେଲା below standard.

ଗୁରୁକିଙ୍କର ଭାଇ—ତାହା ବ୍ୟତୀତ ଅନେକେ ଟେରିଲିନ, ଟେରିକଟନ ପିନ୍ଧନ୍ତି, ସେଠାରେ ମୁଁ ଯଦି ସାଧାରଣ ସୂତାର ପୋଷାକ ପିନ୍ଧେ,. ସେଠାରେ ବି ସଂକୋଚ ଆସି ପାରେ। ସେମାନେ ସେତେବେଳେ କେହି ମୋ ସହିତ ମିଶିବେନି ବୋଲି ମୋର ମନେହୁଏ।

ଶ୍ରୀଶ୍ରୀପିତୃଦେବ—ସେଥିରେ କ'ଣ ଅଛି ? କେତେ ଲୋକ ଟେରିଲିନ, ଟେରିକଟନ ପିନ୍ଧନ୍ତିନି। କେତେ ସାଧୁ-ସନ୍ନ୍ୟାସୀ ନେଙ୍ଗୁଟି ପିନ୍ଧି ଥାଆନ୍ତି। କେତେ ରାଜା-ମହାରାଜା ସେମାନଙ୍କୁ ଦର୍ଶନ କରିବାକୁ ଯାଆନ୍ତି। ସେମାନଙ୍କର ସେବା କରି ମଣିଷ ଧନ୍ୟ ହୁଏ।

ଲୁଗା ମଇଳା ହେଲେ ସଂକୋଚନ ଆସିପାରେ। ଦାମୀ ଲୁଗା ଯଦି ନ ଥାଏ, କିନ୍ତୁ ଯଦି ସଦାଚାରୀ ହୁଏ, ତାର ବି ଗୋଟିଏ society (ସମାଜ) ରହିଛି, ତା ସହିତ ମିଶିପାରେ। ତୁମେ (ଗୁରୁକିଙ୍କର ଭାଇଙ୍କୁ) ଯାଜକ କାର୍ଯ୍ୟରେ କୋଲିୟାରୀ ଯାଅ ପ୍ୟାଣ୍ଟ-କୋଟ ପିନ୍ଧି ନା କ'ଣ ?

ଶ୍ରୀଶ୍ରୀପିତୃଦେବ ପୁନରାୟ କହିଲେ—ଅସଲ କଥା ଅନ୍ୟାୟ କାର୍ଯ୍ୟ କଲେ ସଂକୋଚନ ଆସେ। ତାଛଡ଼ା ଏପରି କୌଣସି କାର୍ଯ୍ୟ—ଅନ୍ୟାୟ ବୁଝେ, ତାହା ଯଦି କରେ ସେଥିରେ ସଂକୋଚ ଆସେ। ଅନ୍ୟାୟ କାର୍ଯ୍ୟ କରିଲି ଅଥଚ ପ୍ରକାଶ କରି ପାରିଲିନି, ଏଥିରେ ବି ସଂକୋଚ ଆସେ। ଧର, କପି କରି ଏମ୍. ଏ. ପର୍ଯ୍ୟନ୍ତ ପାଶ କଲି, ଭଲ ଚାକିରୀ ମଧ୍ୟ

ଯୋଗାଡ଼ କରିଲି କିନ୍ତୁ ମନେ ମନେ ଠିକ୍ ହିଁ ବୁଝେ ଯେ ମୁଁ କିପରି ପାଶ୍ କରିଛି। ଖାଇବସିଲା ବେଳେ ବି ମନେପଡ଼େ।

ପୁଣି ଦେଖିବ ଜଣେ ହୁଏତ ପାଶ୍ କରି ପାରିଲାନି, ସେଥିପାଇଁ ବାଇଗଣୀ ଭାଜି ବିକିବାକୁ ଆରମ୍ଭ କଲା, ତେଲଭଜାର ବ୍ୟବସାୟ କରୁ କରୁ ଦୁଇ-ଚାରିଟି କୋଠାଘର ମଧ୍ୟ କରି ପକାଇଲା। ତା'ର କୌଣସି ସଂକୋଚ ନାହିଁ। ଲୋକେ କହିବେ, ବାଇଗଣୀ ବିକ୍ରି କରି କୋଠା କରିଛି। ସେ ଆସ୍ତେ-ଆସ୍ତେ ବୃଦ୍ଧି ଆଡ଼କୁ ଅଗ୍ରସର ହେଉଥାଏ। ଏପରିଭାବେ ଚାଲୁ-ଚାଲୁ ତା'ର ସଦଗୁରୁ ଲାଭ ବି ହୋଇପାରେ। ଆଉ ଯିଏ ଫାଙ୍କି ଦେଇ ପାଶ୍ କରିଛି ସେ ହୁଏତ ସାହେବ୍‌ଙ୍କର ଖୁଁଦା ଖାଉଛି। ଭୁଲ ଭ୍ରାନ୍ତି ହେଉଛି। ତାର post-ବି ଚାଲି ଯାଇପାରେ—ଏ-ପ୍ରକାର ଅନେକ ହୁଏ। ସେ ଦେବତାଙ୍କ ନିକଟକୁ ପ୍ରଣାମ କରିବାକୁ ଗଲେ ମଧ୍ୟ ଦୁର୍ବଳତା ଥାଏ, ମନରେ ଶାନ୍ତି ପାଏନା।

କୃପାସିନ୍ଧୁ—ଦେଶ-ସେବାର ନାମ କରି ଅନେକେ ଖରାପ କାମ କରନ୍ତି କିନ୍ତୁ ସେଇଟାକୁ ସେ ଖରାପ ମନେ କରନ୍ତିନି।

ଶ୍ରୀଶ୍ରୀପିତୃଦେବ—କିନ୍ତୁ society (ସମାଜ) ରେ ତାର reaction (ପ୍ରତିକ୍ରିୟା) ହୁଏ। ଦେଶବାସୀ ସେମାନଙ୍କର support କରନ୍ତିନି। ତେଣୁ ଆସ୍ତେ-ଆସ୍ତେ ସେମାନେ ବଶୀଭୂତ ହୁଅନ୍ତି। ପୁଣି ଯଦି ସେମାନେ ଭଲ କାର୍ଯ୍ୟ କରନ୍ତି, ଆଦର୍ଶ ଯଦି ଠିକ୍ ଥାଏ, ସେତେବେଳର ସମାଜ ବିରୋଧିତା କରିଲେ ମଧ୍ୟ, ସେମାନଙ୍କୁ ଫାଶି କାଠିରେ ଝୁଲିବାକୁ ହେଲେ ମଧ୍ୟ ପରେ ସାରାଦେଶ ସେମାନଙ୍କୁ ଶ୍ରଦ୍ଧାର ସହିତ ସ୍ମରଣ କରେ। ଆମ ଦେଶର ସ୍ୱାଧୀନତା ଆନ୍ଦୋଳନରେ ମଧ୍ୟ ଏ ପ୍ରକାର ବହୁ ଉଦାହରଣ ଅଛି।

ଏହାପରେ 'ତପୋବିଧାୟନା' ଗ୍ରନ୍ଥ ପାଠ ଆରମ୍ଭ ହେଲା। ୧୦୪ ନଂ ବାଣୀ ପାଠ ହେଉଛି—

ତୁମର ବ୍ୟକ୍ତିତ୍ୱକୁ
ଅଚ୍ୟୁତ ଇଷ୍ଟାର୍ଥ-ନିବଦ୍ଧ କରି ରଖ
ଶ୍ରେୟାର୍ଥ-ସନ୍ଦୀପୀ କରି,
ଯେତେ ପ୍ରକାର ଫନ୍ଦିରେ ପଡ଼ ନା କାହିଁକି,
ତା' ଯେଉଁ ବ୍ୟାପାରରେ ହେଉନା—
ସେଇ ଇଷ୍ଟାର୍ଥୀ ଉଦ୍ଦେଶ୍ୟ ସୁସଙ୍ଗତି ନେଇ
ଯେପରି ସାର୍ଥକ କରିତୋଳ
ତା'ର ପ୍ରତିଟି ପର୍ଯ୍ୟାୟରେ,
ଏପରି କରି ହିଁ
ସବୁଗୁଡ଼ିକୁ ନିୟନ୍ତ୍ରିତ କର—
ଉପଚୟୀ ଉଦ୍‌ବର୍ଦ୍ଧନୀ ସକ୍ରିୟ ସମ୍ବେଗରେ ;
ଯେ କୌଣସି ବ୍ୟାପାର ବି ହେଉନା କାହିଁକି,

ଯେତେବେଳେ ହିଁ ଦେଖୁଛ—
ସେଇ ଇଷ୍ଟାର୍ଥ-ନିବଦ୍ଧ ବ୍ୟକ୍ତିତ୍ୱ ସହିତ
ଆପୋଷ ରଫା ବା ନତି ସ୍ୱୀକାର କରି ବି
ଅନ୍ୟ କୌଣସିଠାରେ ଅବନତ ହୋଇପଡ଼ିଛ
ବା ସେପରି କିଛି କରିଛ,
ଠିକ୍ ବୁଝିନିଅ—
ସେଇ ଇଷ୍ଟାର୍ଥ-ନିବଦ୍ଧ ବ୍ୟକ୍ତିତ୍ୱ ଓଲଟିପଡ଼ିଛି,
ମୋଡ଼ି ହୋଇଯାଇଛି
ବା ଭୁଷୁଡ଼ିପଡ଼ିଛି ;
ଅନୁବେକ୍ଷୀ ବୋଧ୍-ବିଚକ୍ଷଣତାରେ
ସନ୍ଧିତ୍ସାର ସହିତ କୁଶଳ-କୌଶଳରେ
ସେଇ ଚ୍ୟୁତି ବା ସ୍ଖଳନଜନିତ ବିପର୍ଯ୍ୟୟକୁ
ସଂଶୋଧନରେ ସୁବିନ୍ୟସ୍ତ କରି
ବ୍ୟକ୍ତିତ୍ୱକୁ ଜମାଟ କରିତୋଳ—
ତଡ଼ିତ୍ ସମ୍ବେଗରେ,
ତୁମର ସେଇ ବ୍ୟକ୍ତିତ୍ୱ
ପରିପାଳୀ ପୂରଣ-ପ୍ରେରଣା ନେଇ
ପୋଷଣ ତତ୍ପରତାରେ
ସୁଯୁକ୍ତ ଭାବଭଙ୍ଗୀରେ
ସମସ୍ତଙ୍କୁ ଯେପରି ଆକୃଷ୍ଟ କରିତୋଳେ,
ସୁସଙ୍ଗତ କରିତୋଳେ ;
ତୁମେ ବିଚ୍ଛିନ୍ନ ଓ ବିକ୍ଷିପ୍ତ ହୋଇ ଯାଅ ନା,
ତାହେଲେ ଯେତେ ବଡ଼ ହିଁ ବୃତ୍ତି-ଅର୍ଥୀ
ଗର୍ବେପ୍ସୁ ଉନ୍ନତ ପଥଚାରୀ ହିଁ ହୁଅ,
ସ୍ୱାର୍ଥଗୃଧ୍ନୁ ଆତ୍ମସେବୀ ହିଁ ହୁଅ,
ପ୍ରଗଲ୍ଭ ବିଜ୍ଞ ବାହାଦୁର ହିଁ ହୁଅ
ବା ବିକେନ୍ଦ୍ରିକ ଔଦାର୍ଯ୍ୟର ବାହାନା ନେଇ ଚାଲ,
ସେଇ ବିକ୍ଷିପ୍ତ ବିଚ୍ଛିନ୍ନତାର ପୁରସ୍କାରସ୍ୱରୂପ
ପଥଚାରୀ କୁକୁର ଭଳି ହିଁ ହେବାକୁ ପଡ଼ିବ କିନ୍ତୁ ;
ବୁଝି ସାବଧାନ ହୁଅ ।"

ବାଣୀ ପାଠ ଶେଷରେ ସତ୍ୟ ଭାଇ (ପରମାଣିକ) ଦାଢ଼ି କାଟିବାକୁ ବସିଲେ ।

ଶ୍ରୀଶ୍ରୀପିତୃଦେବ—ସତ୍ୟ ତ ଅନୁସନ୍ଧିତ୍ସୁ ସଭାରେ କହିପାରେ । ତୁ କହି ପାରୁନା ସତ୍ୟ ?